ଭୂତପୂର୍ବ କେନ୍ଦୁଝରାଧୀଶ୍ୱର ପ୍ରତାପ ଶ୍ରୀ ବଳଭଦ୍ର ଭଞ୍ଜଦେବ

ପ୍ରଣୀତ

# ଅମ୍ବିକା ବିଳାସ

ସଂକଳକ, ଟୀକାକାର ଓ ମୁଖବନ୍ଧ

—: ଲେଖକ :—

ପଣ୍ଡିତ ଶ୍ରୀ ବାନାମ୍ବର ଆଚାର୍ଯ୍ୟ, ସାହିତ୍ୟାଚାର୍ଯ୍ୟ

ବିଦ୍ୟାଭୂଷଣ



ପ୍ରକାଶକ-କଳିଙ୍ଗ ଗ୍ରନ୍ଥ ମନ୍ଦିର

ବାଙ୍କା ବଜାର, କଟକ—୨

ପ୍ରକାଶକ—

**କଳିଙ୍ଗ ଗ୍ରନ୍ଥ ମନ୍ଦିର**

ବାଙ୍କା ବଜାର, କଟକ—୨

ନୂତନ ମୁଦ୍ରଣ—

**ଜାନୁୟାରୀ—୧୯୭୦**

ମୁଦ୍ରାକର—

**ଏ. ଏଚ୍. କେ. ନାଶାଦ**

ମୋହାନ୍ତି ପ୍ରେସ୍

କେଶରପୁର, କଟକ—୧

**ମୂଲ୍ୟ—ଆଠଟଙ୍କା**

# ଦ୍ୱିତୀୟ ସଂସ୍କରଣର ଭୂମିକା

ପ୍ରାୟ ବତିଶ ବର୍ଷପରେ ଅମ୍ବିକା-ବିଳାସର ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହେଲା । ୧୯୩୭ ମସିହାରେ ଏହା ପ୍ରଥମେ କେନ୍ଦୁଝରର ତଦାନୀନ୍ତନ ରାଜା ୰ ବଳଭଦ୍ର ନାରାୟଣ ଭଞ୍ଜଙ୍କ ଆନୁକୂଲ୍ୟରେ ପ୍ରକାଶିତ ହୋଇଥିଲା । ସେହିଦିନୁ ଆଞ୍ଚଳିକ ମନୋଭାବାପନ୍ନ କେତେକ ସାହିତ୍ୟିକ ବନ୍ଧୁ ଏହାକୁ ପ୍ରଖ୍ୟାତ କବି ବ୍ରଜନାଥ ବଡ଼ଜେନାଙ୍କ କୃତି ବୋଲି ପ୍ରମାଣିତ କରିବାକୁ ନାନା କୂଟମିତିର ଆଶ୍ରୟ ଗ୍ରହଣ କରିଥିଲେ । ସେମାନଙ୍କର ଏକମାତ୍ର ପ୍ରମାଣ ହଣ୍ଟରଙ୍କ ଓଡ଼ିଶା ଇତିହାସରେ ପଦତ୍ତ ଉତ୍କଳୀୟ କବି ଓ କାବ୍ୟମାନଙ୍କର ପରିଚୟପତ୍ର । ମୁଁ ମୋର ପିତୃବ୍ୟ ସ୍ୱର୍ଗୀୟ କୃଷ୍ଣଚରଣ ଆଚାର୍ଯ୍ୟଙ୍କ ଠାରୁ ଶୁଣିଛି ଯେ, ହଣ୍ଟର ଚାରି ପାଞ୍ଚ ଘଣ୍ଟା ମାତ୍ର କଟକରେ ରହି କଟକ କମିଶନର ଅଫିସରୁ ଯାହା, ଯାହା ସଂଗ୍ରହ କରିଥିଲେ ସେ ସମସ୍ତଙ୍କୁ ତାଙ୍କ ଇତିହାସରେ ଅବିଚାରିତ ଭାବେ ଲିପିବଦ୍ଧ କରିଅଛନ୍ତି । ତେଣୁ ତାଙ୍କ ଲେଖାରେ ଭ୍ରମ ପ୍ରମାଦ ପୂରି ରହିଅଛି । ଏପରି ସ୍ଥଳେ ସେଥିରେ ଆସ୍ଥା ରଖି ସତ୍ୟାନୁସନ୍ଧାନକୁ ଏଡ଼ିଦେଇ ଅସତ୍ୟକୁ ଆଶ୍ରୟ କରିବା କୌଣସି ପ୍ରକାରେ ଅଭିନନ୍ଦନୀୟ ନୁହେଁ । ଏହି ପୁସ୍ତକ ପ୍ରକାଶିତ ହେବାପରେ ଢେଙ୍କାନାଳବାସୀ କେତେକ ସାହିତ୍ୟିକଙ୍କର ଧାରଣା ହେଲା ଯେ, ବ୍ରଜନାଥଙ୍କ ନାମକୁ ଉଠାଇ ଦେଇ ବଳଭଦ୍ର ଭଞ୍ଜଙ୍କ ନାମ ଯୋଡ଼ି ଦିଆଯାଇଛି । ସେମାନେ ସେ ଧାରଣା ଅନୁସାରେ ସମାଲୋଚନା ଆରମ୍ଭ କଲେ । ସେମାନଙ୍କର ସହାୟତାରେ ଇତିହାସପ୍ରେମୀ ସୁଧାକର ପଟ୍ଟନାୟକ ମହାଶୟ ଗୋଟିଏ ଦୀର୍ଘ ପ୍ରବନ୍ଧ ସ୍ୱର୍ଗୀୟ ଗୋପାଳ ପ୍ରହରାଜଙ୍କ ସଭାପତିତ୍ୱରେ ଅନୁଷ୍ଠିତ ଉତ୍କଳ ସାହିତ୍ୟ ସମାଜର ବିଶେଷ ଅଧିବେଶନରେ ପାଠ କରିଥିଲେ । ମୁଁ ନିମନ୍ତ୍ରିତ ହୋଇ ସେଥିରେ ଯୋଗ ଦେଇଥିଲି ଓ ଉପସ୍ଥିତ ସଭ୍ୟବୃନ୍ଦଙ୍କୁ ଯେଉଁ ଦୁଇଖଣ୍ଡ ପାଣ୍ଡୁଲିପିରୁ ଗ୍ରନ୍ଥ ସଂକଳନ କରିଥିଲି, ତାହା ଦେଖାଇବା ସଙ୍ଗେ ସଙ୍ଗେ ଢେଙ୍କାନାଳ ପୋଥି, ସଭାରେ ଉପସ୍ଥାପିତ କରିବାକୁ କହିଥିଲି । ତାହା ଦେଖାଇ ପାରି ନ ଥିଲେ । ସୁଧାକର ବାବୁ ଲେଖିଥିଲେ ଯେ ଢେଙ୍କାନାଳରୁ ପ୍ରାପ୍ତ ପୋଥିରେ ବଳଭଦ୍ରଙ୍କର ନାମ ନ ଥାଇ ବ୍ରଜନାଥଙ୍କ

ନାମ ପ୍ରତି ଛାନ୍ଦରେ ଭଣିତାରେ ଅଛି । ସେ ସମସ୍ତ ସେ ତାଙ୍କ ପ୍ରବନ୍ଧରେ ଉଦ୍ଧାର କରିଥିଲେ ଓ ସହକାର ପତ୍ରିକାରେ ତାହା ପ୍ରକାଶିତ ହୋଇଥିଲା । ଢେଙ୍କାନାଳ ପୋଥି ଯେ ଅସଲ ଓ କେନ୍ଦୁଝରର ପୋଥି ନକଲ ଏହା ସେ ଦୃଢଭାବରେ ନିଜ ପ୍ରବନ୍ଧରେ ଦେଖାଇବାକୁ ଯତ୍ନ କରିଥିଲେ । ଇତିମଧ୍ୟରେ ସେହି ସୁଧାକର ବାବୁ ବ୍ରଜନାଥ ବଡ଼ଜେନାଙ୍କ ଗ୍ରନ୍ଥାବଳୀକୁ ଓଡ଼ିଶା ସାହିତ୍ୟ-ଆକାଡେମୀ ଆନୁକୂଲ୍ୟରେ ମୁଦ୍ରିତ କରାଇ ଅଛନ୍ତି । ସେହି ମୁଦ୍ରିତ ପୁସ୍ତକରେ ସେ ଆଉ ବ୍ରଜନାଥଙ୍କ ନାମରେ ଅମ୍ବିକା ବିଳାସର ଭଣିତା ଅଂଶ ପୂରଣ ନ କରି ସଂକଳିତ ଗ୍ରନ୍ଥପରି ବଳଭଦ୍ରଙ୍କ ନାମରେ ଭଣିତା ଅଂଶ ପୂର୍ତ୍ତି କରିଅଛନ୍ତି । ଏଥିପାଇଁ ମୁଁ ସୁଧାକର ବାବୁଙ୍କୁ ଧନ୍ୟବାଦ ଅର୍ପଣ କରୁଛି । ଏଥିରୁ ଅନୁମିତ ହୁଏ ଯେ, ଢେଙ୍କାନାଳରେ ପୋଥି ମିଳନାହିଁ ବା ସୁଧାକର ବାବୁ ପରେ ଭ୍ରମ ବୁଝି ପାରିବାରୁ ଆଉ ବ୍ରଜନାଥଙ୍କ ନାମ ଭଣିତାରେ ଦେଇନାହାନ୍ତି । ଆହୁରିମଧ୍ୟ ଅମ୍ବିକା ବିଳାସର ୨୯ ଛାନ୍ଦରେ ନାନା ପ୍ରକାର "ବନ୍ଧ" ସନ୍ନିବେଶିତ ହୋଇଛି । ସେହି ଛାନ୍ଦର ୨୨ ପଦଟି 'ମଣ୍ଡପ ବନ୍ଧ' 'ଏ' ବୋଲି ଲେଖାଂଶକୁ ମୁଁ ମୁଦ୍ରିତ ପୁସ୍ତକରେ ଛପାଇ ନ ଥିଲି । ଯଦି ଢେଙ୍କାନାଳରୁ ପୋଥି ମିଳିଥାନ୍ତା, ତେବେ ନିଶ୍ଚୟ ଏହା ତହିଁରେ ଥାଆନ୍ତା । କିନ୍ତୁ ସୁଧାକର ବାବୁ ତାଙ୍କ ପ୍ରବନ୍ଧରେ ବା ବଡ଼ଜେନାଙ୍କ ଗ୍ରନ୍ଥାବଳୀରେ ଏହା ଦେଇନାହାନ୍ତି । ପୁନଶ୍ଚ ସୁଧାକର ବାବୁ ତାଙ୍କ ପ୍ରବନ୍ଧରେ ଅବନା ନିୟମରେ ଲିଖିତ ପଞ୍ଚଦଶ ଛାନ୍ଦର ଭଣିତାରେ "ବ୍ରଜନାଥ" ନାମ ବ୍ୟବହାର କରିଥିଲେ । ଏହା କବି ପରମ୍ପରା ବହିର୍ଭୂତ । ଅଭିମନ୍ୟୁ "ବିଦଗ୍ଧ ଚିନ୍ତାମଣି"ର ଅବନା ଛାନ୍ଦର ଭଣିତାରେ ନିଜନାମ ଦେଇପାରିଲେ ନାହିଁ ବୋଲି ପିତୃନାମ "ଇନ୍ଦ୍ରଜିତ"କୁ ବିକୃତ କରି "ଇନ୍ଦ୍ରଜୟନନ୍ଦନ" ରୂପେ ନିଜକୁ ପରିଚିତ କରାଇ ଅଛନ୍ତି । ଏଥିରୁ ସୁଧୀବର୍ଗ ବୁଝିପାରିବେ ଊ.ଅଳକ ମନୋଭାବ ଦ୍ୱାରା ଗବେଷଣା-କ୍ଷେତ୍ରରେ ମଧ୍ୟ "ସତ୍ୟସ୍ୟ ପିହିତଂ ମୁଖମ୍" ।

ଆଉଗୋଟିଏ କଥା ନ କହି ରହିପାରୁ ନାହିଁ । ସୁଧାକର ବାବୁ ବ୍ରଜନାଥ ଗ୍ରନ୍ଥାବଳୀର ପାଦଟୀକାରେ ଓ ଅନ୍ୟତ୍ର 'କେନ୍ଦୁଝର ସଂସ୍କରଣର ସମ୍ପାଦକ ବା ପ୍ରକାଶକଙ୍କ ନାମ ଲେଖିବାକୁ ହେୟ ମନେ କରିଅଛନ୍ତି । ଗବେଷଣାକ୍ଷେତ୍ରରେ ଏ ପ୍ରକାର ଈର୍ଷାଳୁତାକୁ ମୁଁ ମନେକରୁଛି "ବିଧିବିଧାନ" (ବ୍ରହ୍ମବିଧାନ) । କେନ୍ଦୁଝରର ରାଜବଂଶରେ ବହୁ କବି ଜନ୍ମ ଗ୍ରହଣ କରିଅଛନ୍ତି । ସେମାନଙ୍କର ପରିଚୟ ପ୍ରଥମ ସଂସ୍କରଣର ମୁଖବନ୍ଧରେ ଦିଆଯାଇଛି । ଏଠାରେ ବଳଭଦ୍ର ଭଞ୍ଜଙ୍କ ସମ୍ବନ୍ଧରେ ଥିବା ତାଙ୍କ ଗୁରୁ ନାରାୟଣ ଓ ତାଙ୍କର ପାଣ୍ଡିତ୍ୟ

ବିଷୟରେ ସମରତରଙ୍ଗର ସମସାମୟିକ ଲେଖା "ଭଞ୍ଜ ମହୋଦୟମ୍" ନାମକ ସଂସ୍କୃତ ମହାକାବ୍ୟରେ ଯାହା ଲେଖା ଅଛି ତାହା ଏଠାରେ ଉଦ୍ଧୃତ ହେଲା—

ସଙ୍ଗୀତାଗମ-ଶିଳ୍ପ-କୁଣ୍ଡ-ରଚନାସ୍ୱୌପୈତ୍ର୍ୟନ୍ତ୍ରପୂର୍ବକଂ
ଜ୍ୟୋତିଶ୍ଚକ୍ରକ୍ରମଂ ଚ କୃତିନଂ ସମ୍ୱିଶାସ୍ତ୍ରେଷ୍ୱପି ।
କାବ୍ୟ-ବ୍ୟାକରଣାଦିଶାସ୍ତ୍ର-କୁଶଳଂ ଯୋ ନାମ୍ନା ନାରାୟଣଂ
ବ୍ରହ୍ମଣଂ ସ୍ୱଗୁରୁଂ ବିଧାୟ ନିପୁଣଃ ସର୍ବେଷୁ ଶାସ୍ତ୍ରେଷ୍ୱଭୂତ୍
ବୀଣାୟାଂ କ୍ଷିତି ନାରଦଃ କୃତିମତଃ କାବ୍ୟସ୍ତୁ କାବ୍ୟାଦିକେ
ତର୍କେଚ ବୃହସ୍ପତିଃ ସୁଗହନେ ଶିଳ୍ପାଗମେ ବିଶ୍ୱସୃକ୍ ।

"ଭଞ୍ଜ ମହୋଦୟମ୍"
ପୃ ୩୯ (୧୯୪୭)

\+ \+ \+ \+

ଏହି ବର୍ଣ୍ଣନାରୁ ବଳଭଦ୍ର ଭଞ୍ଜ କି ପ୍ରକାର ବିଦ୍ୱାନ୍ ଓ ସାଧକ ଥିଲେ ତାହା ଜଣାପଡୁଛି ।

ଏ ବିଷୟରେ ଆଉ ଅଧିକ ଲେଖିବା ନିଷ୍ପ୍ରୟୋଜନ ମନେ କରେ ହେଲି ।

ଏହି ସଂସ୍କରଣର ମୁଦ୍ରଣରେ ସାହିତ୍ୟିକଙ୍କ ନିକଟରେ ସୁପରିଚିତ କଳିଙ୍ଗ ଗ୍ରନ୍ଥ ମନ୍ଦିରର ସ୍ୱତ୍ୱାଧିକାରୀ ଗ୍ରହଣ କରିଥିବାରୁ ମୁଁ ତାଙ୍କୁ ଆନ୍ତରିକ ଧନ୍ୟବାଦ ଅର୍ପଣ କରୁଅଛି । ଇତି ।

ଶିଶୁଆ
ପୋ. ଅ. ବେଣ୍ଟକାର
କଟକ
ତା ୩ । ୧୧ । ୧୯୬୯

**ପଣ୍ଡିତ ଶ୍ରୀ ବାନାମ୍ବର ଆଚାର୍ଯ୍ୟ**
ସାହିତ୍ୟାଚାର୍ଯ୍ୟ, ବିଦ୍ୟାଭୂଷଣ

# ନିବେଦନ

କେନ୍ଦୁଝରର ରାଜବଂଶର ସାରସ୍ୱତ କୀର୍ତ୍ତିରାଜି "କେନ୍ଦୁଝର-ଗ୍ରନ୍ଥମାଳା" ନାମରେ ଶ୍ରୀମାନ୍ ରାଜାସାହେବଙ୍କ ଆନୁକୂଲ୍ୟ ଓ ଶ୍ରୀଯୁକ୍ତ ଗ୍ଲେଟବସ୍ତୁ ସାହେବଙ୍କ ଅଧ୍ୟକ୍ଷତାରେ କ୍ରମଶଃ ପ୍ରକାଶିତ ହେବାର ସ୍ଥିର କରାଯାଇଅଛି । ଅଧୁନା ৺ ପ୍ରତାପ ଶ୍ରୀ ବଳଭଦ୍ର ଭଞ୍ଜ ଦେବଙ୍କ ପ୍ରଣୀତ "ଅମ୍ବିକା-ବିଳାସ" ଏହି ଗ୍ରନ୍ଥମାଳାର ଦ୍ୱିତୀୟ ପୁସ୍ତକରୂପେ ପ୍ରକାଶିତ ହେଲା । ଏଥିପ୍ରତି ସୁଧୀବୃନ୍ଦ ସାଦର ଦୃଷ୍ଟି ନିକ୍ଷେପ କଲେ ଅନ୍ୟଗୁଡ଼ିକ ଦ୍ରୁତରେ ପ୍ରକାଶିତ ହେବ । ଇତି ।

କେନ୍ଦୁଝର ଗଡ଼<br>
ତା ୨୮ । ୭ । ୧୯୩୭



ସଜ୍ଜନ-କୃପାଭିକ୍ଷୁ<br>
ସଙ୍କଳୟିତ୍ରୀ

# ମୁଖବନ୍ଧ

"ପ୍ରାଚୀନ ଉତ୍କଳର ସାହିତ୍ୟ ଭଣ୍ଡାର ଅତି ସମୃଦ୍ଧ । ଏପର୍ଯ୍ୟନ୍ତ ସେଥି-ମଧ୍ୟରୁ ଅନେକ ମୁଦ୍ରଣାଳୟର ଦ୍ୱାର ଦେଖି ନାହିଁ । କେତେ ଯେ କୀଟଭକ୍ଷିତ ହେଲଣି, ତାହାର ଇୟତ୍ତା ନାହିଁ"— ବହୁ ଲୋକଙ୍କ ମୁଖରୁ ଏହିପ୍ରକାର ଖେଦୋକ୍ତି ଶୁଣା ଯାଉଥିଲେ ସୁଦ୍ଧା ସେଗୁଡ଼ିକର ଉଦ୍ଧାର ପାଇଁ ଅତି ଅଳ୍ପ ବ୍ୟକ୍ତି ଯତ୍ନ କରି ଅଛନ୍ତି । ସେଥି ମଧ୍ୟରୁ ପ୍ରାଚୀ ସମିତିକୁ ଛାଡ଼ିଦେଲେ ଅନ୍ୟ ଯେଉଁମାନେ ଏ ଦିଗରେ କାର୍ଯ୍ୟ କରିଅଛନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ବ୍ୟବସାୟଗତ ପ୍ରେରଣାରେ । ତେଣୁ ବହୁ ମୂଲ୍ୟବାନ ଗ୍ରନ୍ଥରତ୍ନ ବିକୃତ ରୂପରେ ମୁଦ୍ରଣାଳୟରୁ ନିର୍ଗତ ହୋଇ ସନ୍ତକ ରଙ୍ଗମାଟିରେ ଦେହ ରଞ୍ଜିତ କରି ପଡ଼ି ରହିଅଛନ୍ତି ଓ ଆଉ କେତେକ ବଧୀତ ଘର ଏପର୍ଯ୍ୟନ୍ତ କୀଟେନ୍ଦ୍ରମାନଙ୍କୁ ଅସ୍ଥିଦାନ କରିବାରୁ ବିରତ ହୋଇ ନାହାନ୍ତି । ଆଉ କେତେକ ସୁରକ୍ଷିତ ଥିଲେ ସୁଦ୍ଧା ଲୋକ-ଲୋଚନର ଅନ୍ତରାଳରେ ରହି ନିଜର ପ୍ରଭା ବିକିରଣ କରିପାରୁ ନାହାନ୍ତି । ଅମ୍ବିକା-ବିଳାସ ଏହିପ୍ରକାର ଖଣ୍ଡିଏ ଅମୂଲ୍ୟ ରତ୍ନ । ତାହାର ଏବଂ ତତ୍-ପ୍ରଣେତାଙ୍କର ପରିଚୟ ପ୍ରଦାନ ଏ ପ୍ରବନ୍ଧର ଉଦ୍ଦେଶ୍ୟ । ଏହା ମୋହର ଦୁର୍ବଳ ଲେଖନୀର ଅସାଧ୍ୟ ହେଲେ ସୁଦ୍ଧା କ୍ଷମାଶୀଳ ସହୃଦୟଗଣଙ୍କର କୃପା ଉପରେ ନିର୍ଭର କରି ଏ ବିଷୟରେ ଯତ୍କିଞ୍ଚିତ୍ ସେମାନଙ୍କ ନିକଟରେ ଉପସ୍ଥାପନପୂର୍ବକ କ୍ଷମାଭିକ୍ଷା କରୁଛି । ଆଶା କରେ; 'ତହିଁରୁ ବଞ୍ଚିତ ହେବି ନାହିଁ ।

କଥାବସ୍ତୁ —

ବ୍ରହ୍ମାଙ୍କର ପୁତ୍ର ଦକ୍ଷପ୍ରଜାପତିଙ୍କର ଏକଶତ କନ୍ୟା ଜାତ ହୋଇଥିଲେ । ସେମାନଙ୍କ ମଧ୍ୟରେ ସତୀ ରୂପଗୁଣରେ ସର୍ବଶ୍ରେଷ୍ଠା ଥିଲେ । ତାଙ୍କର ବିବାହ କାଳ ଉପସ୍ଥିତ ହେବା ଦେଖି ପିତା ଯୋଗ୍ୟ ବର ଅନୁସନ୍ଧାନ କରୁଥିଲେ । ଏହି ସମୟରେ ବ୍ରହ୍ମା ଶିବଙ୍କୁ ସତୀଙ୍କର ଯୋଗ୍ୟ ବର ବୋଲି ବିବେଚନା କରି ନିଜ ପୁତ୍ର ଦକ୍ଷଙ୍କୁ 'ଶିବଙ୍କୁ କନ୍ୟା ଅର୍ପଣ କର' ବୋଲି କହିଲେ । କିନ୍ତୁ—

"ଅଭିମତ ନ କଲେ ତା ଦକ୍ଷ ପ୍ରଜାପତି,
ଅନେକ ଦୋଷ ତାଙ୍କର କହେ ପିତା-କତି ।
ଅକୁଳୀନ ସେ ତ ଜାତ ! କିଛି ଗୁଣ ନାହିଁ
ଅସ୍ଥିମାଳାଗୁଡ଼ାଏ ଗଳାରେ ଥାଏ ବହି ।
ଅଂଶୁକ ନ ଥିଲେ ଦେହେଁ ଲଜ ନାହିଁ ଯାର
ଅଚଳ-ଗୁମ୍ଫାରେ ଥାଇ ନାହିଁ ତାର ଘର ।

ଅସ୍ଥିଗଣ ଅଟନ୍ତି ତାହାର ଅଳଙ୍କାର
ଅର୍ଦ୍ଧ ବସ୍ତ୍ରେ ଶ୍ମଶାନରେ କରଇ ବିହାର ।
ଅନଉଁ ଅନାଉଁ ଏହା କରିବା କି ଭଲ
ଅତି ସୁକୁମାରୀ ଦୁହିତା ମୋ କୁମାରୀ ।
ଅମ୍ବୁଧିରେ ଭସାଇ ଦେବାର ଏଥୁଁ ଭଲ
ଅବଶ୍ୟ ନ ଦେବି ସୁତା ଏ କଥା ନିଶ୍ଚଳ ।”

ଦକ୍ଷଙ୍କର ଏହି ବାକ୍ୟ ଶୁଣି ବ୍ରହ୍ମା କହିଲେ—

"ଅଜ୍ଞାନ ତୁ ବିବେକ ତ' କିଛି ନାହିଁ ତୋର
ଅନନ୍ତ ସଂସାରର ସେ ଅଟନ୍ତି ଠାକୁର ।
ଅବୋଧ ନୁହଁ ତୁ ସୁତା ଦିଅ ଈଶାନଙ୍କୁ
ଅବିଳମ୍ବେ କର ଏ ବିବାହ ବିଧାନକୁ ।”

ପିତୃବାକ୍ୟ ମାନି ଦକ୍ଷ ଯଥାବିଧି ବିବାହ ସମ୍ପାଦନ କଲେ । ବିବାହ ପରେ ଶିବ ଓ ସତୀ କାଶୀପୁରକୁ ଗମନ କରି ସୁଖରେ କାଳଯାପନ କଲେ । କେତେ ଦିନ ପରେ ଦକ୍ଷ ଅଗ୍ନିଷ୍ଟୋମ ଯାଗ କଲେ । ସେଥିରେ ଦେବ, ଋଷି, ନର, କିନ୍ନର ପ୍ରଭୃତି ସମସ୍ତଙ୍କୁ ନିମନ୍ତ୍ରଣ କଲେ; କେବଳ ଶିବଙ୍କୁ ନିମନ୍ତ୍ରଣ କଲେ ନାହିଁ । ସତୀ ପିତାଙ୍କର ଯାଗ ଆରମ୍ଭର ସମ୍ବାଦ ପାଇ ସ୍ୱାମୀଙ୍କ ଅନୁମତି ନେଇ ଦେଖିବାକୁ ଗଲେ; କିନ୍ତୁ ଦକ୍ଷ "ଅଙ୍ଗ କୁଶଳ କାନ୍ତ ମଙ୍ଗଳ-ବାର୍ତ୍ତା ପୁଚ୍ଛିଲେ ନାହିଁ ।” ତହୁଁ ଅପମାନିତା ସତୀ ଯାଗ କୁଣ୍ଡରେ ପଡ଼ି ପ୍ରାଣତ୍ୟାଗ କଲେ । ସେ ସତୀ ତତ୍କ୍ଷଣାତ୍ "ଅଚିରାଦ୍ୟୁତି ଋତୁନ୍ତ୍ରେତି ଅନ୍ତର ହେଲେ ଯଥା” ତଥା ବିକୃତ ଦଶା ଭଜିଲେ ।

ଶିବ ଯଥାକାଳରେ ଏ ସମ୍ବାଦ ପାଇ କ୍ରୋଧରେ ଅଧୀର ହେଲେ । ଏହି କ୍ରୋଧରୁ ବୀରଭଦ୍ର ନାମରେ ପୁରୁଷ ଜାତ ହେଲା । ତାହାକୁ ଦକ୍ଷ-ଯାଗ ନାଶ କରିବାକୁ ଆଦେଶ ଦେଲେ । କ୍ରୋଧବେଗ ଉପଶାନ୍ତ ହେବା ପରେ ଶିବ ତପସ୍ୟାଚରଣ ପାଇଁ ହିମାଳୟକୁ ଗମନ କଲେ ।

ଏଣେ ଦକ୍ଷକନ୍ୟା ସତୀ ଯଜ୍ଞାନଳରେ ତନୁତ୍ୟାଗ କଲା ପରେ ହିମାଳୟ ପତ୍ନୀ ମେନକା ଗର୍ଭରୁ କନ୍ୟାରୂପେ ଜନ୍ମଗ୍ରହଣ କରି ଶୁକ୍ଳପକ୍ଷ ଶଶିକଳା ପରି ଦିନକୁ ଦିନ ବୃଦ୍ଧି ଲାଭ କଲେ । କ୍ରମେ ତାଙ୍କର ଶରୀରଲତା ଯୌବନ-ବସନ୍ତ ସ୍ପର୍ଶରେ ସୁଷମା-ପ୍ରସୂନରେ ଶୋଭିତା ହେଲା । ଏହି ସମୟରେ ଶିବ ହିମାଳୟ ପ୍ରଦେଶରେ ତପସ୍ୟା କରୁଥିଲେ । ଯୁବତୀ ପାର୍ବତୀ ପିତୃ ନିଦେଶମତେ ସେହି ସ୍ଥଳରେ ଶିବଙ୍କର ପରିଚର୍ଯ୍ୟାରେ ଆତ୍ମମନଃ ସଂଯୋଗ କଲେ । କୁଶ, ସମିଧ, ପୁଷ୍ପ, ଫଳ ପ୍ରଭୃତି ଯାବତୀୟ ପୂଜୋପକରଣ ଏପରି ତତ୍ପରତା ସହ ଯୋଗାଇବାକୁ ଲାଗିଲେ ଯେ, ଶିବ ବିସ୍ମିତ ହୋଇ ଭାବିଲେ—

× × × ×
× × ×

"ଅନ୍ତର୍ନିର୍ଣ୍ଣି ତେ ସେବନ୍ତୁ ମୋତେ
ଅପୂର୍ବସ୍ୱୀକୃତ ଜାଣିମା କେମନ୍ତେ ଯେ
ଅଛିରେ ଲକ୍ଷି ନୋହିଲ ସେ ତ
ଅଜାଣ ଅଜା ସେ କଳା ଚଢ଼ିତ ଯେ ।"

ଇତି ମଧ୍ୟରେ ତାରକାସୁର-ଉପଦ୍ରବରେ ଅତି ଉତ୍ପୀଡ଼ିତ ଦେବଗଣ ବ୍ରହ୍ମାଙ୍କ ସମ୍ମୁଖରେ ପ୍ରାର୍ଥନା କରିବାରୁ ସେ "ଶିବାଂଶ ସମ୍ଭୂତ ପୁତ୍ର ବ୍ୟତୀତ ଅନ୍ୟ କେହି ତୁମ୍ଭର ଦୁଃଖ ହରଣ କରିପାରିବ ନାହିଁ" ବୋଲି କହି ଶିବଙ୍କର ତପୋଭଙ୍ଗ ପାଇଁ କାମକୁ ନିଯୁକ୍ତ କରିବାର ଉପଦେଶ ଦେଲେ । ତାଙ୍କ କଥା ଅନୁସାରେ କାର୍ଯ୍ୟ ହେଲା । ଇନ୍ଦ୍ର-ପ୍ରେରିତ କାମ ଶିବଙ୍କର ତପୋଭଙ୍ଗ ପାଇଁ ସପରିକର ହୋଇ ହିମାଳୟର ବନକୁ ଗମନ କଲେ ଓ ତାଙ୍କର ନେତ୍ରାନଳରେ ଭସ୍ମୀଭୂତ ହେଲେ । ଦେବତାମାନେ କାମ ଅଭାବରେ ସଂସାର ଚଳିବା ଅସମ୍ଭବ ମନେ କରି ତାଙ୍କୁ ଅମୃତ ବୃଷ୍ଟି ଦ୍ୱାରା ପୁନରୁଜ୍ଜୀବିତ କଲେ । ଶିବ ତପୋବିଘ୍ନ ଦେଖି ସେ ସ୍ଥାନ ପରିତ୍ୟାଗ କରି ଚାଲିଗଲେ । ଦୁଃଖିତା ଗୌରୀ ଶୂନ୍ୟ ମନରେ ଗୃହକୁ ଫେରିଲେ । 'ତାଙ୍କର ଉଲ୍ଲାସ କୃଶ' ହେଲା । ନେତ୍ର ସମ୍ମୁଖରେ କେବଳ 'ଶଶଧରଶୀର୍ଷ' ଦେଖା ଦେଲେ । ସେ 'ଅଶନ, ବେଶ, ସୁର୍ଦ୍ଧୀନ ବାସ, ଖେଳ, ବିଳାସ, ଶୟନ, ବାସ, ହାସ, ସୁରସ, ସୁପରିହାସ' ଏ ସମସ୍ତ 'ବିଷ' ମଣିଲେ । ସଂସାରର ଯାବତୀୟ ସୁଖ ତାଙ୍କ ନିକଟରେ ଅସାର ପ୍ରତୀତ ହେଲା । କେବଳ 'ତୁଷାରକର ଶେଖର'ଙ୍କ ରୂପ ହୃଦୟରେ ବାସ କରିବାକୁ ଲାଗିଲା । ତପସ୍ୟାକୁ ଅଭୀଷ୍ଟ ଲାଭର ଏକମାତ୍ର ଉପାୟ ମନେକରି ତହିଁରେ ନିଜକୁ ସେ ନିଯୁକ୍ତ କଲେ । ସେ ବର୍ଷା କାଳରେ ଜଳ ମଧ୍ୟରେ ପ୍ରବେଶ କରି, ହିମ ଓ ଶିଶିର କାଳରେ ହୈମବତ ଶୀତଳ ବାୟୁର ପ୍ରତିକୂଳରେ ବସି, ଗ୍ରୀଷ୍ମକାଳରେ ସୂର୍ଯ୍ୟ କିରଣରେ ଅନନ୍ୟ ମନରେ ତପସ୍ୟା କରିବାକୁ ଲାଗିଲେ । ପରିଶେଷରେ ଉତ୍କଟ ତପସ୍ୟା ଦ୍ୱାରା ଶରବାଞ୍ଛିତ ଦେବତାଙ୍କର ହୃଦୟ ତରଳ କରିବା ପାଇଁ ପଞ୍ଚାଗ୍ନି ପ୍ରଭୃତି ଦୁଷ୍କର ତପସ୍ୟା ଆଚରଣରେ ପ୍ରବୃତ୍ତ ହେଲେ । ସେଥିରେ ଦେବତାଙ୍କର ଆସନ ଟଳିଲା ନାହିଁ ଦେଖି ଅଗ୍ନି ପ୍ରବେଶ ପୂର୍ବକ ସ୍ୱମସ୍ତକ ଆହୁତି ଦେବାକୁ ଉଦ୍ୟମ କଲେ । ଶିବ ଆଉ ସ୍ଥିର ରହିପାରିଲେ ନାହିଁ । ଉପାସୀନା ପାର୍ବତୀଙ୍କ ସମ୍ମୁଖରେ ଆବିର୍ଭୂତ ହୋଇ କି ଉଦ୍ଦେଶ୍ୟରେ ତପ କରୁଛ ବୋଲି ପ୍ରଶ୍ନ କଲେ ଏବଂ କହିଲେ 'ଏହି ତପସ୍ୟା ଫଳରେ ଇନ୍ଦ୍ର, ଚନ୍ଦ୍ର, ସୂର୍ଯ୍ୟ, କୁବେର, ବ୍ରହ୍ମା, ବିଷ୍ଣୁ ପ୍ରଭୃତିଙ୍କର ପଦ ବା ମୋହର ପଦ

ପାଇବା ଯଦ ତୁମ୍ଭର ଅଭିଳଷିତ, ତେବେ ଲୁହ, ତାହା ମଧ୍ୟ ମୁଁ 'ତୁମ୍ଭଙ୍କୁ ଅର୍ପଣ କରିବ ।' ହୃଦୟରେ କର ଅଞ୍ଜଳୀଭୂତ କରି ଉମା କହିଲେ—

"ହେ କୃପାକର ! କୃପା କର,
ଅନ୍ତର୍ଯ୍ୟାମୀ ତୁମ୍ଭେ କ ନ ଜାଣ
ଅନ୍ୟ ବର ଗ୍ରୁହ ମୋର କ କାରଣ ହେ !"

ସ୍ୱ ଅଭିଳାଷ ଜ୍ଞାପନ କରିବାକୁ ଯାଇ କୁମାରୀ ଉମା ପ୍ରଥମେ ସ୍ରଷ୍ଟାଙ୍କର ଅନ୍ତର୍ଯ୍ୟାମିତ୍ୱ ଉଲ୍ଲେଖ କରି ବ୍ରୀଡ଼ାର ତୀବ୍ର ଯନ୍ତ୍ରଣାରୁ ନିଜକୁ ମୁକ୍ତ କରିବାକୁ ଚେଷ୍ଟା କରିଥିଲେ । କିନ୍ତୁ ପାର୍ବତୀଙ୍କ କଠୋର ତପସ୍ୟାରେ ସଂଯତ ବ୍ୟାକୁଳ ଜିହ୍ୱା ଆଜ ଉଚ୍ଛୃଙ୍ଖଳତା ପ୍ରକାଶ କଲା । ସେ ଉନ୍ମତ୍ତ ହୋଇ କୁହାଇଲା—

"ଅର୍ପିତ ହେଲେ ନିଶିଦିନ
ଅର୍ପିତ କରି ମୋ ମନ
ଅନୁସରିଥିବ ଦାସୀ ହୋଇ
ଅନ୍ୟ ଶରଧା ମୋ ନାହିଁ
ସତ୍ୟ ସତ୍ୟ ଏ ଗୋସାଇଁ
କାହିଁପାଇଁ ଏତେ କହୁଛ ଭ୍ରମାଇଁ
ହେ ଅନ୍ଧକାରି, ଅନୁଗ୍ରହ ଏତେ ମାତ୍ର କରୁ
ଅନୁଚରୀ ଆଉ ମାଗିବ କ କର ହେ ।"

ଏହି ଚର୍ଯ୍ୟା ବେଳୁଁ ଉମାଙ୍କର ଅନୁପମେୟ ରୂପ ପରମ ଯୋଗୀ ଶିବଙ୍କ ମନରେ ପୂର୍ବାନୁରାଗସୂଚକ ଅନୁସନ୍ଧିତ୍ସାକୁ କ୍ଷୀଣଭାବେ ଜାଗରିତ କରିଥିଲା । ବର୍ତ୍ତମାନ ତାହାଙ୍କର କଠୋର ତପୋନିକଷରେ ସେ ବଶୀଭୂତ ହୋଇପଡ଼ିଲେ । ଅବଲମ୍ବେ ତାହାଙ୍କର କରୁଣାହିତ୍ତ ହୃଦୟ ଫୁଟିଲା ପଡ଼ିଲା । ସେ—

"ଅନୁଜ୍ଞା କଲେ ରେ ବାମାବର
ଅସ୍ତୁ ହେଉ ଯେଉଁ ବର ଇଷ୍ଟ ତୋହର ରେ ।"

"ଅଳ୍ପ ଦିନରେ ପୁଣି ଭେଟ ହେବା ରମାମଣି ଆଶ ବୋଲି ହୋଇଲେ ଅନ୍ତର ।"

ଶିବ ଅନ୍ତର୍ହିତ ହେଲେ । ବହୁକାଳବ୍ୟାପୀ ଉଗ୍ର କ୍ୟର ଦୁର୍ଭର ଭାର ବହନରେ ଶ୍ରାନ୍ତ, କ୍ଳାନ୍ତ ଦେହ, କିନ୍ତୁ ଶ୍ରାନ୍ତି ଦୂର ନ ହେଉଣୁ ପୁନର୍ବାର ସେହି ଅଭାବ, ସେହି ବିଡ଼ମ୍ବନା ! ଉଦ୍‌ବେଗ-କ୍ଷୁବ୍ଧା ଉମାଙ୍କର ପ୍ରତୀତି ହେଲା—

"ଅମୃତ ପିଇଁ ପଡ଼ିଲି ତଳେ ।"

× × × ×

ଅଥବା —

"ଅଭ ବିବର୍ଣ୍ଣହଷ ପାଇ ଫିଟାଇ ଏ କାଳେ ଯେ ଇ ପଡ଼ିଲା ପବନେ ପୂର୍ଣ୍ଣ ଧୂଳି ଅଭିନବ ଘନ ବୃକ୍ଷ ସ୍ତବକ ଚଞ୍ଚଳହୋଇ ଚଳନ୍ତେ ତା ଝଞ୍ଜାବାତ ଦେଲା ଦଳ ।"

ଅଳ୍ପ ସଫଳତା ତପଶ୍ଚର୍ଯ୍ୟାର ଚେଷ୍ଟାକୁ ଫଳ ଦେଲା । ତାଙ୍କର ଚିତ୍ତ-ରଙ୍ଗଭୂମିରେ ଆନନ୍ଦ ଓ ବିମର୍ଷର ଦ୍ୱନ୍ଦ୍ୱ ଯୁଦ୍ଧ ଆରମ୍ଭ ହେଲା । ସେ ସଖୀ ସହ ଗୃହକୁ ଫେରିଲେ ।

ଏଣେ ହିମାଳୟ କନ୍ୟାର ବିବାହ ପାଇଁ ବର ଅନୁସନ୍ଧାନ କରୁଥିଲେ । ତ୍ରିପୁର ମଧ୍ୟରେ ଉମାଙ୍କର ଯୋଗ୍ୟ ବର ମିଳିଲେ ନାହିଁ । ତହୁଁ ସେ ବେଦ, ପୁରାଣ ପ୍ରମାଣ ସ୍ମରଣ କରି ଶିବଙ୍କ ନିକଟକୁ ଶିଷ୍ଟଜନ (ଋଷି ଲୋକ) ପ୍ରେରଣ କଲେ । ଶିବ· ମଧ୍ୟ ମୁନିଙ୍କ ସଙ୍ଗେ ସମ୍ମତିସୂଚକ ପତ୍ର ଲେଖି ପଠାଇଲେ । ବିବାହର ଆୟୋଜନ ହେଲା । ଶିବ ସୁର, ନର, କିନ୍ନର, ଯକ୍ଷ, ରାକ୍ଷସ, ଭୂତ, ପ୍ରେତଗଣଙ୍କୁ ସଙ୍ଗରେ ଘେନି ହିମାଳୟଙ୍କ ନଗରକୁ ବିବାହ ଉଦ୍ଦେଶ୍ୟରେ ଯାତ୍ରା କଲେ । ତତ୍ପରେ କୁମାରଙ୍କ ଜନ୍ମ ଓ ତତ୍କର୍ତ୍ତୃକ ତାରକା ବଧ, ଏହାହିଁ ଅମ୍ବିକା ବିଳାସର କଥାବସ୍ତୁ ।

ଶିବପୁରାଣ ଓ ମହାକବି କାଳିଦାସଙ୍କର କୁମାରସମ୍ଭବରେ କଥାବସ୍ତୁର କିଛି ଭେଦ ଦେଖିବାକୁ ମିଳେ । କାମଦାହ ପରେ ପତିଙ୍କର ଅନୁଗମନରେ ଉଦ୍ୟୁକ୍ତା ରତିଙ୍କୁ ଆକାଶବାଣୀ ଭବିଷ୍ୟତରେ ସ୍ୱାମୀଲାଭ ଆଶା ଦେଖାଇ ତାହାଙ୍କୁ ନିବୃତ୍ତ କରାଇଥିବାର ଶ୍ଳୋକ ପୁସ୍ତକଦ୍ୱୟରେ ଲିଖିତ ଅଛି । କିନ୍ତୁ ଆଲୋଚ୍ୟ ପୁସ୍ତକରେ ରତିଙ୍କ କାତରଭାବ ଦର୍ଶନ କରି ତତ୍କ୍ଷଣାତ୍ ଦେବତା-ମାନେ ଅମୃତସେଚନଦ୍ୱାରା କାମକୁ ଜୀବିତ କରିଥିବା ବର୍ଣ୍ଣିତ । ଶିବପୁରାଣ ଉତ୍ତରଖଣ୍ଡ ଷୋଡ଼ଶ ଅଧ୍ୟାୟର ଜଟିଳ ତପସ୍ୱିବେଶୀ ଶିବଙ୍କର ତପଃପରାୟଣା ପାର୍ବତୀଙ୍କର ସମ୍ମୁଖରେ ଉପସ୍ଥିତି, ସଖୀ ମୁଖରୁ ପାର୍ବତୀଙ୍କର ତପସ୍ୟା ହେତୁ ଶ୍ରବଣ, ଶିବଙ୍କର ବିଚିତ୍ର ଗୁଣାଭାବ କଥନ, ପାର୍ବତୀଙ୍କ ପ୍ରତିବାଦ, ଅବ-ଶେଷରେ ଜଟିଳର ନିଷ୍କାସନ ପାଇଁ ସଖୀପ୍ରତି ଆଦେଶ, ତତ୍ପରେ ଭକ୍ତାଧୀନ ଶିବଙ୍କର ସ୍ୱରୂପ ପ୍ରଦର୍ଶନ ଓ ବିବାହ ସ୍ୱୀକୃତି ଇତ୍ୟାଦି ବିଷୟଗୁଡ଼ିକ ଯଥାଯଥ ଭାବେ ମହାକବି କାଳିଦାସଙ୍କର ଅମର ଲେଖନୀ ସ୍ପର୍ଶରେ ମଧୁମୟ ହୋଇ କୁମାରସମ୍ଭବରେ ଯଥାଯଥ ରୂପେ ପ୍ରକଟିତ ହୋଇଅଛି ।

ବ୍ରହ୍ମ ପୁରାଣରେ ମଧ୍ୟ ଏହି ବିଷୟର ଉଲ୍ଲେଖ ଦେଖାଯାଏ । ଏହି ଚମତ୍କାର ଅଂଶଟିକୁ ଅମ୍ବିକାବିଳାସ କବି, ପରାନୁସରଣ କବିତାର ସୌନ୍ଦର୍ଯ୍ୟ ଏବଂ କବିଙ୍କର ଗୌରବବୃଦ୍ଧିର ଅନ୍ତରାୟ ଭାବି ପରିତ୍ୟାଗ କରିଥିବାର ଅନୁମାନ କରାଯାଏ । "ଅପାରେ କାବ୍ୟସଂସାରେ କବିରେବ ପ୍ରଜାପତିଃ" ଏହି ବାକ୍ୟ ସ୍ମରଣ କଲେ କବିଙ୍କର ପୁରାଣସମ୍ମତ ବିଷୟ ବ୍ୟତିକ୍ରମ ଇଚ୍ଛାଧୀନ ଥିବା ହେତୁ ଦୋଷାବହ ନୁହେଁ । ଆହୁରି ମଧ୍ୟ ବିଷୟ ଅପେକ୍ଷା ଅଳଙ୍କାର-ବିନ୍ୟାସରେ ପକ୍ଷପାତିତା କାଳୋଚିତ ଥିବାରୁ ଏପରି ବ୍ୟତିକ୍ରମ ଘଟିବା ସ୍ୱାଭାବିକ ।

## ପ୍ରାଚୀନ କାବ୍ୟର ଅନବଦ୍ୟତା—

ଅନେକେ ଉତ୍କଳର ପ୍ରାଚୀନ ସାହିତ୍ୟ ବିଭବକୁ ଶବ୍ଦାଳଙ୍କାର-ପ୍ରାଚୁର୍ଯ୍ୟ ଓ ବିଷୟ ବୈଚିତ୍ର୍ୟହୀନତା ହେତୁ ଅସ୍ୱାଭାବିକତା ଦୋଷରେ ଦୁଷ୍ଟ ବୋଲି କହନ୍ତି; ସାହିତ୍ୟ-ସମ୍ରାଟ ଉପେନ୍ଦ୍ର, ଦୀନକୃଷ୍ଣ, ଅଭିମନ୍ୟୁ, ଭକ୍ତଚରଣଙ୍କ କବିତାମାନ ଏହି ଦୋଷରୁ ମୁକ୍ତ ନୁହେଁ ବୋଲି ଖେଦ ପ୍ରକାଶ କରିଥାନ୍ତି । କିନ୍ତୁ ସେଗୁଡ଼ିକ ସେପରି ଶୋଚନୀୟ ରୂପେ ବିବେଚିତ ହେବା ଉଚିତ ନୁହେଁ ବୋଲି ମନେହୁଏ । ଯାଜକୃଷ୍ଣଙ୍କ ଆଚାର୍ଯ୍ୟଙ୍କ କେଳକୁ ସଂସ୍କୃତ ସାହିତ୍ୟକୁ ଆଦର୍ଶ କରି ଉତ୍କଳ ସାହିତ୍ୟ ଗଢ଼ିବାର ଉଦ୍ୟମ ଆରମ୍ଭ ହୋଇ ଯାଇଥିଲା । ସଂସ୍କୃତ-ଭାରତୀ ସ୍ୱଭାବତଃ ନାନାଳଙ୍କାରମଣ୍ଡିତା; ଅତଏବ ତଦନୁସରଣରେ ରଚିତ କବିତା ତଦନୁରୂପ ଅଳଙ୍କୃତା ହେବାରେ ବିସ୍ମୟର ଅବକାଶ ନାହିଁ ।

ନବମ ଶତାବ୍ଦୀର କବି ରାଜଶେଖର, ମହାକବି-ଲକ୍ଷଣ ଦେଖାଇବାକୁ ଯାଇ କାବ୍ୟକବିମାନଙ୍କର ଆଠଗୋଟି ବିଭାଗ ନିର୍ଦ୍ଦେଶ କରିଅଛନ୍ତି । ଯଥା—

ରଚନାକବି—ଯେ ପଦସଂଘଟନ ପ୍ରଣାଳୀରେ ଦକ୍ଷ ।
ଶବ୍ଦକବି—ଯେ ଉପଯୋଗୀ ଶବ୍ଦ ନିର୍ଣ୍ଣୟ କରି ପ୍ରୟୋଗ କରନ୍ତି ।
ଅର୍ଥକବି—ଯେ ଚମତ୍କାରୀ ଅର୍ଥ ଉଦ୍ଭାବନ କରି ପ୍ରୟୋଗ କରନ୍ତି ।
ଅଳଙ୍କାର କବି—ଶବ୍ଦ ଓ ଅର୍ଥାଳଙ୍କାର ଭେଦରେ ମଧ୍ୟ ଏ କବି ଦୁଇପ୍ରକାର—
କେବଳ ଶବ୍ଦାଳଙ୍କାର ପ୍ରିୟ ଓ କେବଳ ଅର୍ଥାଳଙ୍କାର ପ୍ରିୟ ।
ଉକ୍ତିକବି—ଲାକ୍ଷଣିକ ବା ଉକ୍ତି ପଦଦ୍ୱାରା ଯେ ଭାବ ପ୍ରକାଶ କରନ୍ତି ।
ରସକବି—ବ୍ୟଞ୍ଜନାବୃତ୍ତିଦ୍ୱାରା ନାନାରସୋଦ୍ଦୀପକ ଭାବପ୍ରକାଶକ କବିତାମାନ ରଚନା କରନ୍ତି ।
ମାର୍ଗକବି—ଯେ ନିର୍ଦ୍ଦିଷ୍ଟ ବା ପ୍ରସିଦ୍ଧ ଅର୍ଥଗୁଡ଼ିକୁ ବିଶିଷ୍ଟ ରୂପ ପ୍ରଦାନ କରି କବିତା ରଚନା କରନ୍ତି ।
ଶାସ୍ତ୍ରାର୍ଥ କବି—ଯେ ଶାସ୍ତ୍ରର ଗୂଢ଼ ଓ ଜଟିଳ ତତ୍ତ୍ୱଗୁଡ଼ିକୁ କୋମଳ ପଦବିନ୍ୟାସଦ୍ୱାରା ସହଜବୋଧ କରି କାବ୍ୟ ମଧ୍ୟରେ ନିବିଷ୍ଟ କରନ୍ତି ।

ଏହି ଅଷ୍ଟବିଧ ବିଭିନ୍ନ ଗୁଣ ମଧ୍ୟରୁ ଦୁଇ ବା ତିନୋଟି ଗୁଣର ଅଧିକାରୀ କବି କନିଷ୍ଠ ଶ୍ରେଣୀର, ପାଞ୍ଚ ବା ଛଅଗୋଟି ଗୁଣର ଅଧିକାରୀ ମଧ୍ୟମ ଶ୍ରେଣୀର ଓ ସମସ୍ତ ଗୁଣବାନ୍ କବି ଉତ୍ତମ ଶ୍ରେଣୀର । ଉତ୍ତମ ଶ୍ରେଣୀର କବିହିଁ ମହାକବି ବୋଲି ପରିଚିତ ।

ଉତ୍କଳର ପ୍ରାଚୀନ ସାହିତ୍ୟ ଆଲୋଚନା କଲେ ଏହି ସମସ୍ତ ଗୁଣ ଦେଖିବାକୁ ପାଇଥାଉଁ । ଏଥିରୁ ଅନୁମିତ ହୁଏ ଯେ, ମହାକବି-ପଦବୀଲିପ୍ସା

ଉତ୍କଳୀୟ କବିବୃନ୍ଦଙ୍କ ଏହି ମାର୍ଗରେ ପଥିକ କରାଇଥିଲା । ତେଣୁ ଶବ୍ଦାଳଙ୍କାରକୁ କାବ୍ୟର ଅପରିହାର୍ଯ୍ୟ ଅଙ୍ଗରୂପେ ସେମାନେ ଗ୍ରହଣ କରିଥିଲେ ।

ଅଧୁନା ମଧ୍ୟ ଉତ୍କଳ ସାହିତ୍ୟ ସଙ୍ଗୀତମୟ ନାନା ରାଗରାଗିଣୀରେ ରଚିତ । ଶ୍ରୁତିମଧୁରତା ସଙ୍ଗୀତର ପ୍ରଧାନତମ ଅଙ୍ଗ । ତାହା ଅନୁପ୍ରାସ, ଯମକ ପ୍ରଭୃତି ଶବ୍ଦାଳଙ୍କାରଦ୍ୱାରା ବର୍ଦ୍ଧିତ ହୋଇଥାଏ । ତେଣୁ ଉତ୍କଳସାହିତ୍ୟ ପ୍ରଚୁର ଶବ୍ଦାଳଙ୍କାରରେ ମଣ୍ଡିତ ।

ପୁନଶ୍ଚ ସଂସ୍କୃତ ସାହିତ୍ୟରେ କେହି କେହି ଆଳଙ୍କାରିକ ରୀତିକୁ (ପଦସଂଯୋଜନା ପ୍ରଣାଳୀକୁ) କାବ୍ୟର ଆତ୍ମାରୂପେ, କେହି ବା ବକ୍ରୋକ୍ତିକୁ କାବ୍ୟର ଆତ୍ମାରୂପେ, କେହି ବା ରସକୁ କାବ୍ୟର ଆତ୍ମାରୂପେ ନିର୍ଦ୍ଦେଶ କରିଅଛନ୍ତି । ରସହିଁ କାବ୍ୟର ଆତ୍ମା ବୋଲି ସର୍ବସମ୍ମତ ହେଲେହେଁ ଅନ୍ୟ-ଗୁଡ଼ିକର ଉପଯୋଗିତାକୁ ଅସ୍ୱୀକାର କରାଯାଇ ନ ପାରେ । ତେଣୁ ଉତ୍କଳୀୟ କବିମାନେ ସମସ୍ତ ପ୍ରକାର ମତକୁ ନିଜ ନିଜ କାବ୍ୟରେ ନ୍ୟୂନାଧିକ ପରିମାଣରେ ସ୍ଥାନ ଦେଇଅଛନ୍ତି । ଏଣୁ ତହିଁରେ ଶ୍ଳେଷ, ଛଳ, ଆଶ୍ରୟ ଇତ୍ୟାଦିର ପ୍ରାଚୁର୍ଯ୍ୟ ପରିଲକ୍ଷିତ ହୁଏ ।

ପୂର୍ବେ (ଧନଞ୍ଜୟ ଓ ଉପେନ୍ଦ୍ରଙ୍କ କାଳରେ) ଯୁବତୀ-ବିବାହ ପ୍ରଥା ଅତି ବିରଳ ଥିଲା । ଧର୍ମ-ଶାସ୍ତ୍ର ନିର୍ଦ୍ଦେଶମତେ ସବୁ ଜାତି ଗୌରୀଦାନରେ (ଅଷ୍ଟବର୍ଷୀୟ କନ୍ୟାର ଦାନ) ପୁଣ୍ୟ ଲାଭ କରିବାକୁ ଉତ୍କଣ୍ଠିତ ଥିଲେ । ଯେଉଁ କେତୋଟି ଜାତିରେ ବା ଯୁବତୀ ବିବାହ ପ୍ରଥା ପ୍ରଚଳିତ ଥିଲା, ସେଠାରେ ମଧ୍ୟ କନ୍ୟାର ବର ନିର୍ଣ୍ଣୟ କରିବାର ଅଧିକାର ଆଦୌ ନ ଥିଲା । ସେ କାଳର ଗୁରୁବର୍ଗ ଅପରିଣତ ବୁଦ୍ଧି ଯୁବକ ଯୁବତୀମାନଙ୍କର ଆଶୁ-ଆଶ୍ରୟ-ଲୋଲୁପ ଅଭିଳାଷ ଉପରେ ଆଜୀବନ ଭାଗ୍ୟ-ନିର୍ଣ୍ଣୟ ରୂପ ଗୁରୁତମ ଦାୟିତ୍ୱକୁ ପକାଇଦେବା ଶୁଭକର ବୋଲି ଭାବୁ ନ ଥିଲେ । ଫଳତଃ ଯୌବନର ପ୍ରାକ୍‌କାଳରୁ ଅଥବା ଅବ୍ୟବହିତ ପରେ ବିବାହ-ବନ୍ଧନରେ ବଦ୍ଧ ହେଉଥିବାରୁ ନାୟକ-ନାୟିକାଙ୍କର ପ୍ରଣୟସ୍ପୃହା ବ୍ୟକ୍ତିବିଶେଷରେ କେନ୍ଦ୍ରୀଭୂତ ହେଉଥିଲା । ତେଣୁ ସେମାନେ ପୂର୍ବରାଗର ସଂଶୟ-ଦୋଳାରେ ଆରୂଢ଼ ହୋଇ ବିମର୍ଷର ଘନଘଟା ମଧ୍ୟରେ ଆନନ୍ଦ-ଚପଳାର ଚମକ, ନୈରାଶ୍ୟମନ୍ଦ୍ରରେ ଆଶାମରୀଚିକାର ସ୍ନିଗ୍ଧ-ନୀଳକାନ୍ତି, ପ୍ରଣୟ-ଦେବତାର ମଧୁର ମୁରଲୀର ଚିତ୍ତହାରିଣୀ ମୂର୍ଚ୍ଛନା ସଙ୍ଗେ ସଙ୍ଗେ ବିଷାଦର ଗାଢ଼ ରାଗ ଅନୁଭବ କରିବାର ଅବସର ପାଉ ନ ଥିଲେ । ଅତଏବ ସମ୍ଭୋଗ-ଶୃଙ୍ଗାରହିଁ ପ୍ରଧାନତଃ ପ୍ରାଚୀନ କାବ୍ୟରାଜିର ଆତ୍ମରୂପେ ଗୃହୀତ ହୋଇଅଛି । ଏହା ବୋଲି ବିପ୍ରଲମ୍ଭ ଯେ ଏକାବେଳକେ ଉପେକ୍ଷିତ, ଏହା ନୁହେଁ । ସ୍ଥଳେ ସ୍ଥଳେ 'ପ୍ରବାସ' ସୃଷ୍ଟି ଫଳରେ ନାୟକ ଓ ନାୟିକାର ଭିନ୍ନ ଦେଶାବସ୍ଥିତି ବର୍ଣ୍ଣିତ ହୋଇ "ନ ବିନା ବିପ୍ରଲମ୍ଭେନ ସମ୍ଭୋଗଃ ପୁଷ୍ଟିମଶ୍ନୁତେ ।"

ଏହି ଆଳଙ୍କାରିକ ସତ୍ୟ ଯଥାସମ୍ଭବ ରକ୍ଷିତ ହୋଇଅଛି । ଏହା କବିମାନଙ୍କର କ୍ରୀତଦାସତା ହେତୁ ନୁହେଁ; ପ୍ରତ୍ୟୁତ ସମାଜ ଅଙ୍କୁଶଦ୍ୱାରା ନିୟମିତ ହୋଇ ସେମାନେ ଏହି ମାର୍ଗ ଅବଲମ୍ବନ କରିଅଛନ୍ତି । ସେ କାଳରେ ଧର୍ମାନୁମୋଦିତ କ୍ରମ ଓ ସ୍ତ୍ରୀ ପ୍ରଣୟ ବର୍ଣ୍ଣନ ଗର୍ହିତ ବୋଲି ବିବେଚିତ ହେଉଥିବାରୁ ଅଭୀଷ୍ଟସିଦ୍ଧି ପାଇଁ ଭୃତ୍ୟନ୍ୟପ୍ରାଣ ପ୍ରଣୟୀ ବା ପ୍ରଣୟିନୀର ଅଭାବ ତତ୍କାଳୀନ କାବ୍ୟରେ ପରିଦୃଷ୍ଟ ହେବା ଏକାନ୍ତ ସ୍ୱଭାବସିଦ୍ଧ ।

ଚତୁର୍ଦ୍ଦଶ ଶତାବ୍ଦୀର ଉତ୍କଳୀୟ ମହାକବି ଆଳଙ୍କାରିକ-ଚୂଡ଼ାମଣି ବିଶ୍ୱନାଥ, ତାହାଙ୍କର ଜଗଦ୍ୱିଖ୍ୟାତ ଗ୍ରନ୍ଥ "ସାହିତ୍ୟ ଦର୍ପଣ"ରେ କାବ୍ୟର ପ୍ରୟୋଜନ ବିଷୟରେ ପ୍ରାଚୀନ ପଣ୍ଡିତମାନଙ୍କର ନିମ୍ନଲିଖିତମତ ଉଦ୍ଧାର କରିଅଛନ୍ତି ।

"କାବ୍ୟସ୍ୟ ପ୍ରୟୋଜନଂ ହି ରସାସ୍ୱାଦସୁଖପିଣ୍ଡଦାନଦ୍ୱାରେଣ ବେଦାଦି-ଶାସ୍ତ୍ରବିମୁଖାନାଂ ସୁକୁମାରମତୀନାଂ ରାଜପୁତ୍ରାଦୀନାଂ ବିନେୟାନାଂ ରାମାଦିବତ୍ ପ୍ରବର୍ତ୍ତିତବ୍ୟଂ ନ ରାବଣାଦିବଦ୍ ଇତ୍ୟାଦି କୃତ୍ୟାକୃତ୍ୟ ପ୍ରବୃତ୍ତିନିବୃତ୍ତ୍ୟୁପଦେଶଃ ।"

ଅର୍ଥାତ୍ କଠିନ ମତିରେ ବେଦ, ରାଜନୀତି ପ୍ରଭୃତି ଶାସ୍ତ୍ରରେ ପରାଙ୍ମୁଖ ରାଜପୁତ୍ର ବା ଧନୀଜପୁତ୍ର ପ୍ରଭୃତି ଶିଷ୍ୟମାନଙ୍କୁ ରସାସ୍ୱାଦରୂପ ପୁଞ୍ଜୀଭୂତ ସୁଖଦାନ କରି "ରାମଙ୍କ ପରି କାର୍ଯ୍ୟ କରିବ, ରାବଣ ପରି କରିବ ନାହିଁ" ଇତ୍ୟାଦି ଉପଦେଶଦ୍ୱାରା ଅକୃତ୍ୟରୁ ନିବୃତ୍ତ ଓ କର୍ତ୍ତବ୍ୟରେ ପ୍ରବୃତ୍ତ କରାଇବାହିଁ କାବ୍ୟର ପ୍ରୟୋଜନ । ଏଥିରୁ ସ୍ପଷ୍ଟ ପ୍ରତୀତ ହେଉଛି ଯେ, ପ୍ରାଚୀନ କାବ୍ୟ କେବଳ ତରଳ ପ୍ରେମ ଉଦ୍‌ଗାର କରି ସମାଜରେ ଉଚ୍ଛୃଙ୍ଖଳତା ସୃଷ୍ଟି କରିବା ପାଇଁ ରଚିତ ହୋଇ ନ ଥିଲା । ତାହା ସମାଜ ନିୟମକୁ ଅକ୍ଷୁର୍ଣ୍ଣ ରଖି ପାଠକକୁ ରସାସ୍ୱାଦରେ ସୁଖୀ କରିବା ସଙ୍ଗେ ସଙ୍ଗେ ବୈଦ୍ୟକ, ଜ୍ୟୋତିଷ, ଶିଳ୍ପ, କର୍ମକାଣ୍ଡ, ରାଜନୀତି, ଧର୍ମ, କୁଳାଚାର, ଦେଶାଚାର, ବେଶଶାସ୍ତ୍ର, ଅଳଙ୍କାର ଶାସ୍ତ୍ର ଇତ୍ୟାଦି ନାନାଶାସ୍ତ୍ରର ଶିକ୍ଷା ପ୍ରଦାନ କରୁଥିଲା । ତେଣୁ ତତ୍କାଳୀନ ଉଚ୍ଚ ଶିକ୍ଷାନୁଷ୍ଠାନମାନଙ୍କରେ ଅବଶ୍ୟ ପାଠ୍ୟ ରୂପେ ସେ ସବୁ ପଠିତ ହେବାର ରୀତି ପ୍ରଚଳିତ ଥିଲା ।

ଉତ୍କଳରେ "କାବ୍ୟେଷୁ ମାଘଂ କବିକାଳିଦାସଃ" ବୋଲି ଗୋଟିଏ ଶ୍ଳୋକାଂଶ ପ୍ରଚଳିତ ଅଛି । ଏହି ଶ୍ଳୋକାଂଶ ଉତ୍କଳୀୟ ପ୍ରାଚୀନ କାବ୍ୟ ସ୍ୱରୂପର ଉତ୍କୃଷ୍ଟ ପ୍ରମାପକ । ଏଥିରେ କବିମାନଙ୍କ ମଧ୍ୟରେ କାଳିଦାସଙ୍କ ଆସନ ଶ୍ରେଷ୍ଠ ବୋଲି କୁହାଯାଇଥିଲେହେଁ ତାଙ୍କ ରଚିତ କାବ୍ୟକୁ ଶ୍ରେଷ୍ଠ ଆସନ ଦିଆଯାଇ ନାହିଁ । ପକ୍ଷାନ୍ତରରେ ମାଘଙ୍କ କାବ୍ୟକୁ ଉଚ୍ଚ ଆସନ ଦିଆଯାଇଥିଲେ ସୁଦ୍ଧା କବିରୂପେ ତାହାଙ୍କୁ ଶ୍ରେଷ୍ଠ ଆସନ ଦିଆଯାଇ ନାହିଁ । ଏଥିରୁ ଅନୁମିତ

ହୁଏ, କେବଳ ଉପଦେଶ କାବ୍ୟର ଉତ୍କର୍ଷ ସାଧକ ବୋଲି ସେ କାଳରେ ବିବେଚିତ ହେଉ ନ ଥିଲା । ତାହା ହୋଇଥିଲେ ଜାନଦାସଙ୍କ କାବ୍ୟ ନିଶ୍ଚୟ ଉତ୍କୃଷ୍ଟ କାବ୍ୟ ବୋଲି କଥିତ ହୋଇଥାନ୍ତା । କୁଶଳ ଭିଷକ୍ ଯେପରି ନାନା ଧାତୁଦ୍ରବ୍ୟକୁ ଭିନ୍ନ ଭିନ୍ନ ଦ୍ରବ୍ୟରସର ଭାବନା ଦେଇ ପୁଟପାକ କରି ଶେଷରେ ନାନାରୋଗହର, ବଳକାରକ ଔଷଧରେ ପରିଣତ କରନ୍ତି, ସେହିପରି କୁଶଳ କବି ନାନା ଶାସ୍ତ୍ରତତ୍ତ୍ୱକୁ ଶୃଙ୍ଗାରାଦି ରସରେ ଭାବିତ କରି ନାନାଳଙ୍କାର ଶାଣ ପ୍ରଭୃତି ପୁଟପାକଦ୍ୱାରା ଅଜ୍ଞାନ-ରୋଗହର ଔଷଧ ରୂପେ ନିଜ କାବ୍ୟ ସୃଷ୍ଟି କରିଥାନ୍ତି । ସୁତରାଂ କବିରୂପେ ଏମାନଙ୍କ ଆସନ ଗୌରବମଣ୍ଡିତ ନ ହୋଇପାରେ; କିନ୍ତୁ ସମାଜ-ଶିକ୍ଷକ ରୂପେ ଏମାନଙ୍କର ଆସନ ଅତି ଉଚ୍ଚ । ମାଘ ଅନନ୍ତୋରେକ୍ତ ଶ୍ରେଣୀର କବି ଥିଲେ । ତେଣୁ ତାଙ୍କ କାବ୍ୟର ଆଦର ଏତେ ଅଧିକ । ଭଞ୍ଜ ପ୍ରଭୃତିଙ୍କର କାବ୍ୟ ଏହି ଆଦର୍ଶରେ ଅନୁପ୍ରାଣିତ ବୋଲି ସ୍ପଷ୍ଟଭାବେ ଜଣାପଡ଼େ ।

ଅତଏବ ସମୟ ବିଶେଷରେ ରୁଚି ଓ ଉଦ୍ଦେଶ୍ୟ ବିଶେଷକୁ ଘେନି ଯେଉଁ କାବ୍ୟମାନ ରଚିତ, ସେଗୁଡ଼ିକ ଶୋଚନୀୟ ବୋଲି ବିବେଚିତ ହେବା ସର୍ବଥା ଅନୁଚିତ । ତାହାର ଆଲୋଚନା ମଧ୍ୟ ଆଧୁନିକ ଦୃଷ୍ଟିରେ କରାଯିବା ଆଦୌ ବାଞ୍ଛନୀୟ ନୁହେଁ । ଏଣୁ ସେଗୁଡ଼ିକ ଅନବଦ୍ୟ ଓ କବିମାନେ ମଧ୍ୟ ଅନୁକମ୍ପାମୟୀ କ୍ଷମାର ପାତ୍ରରୂପେ ବିବେଚିତ ହେବା ଅସଙ୍ଗତ ।

ଅମ୍ବିକା-ବିଳାସରେ କବି ବଳଭଦ୍ର, ଭଞ୍ଜଙ୍କ ପଦାଙ୍କ ଅନୁସରଣ କରିଅଛନ୍ତି । ତାଙ୍କ କାବ୍ୟ, ତାଙ୍କର ଭାଷାରେ କହିବାକୁ ଗଲେ, ଉତ୍କଳ ସାହିତ୍ୟ ରାଜ୍ୟରେ ଗୋଟିଏ ସ୍ୱର୍ଣ୍ଣସୌଧ । ଅଷ୍ଟାଦଶ ଶତାବ୍ଦୀର ତୃତୀୟ ପାଦ ପର୍ଯ୍ୟନ୍ତ ଉତ୍କଳ ଭାଷାର କୃଷ୍ଟି ଯେତେ ଯେତେ ଦିଗରେ ଆତ୍ମପ୍ରକାଶ କରିଥିଲା, ବଳଭଦ୍ରଙ୍କର ଏହି ରଚନାରେ ସେ ସମସ୍ତର ସୂଚନା ମିଳେ । ସଂସ୍କୃତ, ପ୍ରାକୃତ, ହିନ୍ଦୀ (ହଖୋଠା) ଓ ବଙ୍ଗଳା ଭାଷାର କବିତା ରଚନାରେ କବିଙ୍କର କି ପ୍ରକାର ଦକ୍ଷତା ଥିଲା, ତାହା ମଧ୍ୟ ଏହି କାବ୍ୟ ପାଠ କଲେ ଜଣାଯାଏ । ଛାନ୍ଦ ପୁସ୍ତକରେ ସଙ୍ଗୀତର (ଚୌପଦୀ) ସନ୍ନିବେଶ ଏହି କବିଙ୍କର ଲେଖାରେ ବିଶେଷତ୍ୱ । ଅମ୍ବିକା-ବିଳାସର ୩୬ଶ ଛାନ୍ଦରେ ନାନା ରାଗରାଗିଣୀରେ ନିବଦ୍ଧ ଏଗାର ଗୋଟି ସଙ୍ଗୀତ ସନ୍ନିବେଶିତ ହୋଇଅଛି । ସେଥିମଧ୍ୟରୁ କେତୋଟି ମାତ୍ରା ବୃତ୍ତରେ ଓ ଆଉ କେତୋଟି ଅକ୍ଷର ବୃତ୍ତରେ ରଚିତ । ସେହି ଛାନ୍ଦରେ ଥିବା ସଂସ୍କୃତ ଶ୍ଳୋକଗୁଡ଼ିକ ପ୍ରତ୍ୟେକ ଭିନ୍ନ ଭିନ୍ନ ଛନ୍ଦରେ ଲିଖିତ ଓ ପ୍ରତ୍ୟେକ ଚରଣ ଅକାରାଦି । ଶ୍ଳେଷ, ଆଶ୍ରୟ, ଅବନା, ଶ୍ଳେଷାନୁପ୍ରାଣିତ, ପଦସଂଖ୍ୟା, ଅକ୍ଷର ହ୍ରାସବୃଦ୍ଧି ନିୟମ, ଦତ୍ତାକ୍ଷର, ଚ୍ୟୁତାକ୍ଷର; ପୁନରୁକ୍ତବଦାଭାସ, ଉପମା, ରୂପକ, ଧ୍ରୁବପଦ, ଛଳ, ଗୋମୂତ୍ରିକାବନ୍ଧ, ସ୍ୱଭାବୋକ୍ତି; ଯମକ, ଶୃଙ୍ଖଳା, ବକ୍ରୋକ୍ତି ଅପ୍ରସ୍ତୁତ ପ୍ରଶଂସା ପ୍ରଭୃତି ନାନା ଶବ୍ଦ ଓ ଅର୍ଥାଳଙ୍କାର

ରସାନୁଗୁଣ କରି କତି ପ୍ରୟୋଗ କରିଅଛନ୍ତି । ଅକାରକୁ ଆଦରରେ ରଖି ରଚନା କରିଥିଲେ ସୁଦ୍ଧା କବି ଏପରି ନିପୁଣତା ସହକାରେ ତାହା ନିର୍ବାହ କରିଅଛନ୍ତି ଯେ, "ଏହା ଅ'କାର ନିୟମରେ ଲିଖିତ" ଏହା ପାଠକ ପାଠକାଳରେ ଭୁଲିଯାଏ ।

ଦ୍ୱାଦଶ ଛାନ୍ଦରେ ଉଷାଙ୍କର ସ୍ୱପ୍ନରେ ବର୍ଷାକାଳ ଦର୍ଶନ, ତ୍ରୟୋଦଶରେ ବିରହିଣୀ ଉଷାଙ୍କର ମଳୟାନିଳ, ଚନ୍ଦ୍ର, କୋକିଳ, ଅନଙ୍ଗ - ପ୍ରଭୃତିଙ୍କର ଉପାଳମ୍ଭ; ଚତୁସ୍ତ୍ରିଂଶ ଛାନ୍ଦରେ ବସନ୍ତ ବର୍ଣ୍ଣନା ଅତି ହୃଦୟଗ୍ରାହୀ ହୋଇଅଛି । ଊନବିଂଶ ଛାନ୍ଦର ନଗର ବର୍ଣ୍ଣନାରେ, ଏକବିଂଶ ଛାନ୍ଦର ବିବାହମଣ୍ଡପ ବର୍ଣ୍ଣନାରେ କବି ଯେଉଁ କଳ୍ପନାର ବୈଚିତ୍ର୍ୟ ଦେଖାଇ ଅଛନ୍ତି, ତାହା ଅତି ଚମତ୍କାର । ଚତୁର୍ଥ ଛାନ୍ଦର ଯୁଦ୍ଧ ବର୍ଣ୍ଣନା ଓ ପଞ୍ଚମ ଛାନ୍ଦର ଶିବ ନୃତ୍ୟ ଅତି ସ୍ୱାଭାବିକ । ଧ୍ରୁବପଦର ଅନୁବର୍ତ୍ତନରେ ରଚିତ ଦ୍ୱିଶତ ଛାନ୍ଦ ପାଠକମାନଙ୍କର ଚିତ୍ତବିନୋଦର ଅପୂର୍ବ ସାମଗ୍ରୀ । ପ୍ରତ୍ୟେକ ବିଷୟର ପୃଥକ୍ ପୃଥକ୍ ଉଦାହରଣ ଦେବାକୁ ଗଲେ ଲେଖାର କଳେବର ବର୍ଦ୍ଧିତ ହୋଇଯିବ, ତେଣୁ ତହିଁରୁ ନିବୃତ୍ତ ହେଲି । କବି ସ୍ୱପ୍ରବନ୍ଧକୁ ନିର୍ଦ୍ଦୋଷ କରିବାରେ କି ପ୍ରକାର ସାବଧାନତା ଅବଲମ୍ବନ କରିଥିଲେ, ସେ ବିଷୟରେ ତାଙ୍କର ଉକ୍ତି ନିମ୍ନରେ ଉଦ୍ଧୃତ କରୁଅଛି । ପାଠକ-ମାନେ ତହିଁରୁ ତାହାଙ୍କର କବି ପ୍ରତିଭାର ପରିଚୟ ପାଇପାରିବେ । ଯଥା—

"ଅତି ସହୃଦୟ କବି ବିବେକକରି,
ଅପୂର୍ବ ପଣ୍ଡିତ ସର୍ବ ବିଷୟେ ଧୀର । ୨ ।
ଅପାର ଆନନ୍ଦେ ଏମାନଙ୍କୁ ଜଣାଇଁ
ଅନୁଆନେ ସର୍ବ ଛାନ୍ଦମାନ ଶୁଣାଇଁ ।
ଅର୍ଥ ଶ୍ଳିଷ୍ଟାଶ୍ଳିଷ୍ଟ ଶବ୍ଦ ଶ୍ଳେଷ କଠିନେ
ଅଦୋଷ ଦୋଷ ବା ଅଛି ଯେ ଯେଉଁ ସ୍ଥାନେ;
ଅକ୍ଷରବିଶରୁ କେଉଁ ପଦ ଅସ୍ଫୁଟ
ଅଛି ଶ୍ଳେଷାର୍ଥରେ କେଉଁ ପଦରେ କ୍ଳିଷ୍ଟ;
ଅନେକ ନିୟମେ ଊଣା କେଉଁ ବସତି
ଅବର୍ଣ୍ଣ ନିୟମେ ମାଇସ କେ ଭାରତି ।
ଅନୁଭବ ଏ ବିଷୟମାନ ବିଦୁଷେ
ଅଦୋଷ ହୋଇଲା ଗୀତ କହିଲେ ତୋଷେ ।
ଅତଃ କାରଣୁ ଏ ଗୀତ ନିର୍ଦ୍ଦୋଷକର
ଅଟେ ସ୍ୱଚ୍ଛ ଗୁଣଧର ଉଜ୍ଜ୍ୱଳେ ଯନ୍ତ୍ର । ୮ ।" — ୪୦ଶ ଛାନ୍ଦ ।

ଅଗରଞ୍ଚ— "ଅତୃପ୍ତ ହୋଇଲେ ସାଧବେ
ଅବଶ୍ୟ ନେକ ଦୋଷ ଦେବେ ।
ଅପାର ପୁନରୁକ୍ତି ଅଛୁ
ଅବା ବୋଲିବେ କେହୁ କାହୁ ।
ଅଧିକ ନୋହିଲା ସରଳ
ଅର୍ଥ ତ ନୋହିଲା ବରଳ ।
ଅଶ୍ରୁତର ଏ ଶବ୍ଦମାନ
ଅଳଙ୍କାରରୁ ହେଲା ଭିନ୍ନ
ଅନ୍ତରେ ଗର୍ବ କେ କହିବେ,
ଅଜ୍ଞାନ ଜବ ଏ କହିବେ ।
ଅମରୁଷରେ ବାଣୀ ଭଣି
ଅନ୍ତର ହେବେ କେ ନ ଶୁଣି ।"

ଉକ୍ତ ପଦଶୃଙ୍ଖଳ ମଧ୍ୟ ତତ୍କାଳୀନ କାବ୍ୟ-ସମାଲୋଚନାର ଦିଗ୍ ନିର୍ଦ୍ଦେଶ ।

## କବି ଜୀବନୀ

ଉତ୍କଳର ରାଜନ୍ୟମଣ୍ଡଳୀ ମଧ୍ୟରେ ଭଞ୍ଜବଂଶୀୟ ରାଜାଗଣ ଉତ୍କଳଭୂମିରେ କେତେବେଳେ ମସୀ-ଲେଖମାଧର କବିରୂପେ, କେତେ-ବେଳେ ବା ଅସିଚର୍ମଧର ଯୋଦ୍ଧୃରୂପେ ଅପୂର୍ବ କୌଶଳ ପ୍ରଦର୍ଶନ କରିଅଛନ୍ତି । ଏହି ବଂଶ ଘୁମୁସର, କନିକା, ମୟୁରଭଞ୍ଜ ପ୍ରଭୃତି ବହୁ ରାଜ୍ୟରେ ଶାସନଦଣ୍ଡ ପରିଚାଳନ କରୁଅଛନ୍ତି । ଏମାନଙ୍କ ମଧ୍ୟରୁ ପ୍ରାଚୀନ କାଳର ହରିହରପୁରର ଭଞ୍ଜବଂଶ ଅର୍ଥାତ୍ ଅଧୁନାତନ ମୟୁରଭଞ୍ଜ ଓ କେନ୍ଦୁଝରର ରାଜବଂଶଦ୍ୱୟ ପ୍ରାଚୀନତମ । ଅମ୍ବିକା-ବିଳାସର କବି ବଳଭଦ୍ର ଭଞ୍ଜ କେନ୍ଦୁଝରର ଅଧିପତି ଦାନବୀର ଶ୍ରୀ ଜଗଦୀଶ୍ୱର ଭଞ୍ଜଙ୍କ ପୁତ୍ରରୂପେ ଜନ୍ମଗ୍ରହଣ କରିଥିଲେ । କବି ଆତ୍ମପରିଚୟ ପ୍ରସଙ୍ଗରେ ଲେଖିଅଛନ୍ତି—

ବଂଶ ପରିଚୟ

× × × ×
× × ଭରତ ଖଣ୍ଡେ ଉତ୍କଳ ଦେଶେ
ଅମ୍ବୁନିଧି-ତଟବଟ ନିକଟେ ପ୍ରକଟ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର ଈଶେ
× × × ×
ଅଛି ଏହି ପୁଣ୍ୟକ୍ଷେତ୍ର ଉତ୍ତରେ ସୁଚରିତ ରାଜ୍ୟ ନାମ କେନ୍ଦୁଝରୀ
ଅବନୀ ଅଗଣ୍ୟ ଆବୃତ ଅତ୍ୟନ୍ତ ନିଶ୍ଚିନ୍ତ ଶତ୍ରୁ ଅଲଙ୍ଘିତ ଦୁର୍ଗପୁରୀ ।

ଅନୁକମ୍ପା ହେତେ ବନ୍ଧୁ ତ୍ରୈଲୋକ୍ୟ ଗୋସାଇଁ ବଳଭଦ୍ର ପ୍ରଭୁ ପଦ୍ମେ ଭଜେ
ଅବ୍ଜ କର୍ପୂର ସୁନ୍ଦର ଆନନ୍ଦକନ୍ଦର ଅନନ୍ତ ଦେବାଧି-ଦେବରାଜେ ।
ଅନ୍ତର୍ଯ୍ୟାମୀ ସେ ଅଭୀଷ୍ଟ ଫଳଦାତା କଷ୍ଟନାଶନ ମାଳବସନ ବଳ
ଅନ୍ୟ ଆଶା କରି ଦୂର ତାଙ୍କ ଶ୍ରୀପଦରୁ ବଳଭଦ୍ର ଭଞ୍ଜ ନତେ ମୂଢ଼ ।
ଅଙ୍କବଂଶେ ଜାତ ଷଷ୍ଠିଏ ବନ୍ଧନ ଭଞ୍ଜ ସଜ୍ଞା ଷଷ୍ଠଖ୍ୟାତ
ଅସିକଳ୍ପ କରି ଯେହୁ କେନ୍ଦୁଝର ବଟେଜ୍ୟ ହେଲେ ନରନାଥ ।
ଅନୁପ୍ରଭୁରେ ପୃଥ୍ୱୀଜ ଭୋଗ କଲେ ଯଥାବଧି ରାଜଗୁଣେ
ଅଟିତ * ଜଗଧୀଶ୍ୱର ଭଞ୍ଜ ମହାରାଜା ସକଳ ଲକ୍ଷଣେ ।
ଅଙ୍ଗସିନ୍ଧୁ ତାଙ୍କର କେନ୍ଦୁ ପରିକାର ସମ୍ଭୂତ ହେଲି ମୁଁ ପୂର୍ବଫଳେ ।
× × × × । ୪୦ ।

ଅଖିଳ ପ୍ରସିଦ୍ଧି ବୈତରଣୀ ନଦୀ ଯେଉଁ ସ୍ଥାନରୁ ଉଦ୍ଭୂତ
ଅନ୍ତକର ଚଣ୍ଡ-କର ଦଣ୍ଡ ଖଣ୍ଡ ନାମ ଗୋନାସିକା ତୀର୍ଥ ।

ଉକ୍ତ ଲେଖାରୁ କବିଙ୍କର କେନ୍ଦୁଝରାଧିପତ୍ୟ ଓ ପିତୃନାମ ପ୍ରଭୃତି ସ୍ପଷ୍ଟ ପ୍ରତୀତ ହେଉଥିବାରୁ ସେ ବିଷୟରେ ଅଧିକ କିଛି ଲେଖିବା ନିଷ୍ପ୍ରୟୋଜନ ।

## ମହାରାଜା ପ୍ରତାପ ଶ୍ରୀ ବଳଭଦ୍ର ଭଞ୍ଜ ଭାଗବତୀ-ର ପ୍ରଣେତା ବଳଭଦ୍ରଙ୍କଠାରୁ ଅଭିନ୍ନ କି ?

୰ତାରିଣୀ ଚରଣ ରଥ ମହାଶୟଙ୍କର ଓଡ଼ିଆ ସାହିତ୍ୟର ଇତିହାସରେ "ବଳଭଦ୍ର ଭଞ୍ଜ" ବୋଲି ଜଣେ କବିଙ୍କର ନାମ ଦେଖାଯାଏ । ସେ ମହାଶୟ ତାହାଙ୍କୁ ଏକାଦଶ ଶତାବ୍ଦୀର କବି ବୋଲି ଲେଖିଅଛନ୍ତି ।

ରଥ ମହାଶୟଙ୍କର ଏହି ମତ ଖଣ୍ଡନ କରିବାକୁ ଯାଇ "ଓଡ଼ିଆ ସାହିତ୍ୟର ଇତିହାସ" ଲେଖକ ଶ୍ରୀଯୁକ୍ତ ବିନାୟକ ମିଶ୍ର ଲେଖିଅଛନ୍ତି — "ମାତୃଭାଷାର ଅନନ୍ତପ୍ରୟାସୀ ସ୍ୱର୍ଗୀୟ ତାରିଣୀଚରଣ ରଥ ମହାଶୟ ଘୁମୁସରର ରାଜା ରାଧାକୃଷ୍ଣ ରଚୟିତା ବଳଭଦ୍ର ଭଞ୍ଜଙ୍କୁ ଏକାଦଶ ଶତାବ୍ଦୀର କବି ବୋଲି ନିରୂପଣ କରିଅଛନ୍ତି । କିନ୍ତୁ କବିଙ୍କର ସମୟ ନିରୂପଣ ନିମନ୍ତେ ସନ୍ତୋଷଜନକ ପ୍ରମାଣ ଦର୍ଶାଇ ନାହାନ୍ତି । ରାଧାକୃଷ୍ଣ ଗୋଟିଏ କାଳ୍ପନିକ କାବ୍ୟ । ଆଧୁନିକ ଓଡ଼ିଆ ଭାଷା ଦ୍ୱାଦଶ ଶତାବ୍ଦୀରେ ସୃଷ୍ଟ ହେବାର ସୂତ୍ରପାତ ହେଲା ବୋଲି କୁହାଯାଉଥିବାରୁ ଏକାଦଶ ଶତାବ୍ଦୀରେ କୌଣସି ଓଡ଼ିଆ କାଳ୍ପନିକ କାବ୍ୟ ରଚିତ ହୋଇଥିବ, ଏହା ଆଦୌ ସମ୍ଭବପର ନୁହେଁ । ବିଶେଷତଃ ବ୍ରାହ୍ମଣ ପଣ୍ଡିତମାନଙ୍କର ସେତେବେଳେ ଓଡ଼ିଆ ଭାଷା ପ୍ରତି ଘୃଣା ଥିବାର ପ୍ରମାଣ ମିଳୁଥିବାରୁ କୌଣସି ରାଜା ଓଡ଼ିଆ ରଚନାରେ ପ୍ରବୃତ୍ତ ହୋଇଥିବେ,

---

*ମହାରାଜା ଜଗଧୀଶ୍ୱର ଭଞ୍ଜ ୧୬୫୮ଠାରୁ ୧୬୮୪ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ।

ଏହା ଆଦୌ ବିଶ୍ୱାସଜନକ ନୁହେଁ । ଆହୁରି ମଧ୍ୟ ଘୁମୁସରରୁ ଯେଉଁ ସବୁ ଦାନପତ୍ର ଆବିଷ୍କୃତ ହୋଇଅଛି, ତହିଁରେ ଏକାଦଶ କିମ୍ବା ଦ୍ୱାଦଶ ଶତାବ୍ଦୀରେ ଘୁମୁସରରେ ବଳଭଦ୍ର ଭଞ୍ଜ ନାମରେ କେହି ରାଜା ଥିବାର ନିଦର୍ଶନ ନାହିଁ । ତଥେ କେବଳ ଘୁମୁସର ରାଜବଂଶାବଳୀ ଉପରେ ନିର୍ଭର କରି ବଳଭଦ୍ର ଭଞ୍ଜଙ୍କ ଆବିର୍ଭାବ କାଳ ଏକାଦଶ ଶତାବ୍ଦୀ ବୋଲି ନିରୂପଣ କରିଅଛନ୍ତି । କିନ୍ତୁ ପୁରୀର ମାଦଳାପାଞ୍ଜିରେ ଓ ଓଡ଼ିଶାର ଅନ୍ୟାନ୍ୟ ରାଜବଂଶାବଳୀମାନଙ୍କରେ ଥିବା ପଞ୍ଚଦଶ ଶତାବ୍ଦୀର ପୂର୍ବବର୍ତ୍ତୀ ବିବରଣ ବିଶ୍ୱାସଯୋଗ୍ୟ ନୁହେଁ ବୋଲି ପ୍ରମାଣିତ ହୋଇଥିବାରୁ ଘୁମୁସରର ରାଜବଂଶାବଳୀ ଉପରେ ନିର୍ଭର କରି ବଳଭଦ୍ର ଭଞ୍ଜଙ୍କୁ ଏକାଦଶ ଶତାବ୍ଦୀର କବି ବୋଲି କୁହାଯାଇ ନ ପାରେ ।"

ଆହୁରି ମଧ୍ୟ ବିନାୟକ ବାବୁ ତାଙ୍କ ପୁସ୍ତକର ଭୂମିକା ସୋପାନରେ ବଳଭଦ୍ର ଭଞ୍ଜଙ୍କର ପରିଚୟ ଦେବାକୁ ଯାଇ ଲେଖିଅଛନ୍ତି—"ଏହି ନାମରେ କଣିକା, ମୟୂରଭଞ୍ଜ ଓ କେନ୍ଦୁଝରରେ ଭିନ୍ନ ଭିନ୍ନ ସମୟରେ ଅନେକ ରାଜା ଥିଲେ । କିନ୍ତୁ ଘୁମୁସରର ରାଜବଂଶରେ ସାହିତ୍ୟ ଚର୍ଚ୍ଚା ପ୍ରବଳ ଥିବାରୁ ଏହାଙ୍କୁ ଘୁମୁସରର ରାଜା ବୋଲି ଗ୍ରହଣ କରିବାକୁ ହେଉଅଛି । ଘୁମୁସରର ରାଜ-ବଂଶାବଳୀରେ ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀରେ ଏହି ନାମରେ ରାଜା ଥିବାର ଦେଖାଯାଏ ନାହିଁ । ସୁତରାଂ ଏ ବେଶି ପ୍ରାଚୀନ ନ ହେଲେ ମଧ୍ୟ ପଞ୍ଚଦଶ ଶତାବ୍ଦୀର ପରବର୍ତ୍ତୀ ହୋଇ ନ ପାରନ୍ତି ।"

ବିନାୟକ ବାବୁ ଘୁମୁସର ରାଜବଂଶାବଳୀ ଅବିଶ୍ୱାସ୍ୟ ବୋଲି ତାରିଣୀ ବାବୁଙ୍କ ମତ ଖଣ୍ଡନ କେଉଁଠାରେ କରିଅଛନ୍ତି ! *ତାରିଣୀ ବାବୁ ମଧ୍ୟ ଏକାଦଶ ଶତାବ୍ଦୀ ବ୍ୟତୀତ ଅନ୍ୟ କାଳରେ ବଳଭଦ୍ର ନାମଧେୟ କୌଣସି ରାଜା ଘୁମୁସରରେ ରାଜ୍ୟପଣ କରୁଥିବାର ଉଲ୍ଲେଖ କରି ନାହାନ୍ତି ।

ବିନାୟକ ବାବୁ ଦ୍ୱାଦଶ ଶତାବ୍ଦୀଠାରୁ ପଞ୍ଚଦଶ ଶତାବ୍ଦୀ ମଧ୍ୟରେ କୌଣସି ନିର୍ଦ୍ଦିଷ୍ଟ ସମୟରେ ବଳଭଦ୍ର ଭଞ୍ଜଙ୍କର ଘୁମୁସରରେ ରାଜତ୍ୱର ପ୍ରମାଣ ପାଇଥିଲେ "ପଞ୍ଚଦଶ ଶତାବ୍ଦୀର ପରବର୍ତ୍ତୀ ହୋଇ ନ ପାରନ୍ତି" ବୋଲି ସଂଶୟାତ୍ମକ ବାକ୍ୟ ପ୍ରୟୋଗ କରି ନ ଥାନ୍ତେ । ସାହିତ୍ୟଚର୍ଚ୍ଚାର ପ୍ରାବଲ୍ୟ ଉପରେ ନିର୍ଭର କରି ବିନାୟକ ବାବୁ ବଳଭଦ୍ରଙ୍କୁ ଘୁମୁସରର ସିଂହାସନ ଅନିଚ୍ଛା ସତ୍ତ୍ୱେ ଅର୍ପଣ କରିଥିବାର ତାଙ୍କ ଲେଖାରୁ ଜଣାପଡ଼େ ।

ତାରିଣୀ ବାବୁ ଏକାଦଶ ଶତାବ୍ଦୀର ଆରମ୍ଭରେ ଓଡ଼ିଆ ଭାଷା ପ୍ରଥମରେ ଲିଖିତ ହୋଇଥିବାର ନିରୂପଣ କରିଥିଲେ ହେଁ କାଲୁନାଦ କାବ୍ୟ ଭବକଥାର ଲେଖକ ବଳଭଦ୍ର ୧୦୨୭ ଠାରୁ ୧୦୫୭ ପର୍ଯ୍ୟନ୍ତ ଘୁମୁସରରେ ରାଜତ୍ୱ କରିଥିବାର ଲେଖିଅଛନ୍ତି । ଏହା ନିତାନ୍ତ ଅସମ୍ଭବ । ଭାଷା ଲିଖିତ-ରୂପ ଧାରଣ

ନନ୍ତୁ କରୁ ତା ସାହାଯ୍ୟରେ କାଳ୍ପନିକ କାବ୍ୟ ଲେଖା ଯାଇଥିବ ବୋଲି କଳ୍ପନା କରିଯାଇପାରୁ ନାହିଁ । ଏହା ଯେ ତାରିଣୀ ବାବୁଙ୍କ ପରି ଯୋଗ୍ୟ ବ୍ୟକ୍ତିଙ୍କ ଚକ୍ଷୁରେ ନ ପଡ଼ିଛି, ଏହା ବିଶ୍ୱାସ୍ୟ ନୁହେଁ । ବୋଧହୁଏ ଧୁମୁସରର ରାଜବଂଶାବଳୀରେ ଏକାଦଶ ବର୍ଣ୍ଣିତ ତତ୍ପରବର୍ତ୍ତୀ କୌଣସି ଶତାବ୍ଦୀରେ ବଳଭଦ୍ର ନାମଧାରୀ କାହାରିକୁ ନ ଦେଖି ବାଧ୍ୟ ହୋଇ ସେ ଏକାଦଶ ଶତାବ୍ଦୀର ବଳଭଦ୍ରଙ୍କୁ ଭବକର୍ଣ୍ଣରଚୟିତୃରୂପେ ନିର୍ଦ୍ଦେଶ କରିଅଛନ୍ତି ।

ଅନ୍ୟଥା ଏପରି ଅସମଞ୍ଜସ ସିଦ୍ଧାନ୍ତ ସେ ଲିପିବଦ୍ଧ କରି ନ ଥାନ୍ତେ । ଅତଏବ ଧୁମୁସରର ବଂଶଗତ ସାହିତ୍ୟଚର୍ଚ୍ଚା ବର୍ଣ୍ଣିତ ଅପର କୌଣସି ଏପରି ସମୀଚୀନ ହେତୁ ନାହିଁ, ଯାହାଦ୍ୱାରା ଭବକର୍ଣ୍ଣ-ରଚୟିତାଙ୍କୁ ଧୁମୁସରର ରାଜା ବୋଲି କୁହାଯାଇପାରିବ । କେନ୍ଦୁଝର ରାଜବଂଶର ସାହିତ୍ୟଚର୍ଚ୍ଚା କି ପ୍ରକାର ଥିଲା, ସେ ବିଷୟରେ ଅଦ୍ୟାବଧି କୌଣସି ଉତ୍କଳୀୟ ବା ବୈଦେଶିକ ଅନୁସନ୍ଧିତ୍ସୁ ଲେଶମାତ୍ର ପରିଶ୍ରମ କରିଥିବାର ଜଣାଯାଇ ନାହିଁ । ଯଦି କେହି ନିରପେକ୍ଷ ସାହିତ୍ୟସେବୀ ଏହାର ଅନୁସନ୍ଧାନ କରନ୍ତି, ତେବେ ସେ ନିଶ୍ଚୟ ଭବକର୍ଣ୍ଣ ରଚୟିତା ବଳଭଦ୍ରଙ୍କୁ କେନ୍ଦୁଝରାଧୀଶ୍ୱର (ଅଷ୍ଟାଦଶ ଶତାବ୍ଦୀର) ବଳଭଦ୍ର ଭଞ୍ଜଙ୍କ ସଙ୍ଗେ ଅଭିନ୍ନ ବୋଲି କହିବାକୁ କୁଣ୍ଠିତ ହେବେ ନାହିଁ । ନିମ୍ନରେ ଉକ୍ତ ମତର ପରିପୋଷଣ ପାଇଁ କେନ୍ଦୁଝରର କେତେ ଜଣ ରାଜକବିଙ୍କର ନାମ ଓ ତତ୍ପ୍ରଣୀତ ଆଜ ସୁଦ୍ଧା ପ୍ରାପ୍ତ ପୁସ୍ତକର ନାମ ଦିଆଗଲା । ଏଥିରୁ ପାଠକମାନେ କେନ୍ଦୁଝର ରାଜବଂଶ ସାହିତ୍ୟସେବା ବିଷୟରେ କିପରି ଅଗ୍ରଗାମୀ ଥିଲେ, ତାହା ବୁଝିପାରିବେ ।

| ନାମ | ରାଜତ୍ୱ ସମୟ | ପୁସ୍ତକର ନାମ |
|---|---|---|
| ଶ୍ରୀ ଜୟଗୋବିନ୍ଦ ଭଞ୍ଜ | ପଞ୍ଚଦଶ ଶତାବ୍ଦୀର | ୧ । ଭକ୍ତବଚନ ଦ......( ଭାଷା ) |
| | ତୃତୀୟପାଦଠାରୁ | ୨ । ରାମଗାଥ (ଦଶ ଦତାର)...(") |
| | ଷୋଡ଼ଶ ଶତାବ୍ଦୀର | ୩ । ବଉଳା ଚରିତ.........(") |
| | ପ୍ରଥମ ପାଦ | ୪ । ଚରଣସୁଧାନିଧି ........(") |
| *ଶ୍ରୀ ପ୍ରତାପ ବଳଭଦ୍ର ନାରାୟଣ ଭଞ୍ଜ | ଅଷ୍ଟାଦଶ ଶତାବ୍ଦୀ | ୧ । ଅମ୍ବିକା-ବିଳାସ (ଭାଷା) |
| | | ୨ । ବିଷ୍ଣୁ ସହସ୍ରନାମ ପ୍ରବନ୍ଧ(ସଂସ୍କୃତ |
| | | ୩ । ଦଶାବତାର ପ୍ରବନ୍ଧ (") |
| | | ୪ । ମାଳଶ୍ରୀତ (ଦେବୀସ୍ତୁତି)(ଭାଷା) |
| | | ୫ । ଅନ୍ୟାନ୍ୟ ଚଉପଦୀ |

* ପାର୍ଶ୍ୱଲିଖିତ ପୁସ୍ତକମାନଙ୍କ ବ୍ୟତୀତ ଆଉ ଖଣ୍ଡିଏ ସଂସ୍କୃତ ନାଟକ ଥିବାର ମୁଁ ଶୁଣିପାରିଛି, ମାତ୍ର ତାହା ଏ ପର୍ଯ୍ୟନ୍ତ ହସ୍ତଗତ ହୋଇ ନ ଥିବାରୁ ସେ ବିଷୟରେ କିଛି ଲେଖିପାରୁ ନାହିଁ ।

ଶ୍ରୀ ଜନାର୍ଦ୍ଦନ ଭଞ୍ଜ   ଊନବିଂଶ ଶତାବ୍ଦୀ   ୧ । ସ୍ତୁତ୍ୟର୍ଣ୍ଣବ   (ସଂସ୍କୃତ)
୨ । ଲୀଳାଲହରୀ   (ଭାଷା)
୩ । ଅନ୍ୟାନ୍ୟ ରଚନା......

ଆହୁରି ମଧ୍ୟ କେନ୍ଦୁଝର ରାଜବଂଶର କୃଷ୍ଣଦେବତାଙ୍କର ନାମ ବଳଭଦ୍ର ଥିବାରୁ ଏହି ରାଜବଂଶରେ 'ବଳଭଦ୍ର' ନାମ ପ୍ରଦତ୍ତ ହେବା ସ୍ୱାଭାବିକ । ଏହି ସବୁ କାରଣରୁ ଭାବକଣ୍ଠ-ରଚୟିତା ବଳଭଦ୍ର ଭଞ୍ଜ ଓ ଅମ୍ବିକା-ବିଳାସ ଲେଖକ ବଳଭଦ୍ର ଭଞ୍ଜ ଏକ ବ୍ୟକ୍ତି ବୋଲି ନିର୍ଦ୍ଦେଶ କରିଗଲେ ଏହା ବାସ୍ତବତାର ସୀମାସ୍ୱରୂପକୁ ଉଲ୍ଲଙ୍ଘନ କଲା ବୋଲି କୁହାଯାଇ ନ ପାରେ ।

ରାଜ୍ୟବିସ୍ତୃତି ଓ ଯୁଦ୍ଧ

ଶ୍ରୀଯୁକ୍ତ କ୍ଷେତ୍ରମୋହନ ମିଶ୍ର ତାଙ୍କ 'କେନ୍ଦୁଝର' ପୁସ୍ତକରେ ପ୍ରତାପ ବଳଭଦ୍ର ଭଞ୍ଜ ୧୭୬୪ ଖ୍ରୀ.ରେ ସିଂହାସନରେ ଅଭିଷିକ୍ତ ହୋଇଥିଲେ ବୋଲି ଲେଖିଅଛନ୍ତି । ସେ ରାଜା ହେବା ପୂର୍ବରୁ (ଯୁବରାଜ ଥିଲାବେଳେ) ୧୭୫୧ ଖ୍ରୀ.ରେ ବିଖ୍ୟାତ ରଘୁଜୀ ଭୋସଲାଙ୍କ-ଠାରୁ ଯୁଯୁମଣ୍ଡ ଓ ରାଜ୍ଞୀପୁର ପ୍ରଭୃତି ବହୁଖଣ୍ଡ ମୌଜା ତାଙ୍କ ନାମରେ କଣାଯାଇଥିଲା । ଉର୍ଦ୍ଦୁରେ ଲିଖିତ ସେହି ସନଦ ବର୍ତ୍ତମାନ ସୁଦ୍ଧା ରାଜଦରବାରରେ ଥିବାର ଶୁଣାଯାଏ । ୧୭୮୪ ଖ୍ରୀ.ରେ ଭଦ୍ରଖ ହବେଳିଭଜନ ଅନ୍ତର୍ଗତ ତେଙ୍ଗା ନାମକ ଜମିଦାରୀର ମାଲିକ ତାହାଙ୍କ ଦେୟ କର ତତ୍କାଳୀନ ମରହଟ୍ଟାଧିପତିଙ୍କୁ ଦେଇ ନ ପାରିବାରୁ ତାହା କେନ୍ଦୁଝର ସାମିଲ ହୋଇଥିଲା ।

କେନ୍ଦୁଝର ସୀମାରେ ଢେଙ୍କାନାଳର ଅନାର୍ଯ୍ୟ ଶ୍ରେଣୀୟ ଲୋକମାନଙ୍କର ଉତ୍ପୀଡ଼ନ ନିବାରଣ କରିବାପାଇଁ ରାଜା ବଳଭଦ୍ର ଢେଙ୍କାନାଳ ଆକ୍ରମଣ କରିଥିଲେ । ସେହି ଆକ୍ରମଣ ଫଳରେ କାଳିଆହତା ନାମକ ଢେଙ୍କାନାଳ ଓ କେନ୍ଦୁଝର ମଧ୍ୟବର୍ତ୍ତୀ ଗୋଟିଏ ଦଣ୍ଡପାଟ ନିଜର ଅଧୀନ କରିଥିଲେ । ସେଠାକାର ଜମିଦାର ଆଜି ସୁଦ୍ଧା କେନ୍ଦୁଝରର ଅଧୀନ ଅଛନ୍ତି । ଢେଙ୍କାନାଳର କବି ବ୍ରଜନାଥ ବଡ଼ଜେନାଙ୍କର ସମରତରଙ୍ଗ ପାଠ କଲେ ଜଣାଯାଏ ଯେ, ମରହଟ୍ଟାଙ୍କ ସହିତ ଢେଙ୍କାନାଳର ଯୁଦ୍ଧ ହେବାବେଳେ କେତେକ ଗଡ଼ଜାତ ରାଜା ମଧ୍ୟ ମରହଟ୍ଟାଙ୍କ ସଙ୍ଗେ ଯୋଗ ଦେଇଥିଲେ । ପରେ ସେମାନେ ଢେଙ୍କାନାଳର ବୀରତ୍ୱରେ ବିସ୍ମିତ ହୋଇ ତତ୍ରତ୍ୟ ରାଜାଙ୍କ ସଙ୍ଗେ ସନ୍ଧି କଲେ । କେବଳ କେନ୍ଦୁଝର ରାଜା ସେମାନଙ୍କ ସଙ୍ଗେ ଯୋଗ ଦେଲେ ନାହିଁ । ସେ ସମ୍ବାଦ ଦେଲେ—"ଦୁଇଘୋଡ଼ା ଯେବେ ଦେବା ହେବ ତେବେ ତାଙ୍କ ଆମ୍ଭ ସଲ୍ ଯାଇ ।" ତାହା ଶୁଣି ଢେଙ୍କାନାଳ ରାଜା ଅବଜ୍ଞାସୂଚକ ଉତ୍ତର ଦେବାରୁ କେନ୍ଦୁଝର ରାଜା ଯୁଦ୍ଧ ଘୋଷଣା କଲେ । ଉଭୟ ପକ୍ଷ ତମ୍ଭେଇ (?) ଠାରେ

ମିଳିତ ହୋଇ ଘୋର ଯୁଦ୍ଧ କଲେ । ଯୁଦ୍ଧରେ କେନ୍ଦୁଝର ସୈନ୍ୟ ପଛଘୁଞ୍ଚା ଦେଲେ । ତା’ପରେ ନିଜେ ରାଜା (ପ୍ରତାପ ବଳଭଦ୍ର) ‘ପଲାଶୁଣି’ ନାମକ ଗଡ଼ ନିକଟରେ ଯୁଦ୍ଧ କରି ତାଙ୍କୁ ଘୋଡ଼ି ଦେଇଥିଲେ ସୁଦ୍ଧା ପରିଣାମରେ ପରାସ୍ତ ହେଲେ । ଏଥିରେ ମଧ୍ୟ ସେ ଯୁଦ୍ଧରୁ ନିବୃତ୍ତ ହେଲେ ନାହିଁ । ପୁଣି କେତେ ଦିନ ପରେ ତଂମଇଠାରେ ଯୁଦ୍ଧ ହେଲା । ସେଥିରେ ମଧ୍ୟ କେନ୍ଦୁଝର ପରାସ୍ତ ହେଲା ।

ଜାଣିପୁ କବି ବ୍ରଜନାଥଙ୍କ ଏହି ଉକ୍ତି ଯେ ଅତିରଞ୍ଜିତ ନୁହେଁ, ଏହା କହି ହେବ ନାହିଁ । ବିଶେଷତଃ ସେ ଶେଷ ଛାନ୍ଦରେ ଗ୍ରନ୍ଥରଚନାର ଯେଉଁ ଉଦ୍ଦେଶ୍ୟ ବର୍ଣ୍ଣନ କରିଅଛନ୍ତି, ତାହାହିଁ ସ୍ୱକୃତ ସତ୍ୟାପଳାପର ପ୍ରକୃଷ୍ଟ ପ୍ରମାଣ । ସେ ଲେଖିଅଛନ୍ତି—

“ଏହି କାଳେ ହୃଜୁରେ ଭେଟିଲା ମୂର୍ତ୍ତି
ଏ ସମରତରଙ୍ଗ ଗୀତକୁ ଦେଇ ।
ଅଜ୍ଞାପ୍ରମାଣେ ପୁଣ ଉତ୍କଳ ଗୀତ
ଜଣାଇଲା ପୁଣି ମୋ ଦୁଃଖ ସମସ୍ତ ।
ମହିମା ମନେ ଏହି ହେଉଛି ମୋର
ଶ୍ରୀକରକୁ କହିଲି ସେ ବେଦବର ।
ଲକ୍ଷ ଲକ୍ଷ ଲୋକଙ୍କୁ କାଟିବ (?) ପଡ଼ି
ବ୍ରଜନାଥ ବଡ଼ଯେନାକୁ ଗୁଡ଼ି ।
ଏମନ୍ତ ଯେବେ କହି ନ ଥାନ୍ତା ପୁଣ
କରୁଣାସିନ୍ଧୁ ହୁଅନ୍ତ କି ଦାରୁଣ ।
ତୁଚ୍ଛ ହୋଇ ଯେମନ୍ତ ହେବେ ନିସ୍ତୁରି
ତହିଁକାକୁ ଯୋଗ୍ୟତା ଅଛୁ କାହାରି ।

× ×

ଏଥର ସବୁ ଶବ’ ତତ୍ତ୍ୱ ବସ୍ତୁର
ଦସ୍ୟୁ କଟକେ କଦା ହେବେ ନିସ୍ତୁର ।

× ×

ମନରେ କରିଅଛି ଯେତେ କାମନା
କେ ହେଉଥାଇବ କି ପ୍ରଭୁଙ୍କ ବିନା ।
ଏ ସମରତରଙ୍ଗ ଟୀକା ପ୍ରସାଦେ
ସମ୍ପାତ ହୋଇବ ମୁଁ ଅତି ପ୍ରମାଦେ ।
ହେ ମହାରାଜା ଦବଂଶରେ ହୋଇ
ମୋଠାରେ ଦୟାକର କୀରତି ଥାଉ ।

ବୁଲି ବୁଲି ଅନେକ ହେଲି ସ୍ଖଳିତ,
ଅନୁସରଣେ ରହିବାକୁ ମୋ ଚିତ୍ତ ।''

ଏଥିରୁ ସ୍ପଷ୍ଟ ଜଣାପଡ଼ୁଛି, କୌଣସି କାରଣବଶତଃ କବି ରାଜରୋଷରେ ପତିତ ହୋଇଥିଲେ । ତେଣୁ ସେ ନିର୍ବାସିତ ହୋଇ ନାନାସ୍ଥାନରେ ବୁଲି ବୁଲି ଶେଷରେ କ୍ରୁଦ୍ଧ ରାଜାଙ୍କୁ ପ୍ରସନ୍ନ କରାଇବା ପାଇଁ ସମବୃତ୍ତରଙ୍ଗ ରଚନା କରିଥିଲେ । ତାହାର ଫଳରେ "ଅନୁସରଣେ ରହିବାକୁ'' ଚିତ୍ତ ବଳାଇଥିଲେ । ଅତି ଆନନ୍ଦରେ "ସମ୍ପାଦ ହେବା" ( ଅନାୟାସରେ ଜୀବନ ନିର୍ବାହ କରିବା ) ଅଂଶ ମଧ୍ୟ ପରିତ୍ୟାଗ କରି ନ ଥିଲେ; ତେଣୁ ଏହା ଅତିରଞ୍ଜିତ ସ୍ତୁତିବାକ୍ୟମୟ ହେବା ସ୍ୱାଭାବିକ । ଏଣୁ ଏହାକୁ ପ୍ରକୃତ ଐତିହାସିକ ତଥ୍ୟ ବୋଲି ଧରାଯିବା ଉଚିତ ନୁହେଁ । କାଳିଅଦଳା ଜମିଦାରୀ ଢେଙ୍କାନାଳ ରାଜପୁତ୍ରବଧ ବୋଲି କେନ୍ଦୁଝରର ମାଦଳାପାଞ୍ଜିରୁ ଓ ପରମ୍ପରାକ୍ରମେ ଲୋକ ମୁଖରୁ ଶୁଣାଯାଏ । ଢେଙ୍କାନାଳ କୋଇଲି ନାମକ ଗୀତରେ ବଳଭଦ୍ର ଭଞ୍ଜଙ୍କର ଢେଙ୍କାନାଳ ରାଜପୁତ୍ର କାହାଣୀ ବର୍ଣ୍ଣିତ ହୋଇଅଛି । ଏଥିମଧ୍ୟରୁ କାହାକୁ ସତ୍ୟ ବୋଲି ଗ୍ରହଣ କରାଯିବ ?

୧୭୮୦ ଖ୍ରୀ:ରେ ବାମଣ୍ଡା ରାଜବଂଶ ସହିତ, ଭ୍ରାତୃବିବାହ ସମ୍ପର୍କରେ ରାଜା ବଳଭଦ୍ରଙ୍କର ମନୋମାଳିନ୍ୟ ଘଟିଥିବାରୁ ସେ ବାମଣ୍ଡା ଅଭିମୁଖରେ ଯୁଦ୍ଧଯାତ୍ରା କରିଥିଲେ । ଯୁଦ୍ଧରେ କେନ୍ଦୁଝର ସୈନ୍ୟ ଜୟୀ ହେଲେ । ଉକ୍ତ ଘଟଣାର ସାକ୍ଷୀରୂପେ ଅଦ୍ୟାବଧି କେନ୍ଦୁଝରରେ କି ଶିକ୍ଷିତ କି ଅଶିକ୍ଷିତ ଉଭୟବିଧ ସମାଜରେ "ବାମଣ୍ଡା କୋଇଲି" ବୋଲି ଗୋଟିଏ ଗୀତ ପ୍ରଚଳିତ ଅଛି । ପରିଶିଷ୍ଟାଂଶରେ ତାହା ଉଦ୍ଧୃତ କରାଗଲା । ଏହା ଦୁଇ ଭାଗରେ ବିଭକ୍ତ । ପ୍ରଥମ ଭାଗରେ କେନ୍ଦୁଝରଠାରୁ ବାମଣ୍ଡା ପର୍ଯ୍ୟନ୍ତ ଯାତ୍ରା ଓ ଯୁଦ୍ଧଜୟ ବର୍ଣ୍ଣିତ, ଦ୍ୱିତୀୟ ଭାଗରେ ବାମଣ୍ଡା ରାଜାଙ୍କ ଶୋକ । ଏଠାରେ ପ୍ରଥମ ଭାଗଟି ଉଦ୍ଧୃତ କରାଗଲା ।

ଲହଡ଼ାର ସତ୍ତ୍ୱାଧିକାର ଯୋଗୁ ବିଦ୍ରୋହ ଜାତ ହେବାରୁ ତାହାର ପ୍ରଶମନ ପାଇଁ ସସୈନ୍ୟରେ ଗମନ କରି, ବିଦ୍ରୋହର ନେତା, ନିଃସନ୍ତାନ ଭାବେ ମୃତରାଜା ମୁକୁନ୍ଦପାଳଙ୍କର ଦାସୀପୁତ୍ର ଖ୍ୟାମପାଳଙ୍କୁ ବନ୍ଦୀ କରି ଆଣି କେନ୍ଦୁଝରରେ କାରାରୁଦ୍ଧ କରିଥିଲେ ।

ଏହାପରେ ରାଜତ୍ୱ କାଳ ମଧ୍ୟରେ ତାହାଙ୍କୁ ଅନେକ ଯୁଦ୍ଧର ସମ୍ମୁଖୀନ ହେବାକୁ ପଡ଼ିଥିଲା । ସେଥିପାଇଁ ସେ ଅମ୍ବିକା-ବିଳାସର ୪୧ ଛାନ୍ଦରେ ଆତ୍ମପରିଚୟ ଦାନ କାଳରେ ଲେଖିଛନ୍ତି—"ଅଙ୍ଗ ପରିସରି ଅରି ମୋଠାରେ ଆବୋରି ରହିଲେ ଦଇବ ଯୋଗକଲେ ।'' କିନ୍ତୁ ପ୍ରତି ଯୁଦ୍ଧରେ ବଳଭଦ୍ର ଜୟୀ

ହୋଇଥିଲେ । ତାହାର ପ୍ରଧାନ କାରଣ ପ୍ରଜାବାତ୍ସଲ୍ୟ ଓ ରାଜମାତଜ୍ଞାପୂର୍ଣତା ।
ନିମ୍ନୋଦ୍ଧୃତ ପଙ୍‌କ୍ତି କେତୋଟି ପାଠ କଲେ ଏହା ପରିସ୍ଫୁଟ ହେବ ।

"ଅବନୀ ତଳିବା ଜନ ନୁହେଁ କେବଳ
ଅଟନ୍ତି ସାଧାରଣରେ ପ୍ରଜା ସକଳ ।
ଅଶ୍ରୁ ହୁଙ୍କାର ଯେମନ୍ତେ ପଡନ୍ତେ ଭୂମିରେ
**ସନ୍ତାପକ ବଳଭଦ୍ର** ଅନିଷ୍ଟ ନୃପର ନାହିଁ ଏଥି କପଟେ ।
ଅଛି ସର୍ବଗୁଣ ନାହିଁ ପ୍ରକାଶ ଲନ
ଅଟେ ସେ ପୀୟୂଷ-ବିଷ ହେତୁ ରାଜନ ।
ଅଟନ୍ତି ପ୍ରଜା କୁସୁମ-ଲତିକାବତ
ଅବନୀଶ ମାଳୀସମ ପାଳ ନିୟତ,
ଅନୁରୂପ କର କର କୁସୁମ ତୋଳ
ଅଧିକ ନ ନେବ ଧନ ଫଳିବ ଜଳ ।

× ×

ଅର୍ଥ ଅଛୁ ଏ ସୁଯୋଗ ସାଧୁସୁତରେ ହେଉ ଜନୁଥିବେ କି ସମ୍ପଦ ସୁଧା ?
ଅନୁକ୍ଷଣେ ପ୍ରଜାତାପ ଲଭିଥିବେ ତୋର ନ ପାଳ ଅଭୁଶ ତେଜ ବାଧା ।
ଅବନୀରବି ସଫଳ ହୋଇଥିବ ଠୁଳ ଅପାଳକ ରାହୁ ନ ପୀଡ଼ିବ ।

× × × × × ×

ଅକଞ୍ଚନ ସୁର-ଦ୍ୱିଜ-ବୈଷ୍ଣବ ସମାଜ ଗୁଣି ଚକୋରେ ଆସିବେ ଲୋଭ
ଅବଧ୍ନରେ ଏତେ ହେଲେ ଭଞ୍ଜରାଜ ବୋଲେ ଶଶାଙ୍କ ସାମ୍ୟ ଲଭିବ ଶୁଭ ।"

ଏହା ପାଠ କଲେ ବଳଭଦ୍ର ଯେ ଆଦର୍ଶ ଶାସକ, ପ୍ରଜାବତ୍ସଳ, ଦୀନ-ଦୁଃଖହର, ଅଭକ୍ତିଗତ ଓ ଗୁଣିପ୍ରିୟ ଥିଲେ, ଏହା ଉତ୍ତମରୂପେ ଜଣାପଡ଼େ ।

ପ୍ରତାପ ବଳଭଦ୍ର ଦାନବୀର ଥିଲେ । ସେ ଆନନ୍ଦପୁରରେ ନିଜ ନାମରେ ଗୋଟିଏ ଶାସନ ବସାଇଛନ୍ତି । ସେଥିରେ ଅଠର ଗୋଟି ଭାଗ ଅଛି । ପ୍ରତି-ଭାଗର ଜମିର ପରିମାଣ ୨୦ ଏକର । ଏହା ବହୁ ନ, କୁଳୀନ ବ୍ରାହ୍ମଣମାନଙ୍କୁ ପ୍ରଦତ୍ତ ହୋଇଅଛି । ଏତଦ୍‌ବ୍ୟତୀତ ତାଙ୍କର ଅନ୍ୟ କୌଣସି ପୂର୍ତ୍ତ-କୀର୍ତ୍ତି ଦେଖାଯାଏ ନାହିଁ । **ଅମ୍ବିକା-ବିଳାସ**ହିଁ ତାଙ୍କର ମୁଖ୍ୟମଣି କୀର୍ତ୍ତି ।

ବଳଭଦ୍ର ନାନାଶାସ୍ତ୍ରରେ ସୁପଣ୍ଡିତ ଥିଲେ । ତୃତୀୟ ଛାନ୍ଦରେ ବର୍ଣ୍ଣିତ ଦକ୍ଷଙ୍କର ଅଗ୍ନିଷ୍ଟୋମ ଯଜ୍ଞ ଓ ଦ୍ୱାଦଶ ଛାନ୍ଦର ଶିବବିବାହ ବର୍ଣ୍ଣନା ପାଠ କଲେ କବିଙ୍କର ଶ୍ରୁତି, ସ୍ମୃତି, ମୀମାଂସା ଓ କର୍ମକାଣ୍ଡରେ ଗଭୀର ଜ୍ଞାନ ଥିବାର ପରିଚୟ ମିଳେ । ଅଷ୍ଟମ ଛାନ୍ଦର ୧୭ଶ ଓ ୧୮ଶ ପଦମାନ ଓ ଅଷ୍ଟାଦଶ ଛାନ୍ଦର ୧୭ଶ ଓ

୧୮ଶ ଚନ୍ଦ୍ରମାନ ତାଙ୍କର ଜ୍ୟୋତିଃଶାସ୍ତ୍ରରେ ପ୍ରୌଢ଼ ଜ୍ଞାନର ପରିଚୟ ପ୍ରଦାନ କରୁଅଛି । ହରିବଂଶ ଗ୍ରନ୍ଥରେ ହିମାଳୟଙ୍କର

ଶାସ୍ତ୍ରଜ୍ଞାନ

ଯୌତୁକ ଦାନ ସମ୍ପର୍କରେ କବି ଅଶ୍ୱଜାତିର ଯେଉଁ ନାମ ଓ ଲକ୍ଷଣ ନିର୍ଦ୍ଦେଶ କରିଅଛନ୍ତି, ତାହା ତାଙ୍କର ଶାଳିହୋତ୍ର ଶାସ୍ତ୍ରରେ ପାଣ୍ଡିତ୍ୟକୁ ବ୍ୟକ୍ତ କରୁଅଛି । ପୁଣି ସେହି ଗ୍ରନ୍ଥରେ ବର୍ଣ୍ଣିତ ଅନୁଚରୀ-ମାନଙ୍କର ଲକ୍ଷଣ ତାଙ୍କର ସାମୁଦ୍ରିକ ଶାସ୍ତ୍ର-ଜ୍ଞାନର ନିଦର୍ଶନ । ଏତଦ୍‌ବ୍ୟତୀତ ନାନାସ୍ଥାନରେ ନାନାପ୍ରକାର ଦେଶାଚାର ଓ କୁଳାଚାରର ଯଥାଯଥ ବର୍ଣ୍ଣନା ମଧ୍ୟ ଦେଖାଯାଏ । ସାଂଖ୍ୟ, ବେଦାନ୍ତ ପ୍ରଭୃତି ଦର୍ଶନ ଶାସ୍ତ୍ରରେ ତଥା ମନୁ ଯାଜ୍ଞବଲ୍କ୍ୟାଦି ପ୍ରଣୀତ ନୀତିଶାସ୍ତ୍ରରେ କବି କି ପ୍ରକାର ଅଲୌକିକ ବ୍ୟୁତ୍ପତ୍ତି ଲାଭ କରିଥିଲେ, ତାହା ଏ ପୁସ୍ତକର ଅଣଚାଳିଶ ଓ ଚାଳିଶ ଗ୍ରନ୍ଥ ପାଠକଲେ ପାଠକ ଉତ୍ତମରୂପେ ହୃଦୟଙ୍ଗମ କରିପାରିବେ ।

ବଳଭଦ୍ରଙ୍କ ରଚିତ ବିଷ୍ଣୁସହସ୍ରନାମ ପ୍ରବନ୍ଧ ଓ ଦଶାବତାର ପ୍ରବନ୍ଧ ନାମରେ ଦୁଇଗୋଟି ସଂସ୍କୃତ ରଚନା ଅଛି । ଏହା ନାନା ରାଗରେ ରଚିତ । ଦଶଗୋଟି ଗାଥାରେ ବିଷ୍ଣୁଙ୍କର ସହସ୍ର ନାମ କବି ଅତି ନିପୁଣତାସହ ତାଳ, ମାନ ଓ ଲୟର ଅନୁଯାୟୀ କରି

କବିଙ୍କର ଅନ୍ୟାନ୍ୟ ରଚନା

ସଂଯୋଜିତ କରିଅଛନ୍ତି । ଦଶାବତାର ପ୍ରବନ୍ଧ ମଧ୍ୟ ଦଶଗୋଟି ଗାଥାରେ ନିବଦ୍ଧ ହୋଇଅଛି । ଏହା ଅତି ଶ୍ରୁତିମଧୁର ଓ କବିଶକ୍ତିର ପରିଚୟସୂଚକ । ଏହି ପ୍ରବନ୍ଧ ଦ୍ୱୟ ପ୍ରତି ଏକାଦଶୀରେ ରାଜବଂଶର ଇଷ୍ଟଦେବତା ରଘୁନାଥଙ୍କ ନିକଟରେ ଜଣେ ସୁଗାୟକ ବ୍ରାହ୍ମଣଙ୍କ ଦ୍ୱାରା ଗୀତ ହେବାର ରୀତି ଏ ପର୍ଯ୍ୟନ୍ତ ପ୍ରଚଳିତ ଅଛି । ନିମ୍ନରେ ସହସ୍ର ନାମର ଉପସଂହାର ଗାଥାଟି ଓ ଦଶାବତାରର ଉପକ୍ରମ ଗାଥାଟି ଦିଆଗଲା ।

## —ଦଶାବତାରର ଉପକ୍ରମ ଗାଥା—

ରାଗ—ବସନ୍ତ

**ଆଦିତାଳ**

ଜୟ ରାଧା ମୋହନ ମୁରଲୀଧର ଲୋକ-ମନୋହର ସୁନ୍ଦର ହେ
ରାହୁ-ଗୃହୀତ-ତରୁଣ-କର-କାରଣ-ତାରଣ କରଧୃତ-ମନ୍ଦର ହେ । ଧ୍ରୁ ।
ଦେବୈର୍ଦୈତ୍ୟୈର୍ନାଗୈର୍ମୈତ୍ରୈଃ ପାଦାମ୍ଭୋଜେ ସ୍ତୂୟତେ
ପୁଣିହିତ-ମତଭିଃ ପଶୁପ-ଯୁବତିଭିଃ ହୃଦୟ-ସରସି ଧ୍ରିୟସି ତ ଧୃତେ । ୧ ।

ଝଷ-କମଠାକୃତି-କରି-ନର ମୃଗମସ୍ତ ବାମନ- ଭୃଗୁପତି ରାଘବ ରେ ପୁସ୍ତେ —
ଧୃତହଳ-ଦଶବଳ-ଜଳ୍ପ-ରୁଦ୍ଧୋଷ୍ଠ ! ଧରଣୀ ଘାଉ-ବୃନ୍ଦେ ।
ବସନ୍ତାଦ-ସେବିତ ବୃନ୍ଦାବନ-କାନନ କେଳିସମସ୍ତ କମଳାନନ—
ବନିତସିତ ମୁରଳୀ ସଗୁଣ ଗୀତରସ୍ତ- ବାଦନ-ଟାନ-ମତ୍ତେ । ୨ ।

ରେଖାରୂଢ଼ ପଦର ପ୍ରୟୋଗଦ୍ୱାରା କବି ଗୀତର ରାଗ ଓ ତାଳକୁ କୌଶଳକ୍ରମେ ବ୍ୟକ୍ତ କରିଅଛନ୍ତି । ଏହି କ୍ରମ ଦଶାବତାରର ସମସ୍ତ ଗୀତରେ ଅନୁସୃତ ହୋଇଅଛି ।

## —ବିଷ୍ଣୁ ସହସ୍ରନାମର ଉପସଂହାର

ରାଗ— ଚମ୍ପାବତୀ

ତାଳ—ତ୍ରିପୁଟା

ଭଜ ବିଷ୍ଣୋର୍ନାମ ସହସ୍ରଂ

କଳିକଲୁଷାପହ ମତିତରି-ଶୁଭଦଂ ନିତ୍ୟ ମୁଚିତମଜସ୍ରଂ । ଧ୍ରୁ ।
ଅଣିମାଦି ଭୂତି-ମୂଳ ମୁପାସକ-ସର୍ବାପଦଭିଦ ତନ୍ତ୍ରଂ
ଶ୍ରୁତିମଧୁରଂ ମଧୁସୂଦନ-ପଦଯୁଗ ଭକ୍ତ୍ୟାନୁକୂଳମଟତ୍ରଂ । ୧ ।
ସହସ୍ର ରେନ୍ଦ୍ରାଖ୍ୟମମଳଂ ସନ୍ଧିତମ୍ବୁଜ ହାରଂ
ହରି-ଚରଣ-ସ୍ମରଣ-ମଙ୍ଗଳ ଭବନଂ ନିଗମାଗମୈକ ସାରଂ । ୨ ।
ଶ୍ରୀମତ୍ କେଶବ-ଗୁଣ-ଗଣ ଗଣନା ଧୀର-ଜନୈଃ ଶତପଦ୍ୟଂ
ସୁଧୀହୃଦ (?) ମାନସ-ସଂହାର-ସାରଥି ମଦ୍ଭୁତଯୁଗ ଭୈଷଜ୍ୟଂ । ୩ ।
ତାପସ ତପୋହରଂ ଚିତ୍ତନନ୍ଦଂ ଶାନ୍ତସାମ୍ବ ମନ୍ତ୍ରଂ ପୂତଂ
ସକଳ-କାମ୍ୟ ଫଳ-କଳ୍ପତରୁଂ ବଳଭଦ୍ର ନୃପତି କୃତ ଗୀତଂ । ୪ ।

---

ଭୂମହାକମା ବୈତରଣୀଙ୍କଠାରେ କବିଙ୍କର ପ୍ରଗାଢ଼ ଭକ୍ତି ଥିଲା । ତେଣୁ ସେ ଅଧିକାଂଶ ସମୟ ତଟୀରବର୍ତ୍ତୀ ଆନନ୍ଦପୁରରେ ଅତିବାହିତ କରୁଥିଲେ । ସେ ବୈତରଣୀ ବର୍ଣ୍ଣନାରେ ଲେଖିଅଛନ୍ତି—

"ଅବସାଦଭଞ୍ଜନ ପ୍ରାଣୀ-ମାନଙ୍କ ନିଟାଣି ସ୍ୱର୍ଗ-ଅପବର୍ଗମାନଙ୍କୁ ଯେ
ଅମ୍ବୁ-ସ୍ନାନପାନ କରି ସୁଖେ କେନ୍ଦୁଝର ନୃପ ବଳଭଦ୍ର ଭଞ୍ଜ ମଜ୍ଜେ ।"

୧୭୯୨ ଖ୍ରୀଷ୍ଟାବ୍ଦରେ ସ୍ୱର୍ଗାପବର୍ଗଦାୟିନୀ ବୈତରଣୀର ତୀରରେ ବଳଭଦ୍ର ଅନ୍ତିମ ନିଃଶ୍ୱାସ ନିକ୍ଷେପପୂର୍ବକ ଅମରଧାମକୁ ଗମନ କଲେ । ବୈତରଣୀର ଦକ୍ଷିଣ ତୀରରେ ତାହାଙ୍କର ସମାଧିସ୍ତମ୍ଭ ନିର୍ମିତ ହୋଇଥିଲା । ତାହା ଗତ ୧୯୨୭ ଖ୍ରୀଷ୍ଟାବ୍ଦର ବୈତରଣୀର ପ୍ରବଳ ବନ୍ୟାରେ ଉତ୍ପାଟିତ ହୋଇଯାଇଅଛି । ଯେତେ ଦିନ ପର୍ଯ୍ୟନ୍ତ ଅମ୍ବିକା-ବିଳାସ ଥିବ, ସେତେ ଦିନ

ପର୍ଯ୍ୟନ୍ତ ବଳଭଦ୍ର ଅମର ହୋଇଥିବେ । ଅସ୍ତୁ କାର୍ତ୍ତି ନିକଟରେ କାଳର ବକ୍ର ଦଶନ ମଧ୍ୟ ପରାସ୍ତ ହୁଏ ।

ସ୍ୱରାନ୍ତ ନାମ୍ପଦରେ ଲେଖିବା ବ୍ୟଞ୍ଜନାନ୍ତ ବର୍ଣ୍ଣରେ ଲେଖିବା ଅପେକ୍ଷା କଷ୍ଟକର । ବ୍ୟଞ୍ଜନ ବର୍ଣ୍ଣରେ ସମସ୍ତ ପ୍ରକାର ସ୍ୱରବର୍ଣ୍ଣର ଯୋଗ କରାଯାଇ-ପାରେ । ତେବେ ବ୍ୟଞ୍ଜନ ଅନ୍ୟ ବ୍ୟଞ୍ଜନ ବର୍ଣ୍ଣ ଯୋଗରେ ସଂଯୁକ୍ତ ବର୍ଣ୍ଣ ରୂପ ମଧ୍ୟ ବ୍ୟବହାର କରାଯାଇପାରେ; କିନ୍ତୁ ସ୍ୱରବର୍ଣ୍ଣରେ ଆଉ କାହାରି ଯୋଗ ସମ୍ଭବପର ନୁହେଁ । କବି 'ଅ'କାର ସ୍ୱରକୁ ଆଦ୍ୟରେ ରଖି ଯେଉଁ ରଚନାପାଟବ ଦେଖାଇଅଛନ୍ତି, ତାହା ଅତି ଚମତ୍କାରପ୍ରଦ । ତଳେ କେତୋଟି ପଦ ଉଦ୍ଧାର କଲି । ପାଠକଗଣ କବିଙ୍କର ରଚନାପାଟବ ନିଶ୍ଚୟ ଅବଗତ ହେବେ ।

ଅଳକ ଗୁଚ୍ଛା ଏ କଳଙ୍କ ଧାଇଁଛି ସୁମନ ପରେ ମାଦ ମାରି
ଅନୁକ୍ଷଣେ ମଧୁ ପିଇବାରୁ କନ୍ଧ ଜ୍ଞାନ ନାହିଁ ଦେହେ ଏହାର
ଅଳଗା, ହୋଇ ଆସ ରସ-ସାଗର
ଅବଜ୍ଞ ବୋଲି ଆସି ତୋର ମୁଖଶଶୀ ଢାଙ୍କୁଛି ବସି ଏଥାର ।

---

ଅତିଶସ୍ତ ତନୁ ହେବେହେଁ ସୁତନୁ ତନୁ ଦଶେ କେତେ ଚୋରି ଯେ
ଅଧିକୁଁ ଅଧିକ ଶୋଭା ଦିଶେ ଯଥା ଶାଣ-କ୍ଷୀଣ ହେଲେ ହୀରା ଯେ
ଅବନୀ, ଉପରେ କି ଅଛା ଆସି ଯେ
ଅମ୍ବୁଦ କୋଳରେ ଖେଳୁଁ ଖେଳୁଁ ବିଦ୍ୟୁଲ୍ଲଳୀ ଏ ପଡ଼ିଛି ଖସି ଯେ ।

---

ଅମୃତୁଁ ମଧୁର ମଧୁ ପିଇଁ ପିଇଁ ଅଳିକି ଅସର ହୋଇଲା
ଅକ୍ଷରେ ନାନା ସୁମନାରେ ସେ ରସି କଞ୍ଜକୋଳେ ନିଶି ଶୋଇଲା
ଅସିତ, କାନ୍ତି କି ତକ୍ଷଣ ପାଇଲା
ଅନାଇଁ ଅନାଇଁ ତା ଶିଥିଳ ପେଟ ଅଳକ-ଆଖକୁ ପାଇଲା ।

---

ଅମୃତକର କିରଣ ତଳ୍ପରେ ରୁକ୍ମିଣୀ ନିଶି ବିକାଶିଲା
ଅବନୀ-ଅଙ୍ଗନା ଅଙ୍ଗରେ ରଙ୍ଗରେ କର୍ପୂର ରଜ କି ଘଷିଲା
ଅରୁଣ, ଉଦୟ ଶୋଭା ତ ନାଶିଲା
ଅବଜ ପ୍ରଫୁଲ୍ଲ ମୁଖ ଶୁଖିଯିବା ଦେଖି କି ରଜନୀ ହସିଲା ?

---

ଅତି ସଘନ ଅଙ୍ଗନା ଅଙ୍ଗ ଅଗେ ଲଜ୍ଜାଲତା ମାଡ଼ିଥିଲା ଯେ
ଅତନୁ-ଅନୁରାଗ-ନାଗ ତାହାକୁ ଆସି ପଶି ଦଳିଦେଲା ଯେ
ଅନାଇଁ, ବିବେକ ମାଳୀ ତା ପୁଣି ଯେ
ଅତ୍ୟନ୍ତ ଯତନେ ମନ୍ତ୍ରାନ୍ତେ ତା ଘରୁ ନମ୍ରମୁଖୀ ବାଳାମଣି ଯେ ।

---

ଖଣ୍ଡପଦକୁ ଉଦାହରଣରୂପେ ଉପସ୍ଥାପିତ କରିବାକୁ ଇଚ୍ଛା ହେଉଅଛି; ତାହା ସମ୍ଭବପର ନୁହେଁ । ପାଠକମାନଙ୍କୁ ଅନୁରୋଧ, ସେମାନେ ଥରେ ମାତ୍ର ଧୈର୍ଯ୍ୟସହ ପାଠ କରନ୍ତୁ । ତେବେ ନିଶ୍ଚୟ ଉପେନ୍ଦ୍ରଙ୍କର ଶବ୍ଦାର୍ଥବୈଚିତ୍ର୍ୟ, ଘନକୃଷ୍ଣଙ୍କର ପଦଲାଳିତ୍ୟ, ଅଭିମନ୍ୟୁଙ୍କର ଭାବଗାମ୍ଭୀର୍ଯ୍ୟ, ସମସ୍ତ ଏକାଧାରରେ ଦେଖିପାରିବେ ।

## ସମ୍ପାଦକର ନିବେଦନ

ଏହି ପୁସ୍ତକ ସମ୍ପାଦନ ପାଇଁ ବନବିଭାଗ ଏକାଉଣ୍ଟାଣ୍ଟ ଶ୍ରୀ ବଂଶୀଧର ପଟ୍ଟନାୟକ ଓ ମାନନୀୟ ରାଜାସାହେବଙ୍କର ପ୍ରାଇଭେଟ୍ କ୍ଲର୍କ ଶ୍ରୀ ବାବୁ ରାଧାଶ୍ୟାମ ପଟ୍ଟନାୟକ, ଏହି ପ୍ରିୟ ବନ୍ଧୁଦ୍ୱୟ ଅମ୍ବିକା-ବିଳାସର ଦୁଇଟି ଆଦର୍ଶ ପ୍ରଦାନ କରିଥିବାରୁ ମୁଁ ତାଙ୍କ ନିକଟରେ ଗଭୀର କୃତଜ୍ଞତା ଜଣାଉଅଛି । ଏହି ଆଦର୍ଶ ଦୁଇଟି ମଧ୍ୟରୁ ଶ୍ରୀ ରାଧାଶ୍ୟାମ ବାବୁଙ୍କ ପୁସ୍ତକ ଖଣ୍ଡି ୧୨୬୫ ସାଲରେ ଲିଖିତ, ବଂଶୀ ବାବୁଙ୍କ ପୁସ୍ତକଖଣ୍ଡି ୧୨୭୨ ସାଲ୍ ଭୁଲ ୫୨°ନ କାର୍ତ୍ତିକ କୃଷ୍ଣ ତ୍ରୟୋଦଶୀ ଶନିବାର ଦିନ ଲିଖିତ । ଉଭୟ ପୁସ୍ତକକୁ ମିଳାଇଁ ମୁଁ ଯଥାସମ୍ଭବ ଶୁଦ୍ଧ ପାଠୋଦ୍ଧାର କରିବାକୁ ଯତ୍ନ କରିଛି । ଯେଉଁ ଯେଉଁ ସ୍ଥଳରେ ସାମାନ୍ୟ ଭେଦ ଦେଖିପାରିଛି, ତାହା ମୁଁ ପାଠାନ୍ତରରୂପେ ଲେଖିଦେଇଛି । ରାଧାବାବୁଙ୍କ ପୁସ୍ତକର ସାଙ୍କେତିକ ଚିହ୍ନରୂପେ 'କ' ଓ ବଂଶୀବାବୁଙ୍କ ପୁସ୍ତକର ସାଙ୍କେତିକ ଚିହ୍ନରୂପେ 'ଖ' ଏଥିରେ ବ୍ୟବହୃତ ହୋଇଅଛି ।

ଏହି ଷ୍ଟେଟ୍‌ର ଅଶେଷ-ଗୁଣନିଧାନ ବିଦ୍ୟୋତ୍ସାହୀ ଗୁଣଗ୍ରାହୀ ଷ୍ଟେଟଗସ୍ତ ଶ୍ରୀଯୁକ୍ତ ଲକ୍ଷ୍ମୀନାରାୟଣ ଭଞ୍ଜଦେଓ ମହୋଦୟ ମୋତେ ଏହି ପୁସ୍ତକର ସମ୍ପାଦନରେ ଅତି ଉତ୍ସାହିତ କରିଥିବାରୁ ମୁଁ ତାଙ୍କ ନିକଟରେ ଚିରକୃତଜ୍ଞ ।

ସର୍ବୋପରି ସାହିତ୍ୟପ୍ରାଣ ଧର୍ମପରାୟଣ ଦାନବୀର ପ୍ରଥିତଯଶାଃ ମହାମାନ୍ୟ ଚରିତ ଶ୍ରୀ କେନ୍ଦୁଝରାଧୀଶ୍ୱର ମହୋଦୟ ମୋତେ ଏହି କାର୍ଯ୍ୟ-ସମ୍ପାଦନ ପାଇଁ ଆଦେଶ ପ୍ରଦାନ କରି କୃତାର୍ଥମ୍ମନ୍ୟ କରିଥିବାରୁ ମୁଁ ତଦୁଦ୍ଦେଶ୍ୟରେ ଭକ୍ତିପ୍ଲୁତ କୃତଜ୍ଞତା ଜ୍ଞାପନ କରୁଅଛି ।

ପରିଶେଷରେ ମୋର ଅନ୍ତରଙ୍ଗ ବନ୍ଧୁ ବାବୁ ପ୍ରାଣବଲ୍ଲଭ ପଟ୍ଟନାୟକ ଓ କେନ୍ଦୁଝରଗଡ଼ବାସୀ ବାବୁ ବନମାଳୀ ମିଶ୍ର ବି. ଏ. ମୋତେ ଏହି ପୁସ୍ତକ ସମ୍ପାଦନରେ ସବିଶେଷ ସାହାଯ୍ୟ କରିଥିବାରୁ ତାହାଙ୍କୁ ଶତ ଶତ ଧନ୍ୟବାଦ ଅର୍ପଣ କରୁଅଛି ।

କେନ୍ଦୁଝରଗଡ଼<br>ଇନ୍ଦୁପୂର୍ଣ୍ଣିମା<br>୧୩୪୩ ସାଲ

ପଣ୍ଡିତ ଶ୍ରୀ ବାନାମ୍ବର ଆଚାର୍ଯ୍ୟ ସାହିତ୍ୟାଚାର୍ଯ୍ୟ<br>ପ୍ରଧାନାଧ୍ୟାପକ<br>ଶ୍ରୀ ବଳଭଦ୍ର ନାରାୟଣ ସଂସ୍କୃତ ବିଦ୍ୟାଳୟ

# ଅଭିମତ

— ୧ —

କେନ୍ଦୁଝର ରାଜ୍ୟର ସ୍ୱର୍ଗୀୟ ରାଜା ବଳଭଦ୍ର ଭଞ୍ଜଙ୍କ ବିରଚିତ ଅମ୍ବିକାବିଳାସ କାବ୍ୟର ପାଣ୍ଡୁଲିପି, ଆଚାର୍ଯ୍ୟ ପଣ୍ଡିତ ଶ୍ରୀ ବାନାମ୍ବର ସାହିତ୍ୟାଚାର୍ଯ୍ୟଙ୍କ ସର୍ବଦୁର୍ଲଭ ଟୀକା ଓ ମୁଖବନ୍ଧ ଦେଖିବାର ସୁଯୋଗ ଆମ୍ଭେମାନେ ପାଇଅଛୁ । ବର୍ତ୍ତମାନ କେନ୍ଦୁଝରାଧିପତି ରାଜା ଶ୍ରୀ ବଳଭଦ୍ର ନାରାୟଣ ଭଞ୍ଜଦେବ ଇହାଙ୍କର ସପ୍ତମ ବଂଶଧର । ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ତୃତୀୟ ପାଦରେ ଏ ଗ୍ରନ୍ଥ ରଚିତ ହୋଇଥିଲା । ସମଗ୍ର କାବ୍ୟଟି ୪୧ ଛାନ୍ଦରେ ସମ୍ପୂର୍ଣ୍ଣ । ୩୯ ଛାନ୍ଦରେ କାବ୍ୟର କଥାବସ୍ତୁ ଅଛି । ଚତ୍ୱାରିଂଶ ଛାନ୍ଦରେ ସ୍ୱପ୍ନାଦେଶ ଓ ରାଜମାତା ବର୍ଣ୍ଣନ ଏବଂ ଏକଚତ୍ୱାରିଂଶ ଛାନ୍ଦରେ କବିପରିଚୟ ଦିଆଯାଇଅଛି । ଉପେନ୍ଦ୍ର ଭଞ୍ଜଙ୍କର ବୈଦେହୀଶ ବିଳାସର ପ୍ରତ୍ୟେକ ଚରଣର ଯେଉଁପରି "ବ" ଅକ୍ଷରରେ ଆରମ୍ଭ, ଏ କାବ୍ୟର ପ୍ରତ୍ୟେକ ଚରଣର ସେହିପରି "ଅ" ଅକ୍ଷରରେ ଆରମ୍ଭ ହୋଇଅଛି । ଭଞ୍ଜଯୁଗର କାବ୍ୟମାନଙ୍କରେ ଯେଉଁ ଅଳଙ୍କାରସମୃଦ୍ଧି ଓ ରଚନାବୈଚିତ୍ର୍ୟ ଲକ୍ଷିତ ହୁଏ, ଏ କାବ୍ୟରେ ସେ ସବୁର ପ୍ରାଚୁର୍ଯ୍ୟ ବିଦ୍ୟମାନ । ପରନ୍ତୁ ସେ ଯୁଗର ଅଧିକାଂଶ କବିଙ୍କର କାବ୍ୟ ଯେଉଁ ଅଶ୍ଳୀଳତା ଦୋଷରେ ଦୁଷ୍ଟ, ଏ କାବ୍ୟ ତହିଁରୁ ସମ୍ପୂର୍ଣ୍ଣ ମୁକ୍ତ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏ କାବ୍ୟର ଆଉ ଗୋଟିଏ ବିଶେଷତ୍ୱ ଏହି ଯେ, କବି ଏଥିରେ ଛାନ୍ଦ ସହିତରେ ସୁଗେୟ ସଙ୍ଗୀତର ସମାବେଶ କରିଅଛନ୍ତି ଓ ଠାବେ ଠାବେ ସଂସ୍କୃତ, ବଙ୍ଗଳା ଓ ହିନ୍ଦୀ ଭାଷାରେ ଗୀତ ରଚନା କରି ସେ ସବୁକୁ ଏ କାବ୍ୟର ଅଙ୍ଗୀଭୂତ କରିଅଛନ୍ତି । ଏ କାବ୍ୟ ଏଭଳି ବିଚକ୍ଷଣତାର ସହିତ ରଚିତ ହୋଇଅଛି ଯେ, କାବ୍ୟପାଠକାଳରେ ପାଠକ ତନ୍ମୟ ହୋଇ ପ୍ରତିଚରଣର ଆଦ୍ୟରେ କେବଳ "ଅ" ଅକ୍ଷର ବସାଯାଇଥିବା କଥା ବିସ୍ମୃତ ହୋଇଯାଏ । କବିଙ୍କ ଶକ୍ତି ଅସାଧାରଣ । ଉତ୍କଳର ପ୍ରାଚୀନ କବିମାନଙ୍କ ମଧ୍ୟରେ ଏହାଙ୍କୁ ନିର୍ବିବାଦରେ କବିଗୁରୁ ଶ୍ରେଣୀରେ ଗଣନା କରାଯାଇପାରେ । ଉତ୍କଳର ପ୍ରାଚୀନ କବିବୃନ୍ଦ କାବ୍ୟଜଗତରେ ଯେଉଁ ଅନନ୍ୟସାଧାରଣ ସାଧନା କରିଥିଲେ, ସେହି ସାଧନାବୃକ୍ଷର ଏ କାବ୍ୟ ଗୋଟିଏ ଅମୃତମୟ ରସାଳ ଫଳ ଅଟେ ।

କେନ୍ଦୁଝରାଧୀଶ୍ୱର ଓ ତଦୀୟ ଅନୁଜ ଜ୍ୟେଷ୍ଠରାୟ ସାହେବ ଓ କେନ୍ଦୁଝରର କେତେକ ବିଶିଷ୍ଟ ସାହିତ୍ୟ ରସିକଙ୍କ ଦ୍ୱାରା ଉତ୍ସାହିତ ହୋଇ ସାହିତ୍ୟାଚାର୍ଯ୍ୟ ମହାଶୟ ଏହି ମହାମୂଲ୍ୟ ରତ୍ନଟି ସଂଗ୍ରହ କରି ଉତ୍କଳ-ଭାରତୀଙ୍କର

କଣ୍ଠହାରର ମଧ୍ୟମଣିରୂପେ ଏହାକୁ ଖଞ୍ଜି ଦେଇ ଓ ସୁଦୁର୍ଲଭ ଟୀକାଦ୍ୱାରା ଏ କାବ୍ୟର ବିବିଧ ଗୁଣାବଳୀକୁ ବହୁ ଆୟାସ ସହକାରେ ଚହଲାଇ ଦେଇ ଉତ୍କଳ ସାହିତ୍ୟ ଓ କାବ୍ୟାଲଙ୍କାରରେ ତାଙ୍କର ପାଣ୍ଡିତ୍ୟ ପ୍ରକାଶ କରିଅଛନ୍ତି । ତାଙ୍କର ଅକୃତ୍ରିମ ସାହିତ୍ୟ-ପ୍ରୀତି ପାଇଁ ସେ ସମଗ୍ର ଜାତିର ଧନ୍ୟବାଦାର୍ହ । ଏ ଗ୍ରନ୍ଥର ଟୀକା ଓ ମୁଖବନ୍ଧ ସହିତ ଏଥିର ପ୍ରକାଶର ପଥକୁ ସୁଗମ କରିବାର କେନ୍ଦୁଝର ରାଜ୍ୟର ଗୁଣିଗଣାଗ୍ରଣୀ ରାଜାସାହେବ ଓ ସାହିତ୍ୟ-ପ୍ରେମିକ ଶ୍ରେଷ୍ଠରସ୍ଥ ସାହେବ ଦେଶବାସୀଙ୍କ ଆଗରେ ସ୍ୱୀୟ ପିତୃପୁରୁଷଙ୍କ ଉପଯୁକ୍ତ ପୁତ୍ରର ସମୁଜ୍ଜ୍ୱଳ ଆଦର୍ଶ ସଂସ୍ଥାପନ କରିବେ । ଲକ୍ଷ୍ମୀ ସରସ୍ୱତୀ ଚିରସାପତ୍ନ୍ୟ ପରିହାରପୂର୍ବକ କେନ୍ଦୁଝର ରାଜବଂଶରେ ବିରାଜିତ ଅଛନ୍ତି—ଏହା ଏ କାବ୍ୟ ପ୍ରକାଶଦ୍ୱାରା ସ୍ପଷ୍ଟ ପ୍ରମାଣିତ ହେବ । ଏ କାବ୍ୟ କେନ୍ଦୁଝର ରାଜବଂଶର ଗର୍ବ ଓ ଗୌରବର ବସ୍ତୁ ଓ ଏଥିର ପ୍ରକାଶରେ ଉତ୍କଳ-ସାହିତ୍ୟ ରାଜ୍ୟରେ କେନ୍ଦୁଝର ରାଜବଂଶର ଟେକ ବଢ଼ିବ, ଏ କଥା ମୁକ୍ତକଣ୍ଠରେ ବୋଲଯାଇପାରେ । ଉତ୍କଳର ପୁରପଲ୍ଲିରେ ଏହିପରି କେତେ କାବ୍ୟ କନକ ମାଳଞ୍ଚ ପରି ବନରେ ଫୁଟି ଝଡ଼ିଅଛି । ଓଡ଼ିଆ ସାହିତ୍ୟ ପ୍ରତି ଉତ୍ସାହ ପ୍ରଦର୍ଶନ କରି କେନ୍ଦୁଝରର ରାଜାସାହେବ ଏଥିପୂର୍ବରୁ ଉତ୍କଳରେ ସୁପରିଚିତ । ଏ ଗ୍ରନ୍ଥ ପ୍ରକାଶରେ ତାଙ୍କର ଉତ୍ସାହ କଥା ଜାଣି ଆମ୍ଭେମାନେ ଆଶାନ୍ୱିତ ହୋଇଅଛୁଁ ଓ ତାଙ୍କର ଆନୁକୂଲ୍ୟ ଓ ପୃଷ୍ଠପୋଷକତାରେ କେନ୍ଦୁଝର ରାଜବଂଶର ଅନେକଗୁଡ଼ିଏ ସାରସ୍ୱତ କୀର୍ତ୍ତି ତଥା ଉତ୍କଳର ଅନେକ ପ୍ରାଚୀନ ସାହିତ୍ୟବିଭବ ପ୍ରକାଶିତ ହେବ ବୋଲି ଆମ୍ଭେମାନେ ସନ୍ତୁଷ୍ଟ ନୟନରେ ପ୍ରତୀକ୍ଷା କରୁଅଛୁଁ । ଇତି ।

ଭାଷାକୋଷ ଆଶ୍ରମ
କଟକ
୭-୧୧-୧୯୩୭

ଶ୍ରୀ କୁଳମଣି ଦାଶ
ଶ୍ରୀ ଶଶିଭୂଷଣ ରାୟ
ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ
ଶ୍ରୀ ବିଚ୍ଛନ୍ଦଚରଣ ପଟ୍ଟନାୟକ
ଶ୍ରୀ କୃଷ୍ଣଚନ୍ଦ୍ର ସେନଗୁପ୍ତ
ଶ୍ରୀ କୃଷ୍ଣଚନ୍ଦ୍ର କର
ଶ୍ରୀ ପରୀକ୍ଷିତ ଖଣ୍ଡୁଆଳ

—୨—

କେନ୍ଦୁଝରାଧୀଶ୍ୱର ଶ୍ରୀ ପ୍ରତାପ ବଳଭଦ୍ର ଭଞ୍ଜଙ୍କ କୃତ "ଅମ୍ବିକା-ବିଳାସ" କାବ୍ୟର ପାଠୋଦ୍ଧାର କରି ତାହାକୁ ପ୍ରକାଶଯୋଗ୍ୟ କରିବାଦ୍ୱାରା ପଣ୍ଡିତ ଶ୍ରୀ ବାନାମ୍ବର ଆଚାର୍ଯ୍ୟ ଉତ୍କଳର ସାହିତ୍ୟ-ରସିକମାନଙ୍କର ଅଶେଷ ଶ୍ରଦ୍ଧାଭାଜନ ହୋଇଅଛନ୍ତି । ଅମ୍ବିକା-ବିଳାସର ସେ ଯେଉଁ ମୁଖବନ୍ଧ ଓ ସଙ୍କ୍ଷିପ୍ତ ଟୀକା ପ୍ରସ୍ତୁତ କରିଅଛନ୍ତି, ତାହା ତାଙ୍କର ପାଣ୍ଡିତ୍ୟ ଓ କାବ୍ୟରସାସ୍ୱାଦର ଯଥେଷ୍ଟ ପରିଚୟ ଦେବା ସଙ୍ଗେ ସଙ୍ଗେ କାବ୍ୟଟିକୁ ଅତି ସାଧାରଣବୋଧ କରିପାରିଅଛି ।

ଅମ୍ବିକା-ବିଳାସ" କାବ୍ୟଟି ୪୧ଟି ଛାନ୍ଦରେ ସମ୍ପୂର୍ଣ୍ଣ । ତାହାର ପ୍ରତ୍ୟେକ ଛାନ୍ଦର ପ୍ରତ୍ୟେକ ପାଦ ଅ-ଆଦ୍ୟ ହେଲେ ସୁଦ୍ଧା ବର୍ଣ୍ଣାନୁରୋଧ ଭୟରେ କବି କୌଣସି ସ୍ଥଳରେ କ୍ଲିଷ୍ଟ କଳ୍ପନା ବା ନିରର୍ଥକ ପଦ ପ୍ରୟୋଗର ଆଶ୍ରୟ ନେଇ ନାହାନ୍ତି । ଏହା ତାହାଙ୍କର ଅସାଧାରଣ କବିପ୍ରତିଭାର ପରିଚୟ ଦିଏ । କଳ୍ପନା-ବିଳାସରେ ଏ କାବ୍ୟଖଣ୍ଡି ଅତି ଅସାଧାରଣ ନ ହେଲେହେଁ ଏଥିରେ ସୁଲଳିତ ଖାଣ୍ଟି ଓଡ଼ିଆ ଦେଶଜ ଶବ୍ଦ ସହିତ ସାଧାରଣ ପ୍ରଚଳିତ ତଦ୍ଭବ ଶବ୍ଦର ମନୋହର ସମନ୍ୱୟ ଯୋଗୁଁ ଏହା ଯେ ଉତ୍କଳର ପ୍ରାଚୀନ କାବ୍ୟଜଗତରେ ଏକ ଉଚ୍ଚ ଆସନ ଗ୍ରହଣ କରିବ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ରାଜକବି ଏଥିରେ ଯେଉଁ ଅସାଧାରଣ କବିପ୍ରତିଭା ଓ ଭାଷାପାଣ୍ଡିତ୍ୟ ଦେଖାଇଅଛନ୍ତି, ତାହା କେବଳ କେନ୍ଦୁଝରରେ ନୁହେଁ—ସମଗ୍ର ଉତ୍କଳରେ ଏକ ଗୌରବାବହ ବିଷୟ ହେବ । କବି ବଳଭଦ୍ରଙ୍କର ଅଦ୍ୟାବଧି ଅପ୍ରକାଶିତ ଅଥଚ ଅବଶ୍ୟ-ପ୍ରକାଶ୍ୟ କାବ୍ୟଖଣ୍ଡି ତାଙ୍କ ପରବର୍ତ୍ତୀ ସପ୍ତମ ପୁରୁଷ ମନୀଷୀ ବଳଭଦ୍ରଙ୍କଦ୍ୱାରା ପ୍ରକାଶିତ ହେବା ଅତି ସ୍ୱାଭାବିକ ହେଲେ ମଧ୍ୟ ଏହି କାର୍ଯ୍ୟଦ୍ୱାରାହିଁ ତାଙ୍କ ସ୍ୱର୍ଗତ ଆତ୍ମାର ପ୍ରକୃତ ତର୍ପଣ କ୍ରିୟା ସମାହିତ ହେଲା ବୋଲି ବୁଝିବାକୁ ହେବ । ଇତି ।

ସହକାର ଅଫିସ
କଟକ
ତା ୩ । ୧୧ । ୧୯୩୬

ଶ୍ରୀ ବାଳକୃଷ୍ଣ କର
ସମ୍ପାଦକ, ସହକାର

ଶ୍ରୀ ଗଣେଶାୟ ନମଃ

# ଅମ୍ବିକା—ବିଳାସ

## ପ୍ରଥମ ଛାନ୍ଦ

ରାଗ—ମଙ୍ଗଳଗୁଜ୍ଜରୀ

ଯତି ୮+୬ ଅଥବା ୮+୩+୧+୨

**ଅଚଳଜା ପୁର-ସ୍ମରହର ଆଶାବାସ,**
**ଅବ୍‌ଜ-କଳା-ଭୁଲାଛବି ଶିବାର୍ଦ୍ଧ-ବପୁଷ ଯେ । ୧ ।**

---

## ସର୍ବଦୁର୍ଲ୍ଲଭା ଟୀକା

**ଶ୍ରୀ ମହେଶ୍ବରାୟ ନମଃ**

ସିଦ୍ଧବୁଦ୍ଧିପ୍ରଦଂ ଗଣାଧୀଶଂ ସିନ୍ଦୂରାରୁଣବିଗ୍ରହଂ
ମୋହାନ୍ଧପୂଜିତେଶାରବିନ୍ଦଂ ବନ୍ଦାମହେ ବିଭୁଂ ।

ଅବିଘ୍ନରେ ଗ୍ରନ୍ଥସମାପ୍ତି କାମନା କରି ଶ୍ଳେଷରେ ହରଗୌରୀଙ୍କର ସ୍ତୁତିଦ୍ୱାରା କବି ମଙ୍ଗଳାଚରଣ କରୁଅଛନ୍ତି ।

୧ । ଶିବପକ୍ଷେ—ଅଚଳ—କୈଳାସ ପର୍ବତ । 'ଯା' ଯାହାର । ପୁର—ଗୃହ । ସ୍ମରହର--କନ୍ଦର୍ପବିନାଶକ । ଆଶାବାସ--ଦିଗମ୍ବର, ଆଶା (ଦିଗ) ମାନେ ବାସ (ଲୁଗା) ଯାହାଙ୍କର । ଗୌରୀପକ୍ଷେ--ଅଚଳଜା-ହିମାଳୟ ପର୍ବତରୁ ଜାତା ଅର୍ଥାତ୍ ତାହାର କନ୍ୟା । ପୁର (ତ୍ରିପୁର), ସ୍ମର (କନ୍ଦର୍ପ) ଉଭୟଙ୍କର ହରଣକାରୀ (ବିନାଶକ) ଅର୍ଥାତ୍ ଶିବ । ତାହାଙ୍କର ଅଶା—ବାସ ଅର୍ଥାତ୍ ଶିବଙ୍କର ପ୍ରଣୟଜାତ ଆକାଙ୍‌କ୍ଷାର ବାସସ୍ଥଳ । ଶିବପକ୍ଷେ ଅବ୍‌ଜକଳାଭୁଲାଛବି —ଚନ୍ଦ୍ରକଳା ଭୁଲେ ଯାହାଙ୍କର ଅଙ୍ଗକାନ୍ତି । ଶିବାର୍ଦ୍ଧବପୁଷ—'ଶିବା' ଅର୍ଥାତ୍ 'ଗୌରୀ' ଅର୍ଦ୍ଧଶରୀର (ବାମାଙ୍ଗ) ଯାହାଙ୍କର । ଗୌରୀପକ୍ଷେ, ଚନ୍ଦ୍ରକଳାଭୁଲେ କାନ୍ତିଧାରୀ ଶିବ ଯାହାଙ୍କର ଅର୍ଦ୍ଧାଙ୍ଗ । ଯମକ ସ୍ଥଳେ 'ଜ' ଓ 'ଯ'ର ଭେଦ ଧରାଯାଏ ନାହିଁ ।

ଅକ୍ଷିହସ୍ତ-ମଞ୍ଜୁ-ମୂର୍ତ୍ତି ପଞ୍ଚାସ୍ୟ ସଦ୍‌ଗତ,
ଅଚ୍ଛତର-ଚନ୍ଦ୍ର-ହାସେ ଶୋଭିକର ଅତ ଯେ । ୨ ।
ଅନନ୍ତ-ମଣ୍ଡନ କଳଧୌତ-କୃତ-ଦେହୀ;
ଅଶେଷ-ସୁମନ-ଶକ୍ତିଧାରୀ ରସଗ୍ରାହୀ ଯେ । ୩ ।
ଅବରବର-କର-ଆଦ୍ୟ-ଦେବ-ସ୍ତୁତ ପାଦ,
ଅମରଗଣ ଶରଣ ତାତ ଯାର ଗୋତ୍ର ଯେ । ୪ ।

---

୨ । ଶିବପକ୍ଷେ — ଅକ୍ଷିହସ୍ତମଞ୍ଜୁମୂର୍ତ୍ତି — ତିନି ନେତ୍ରଦ୍ୱାରା ଯାହାଙ୍କର ମୂର୍ତ୍ତି ମଞ୍ଜୁ (ମନୋହର) ଅଟେ । ପଞ୍ଚାସ୍ୟ — ଶିବ (ଶିବଙ୍କର ପଞ୍ଚମୁଖ ପୁରାଣପ୍ରସିଦ୍ଧ) । ସଦ୍‌ଗତ — ସାଧୁମାନଙ୍କର ଶରଣ । ଗୌରୀପକ୍ଷେ — ଗୌରୀ ମଧ୍ୟ ତ୍ରିନେତ୍ରା । ପଞ୍ଚାସ୍ୟ (ସିଂହ) ଦ୍ୱାରା ସଦ୍‌ଗତ (ଶୁଭଗତ) ଯାହାଙ୍କର, ଅର୍ଥାତ୍ ସିଂହବାହିନୀ । ଶିବପକ୍ଷେ — ଅଚ୍ଛତର — ଅତି ନିର୍ମଳ । ଚନ୍ଦ୍ରହାସ — ଚନ୍ଦ୍ରପରି ନିର୍ମଳ ହାସ । ତଦ୍ଦ୍ୱାରା ଅତି ଶୋଭିକର ଅର୍ଥାତ୍ ମନୋହର । ଶିବଙ୍କର ଅଟ୍ଟହାସ ଧବଳ ବସ୍ତୁର ଉପମାରୂପେ ବ୍ୟବହୃତ ହେବା କବିପ୍ରସିଦ୍ଧ । ଗୌରୀପକ୍ଷେ-ଅଚ୍ଛତର — ଅତି ଉଜ୍ଜ୍ୱଳ । ଚନ୍ଦ୍ରହାସ — ଖଡ୍‌ଗ । ତଦ୍ଦ୍ୱାରା କର — ହସ୍ତ ଅତି ଶୋଭା ଅର୍ଥାତ୍ ଅତି ସୁନ୍ଦର ଯାହାଙ୍କର ।

୩ । ଶିବପକ୍ଷେ,-ଅନନ୍ତ-ବାସୁକି । ମଣ୍ଡନ-ଅଳଙ୍କାର । କଳଧୌତ-ରୌପ୍ୟ; ତାହାକୁ ଜିଣିଥିବା ଦେହ ବିଶିଷ୍ଟ । ଗୌରୀପକ୍ଷେ,-ଅନନ୍ତ ଅସଂଖ୍ୟ । ମଣ୍ଡନ — ଅଳଙ୍କାର ଯାହାଙ୍କର (ଶରୀରରେ) । କଳଧୌତ-ସୁନା, ତାହାକୁ ଜିଣିଥିବା ଦେହବିଶିଷ୍ଟା । 'କଳଧୌତଂ ସୁବର୍ଣ୍ଣେ ସ୍ୟାଦ୍ରଜତେଽପି ନପୁଂସକଂ' ଇତି ହଳାୟୁଧ । ଶିବପକ୍ଷେ, — ଅଶେଷ···ଶିବ । ଅସଂଖ୍ୟ ଦେବତାମାନଙ୍କର ଶକ୍ତିକୁ ଧାରଣ କରିଥିବା ଗୌରୀଙ୍କର ରସ (ଅନୁରାଗ) ଗ୍ରହଣକାରୀ । ଗୌରୀପକ୍ଷେ, — ଅଗଣିତ ଦେବଶକ୍ତିକୁ ଯେ ଧାରଣ କରିଅଛନ୍ତି ଓ ଶିବଙ୍କର ରସଗ୍ରାହୀ । (ସର୍ବଦେବତାଙ୍କର ତେଜରୁ ଦୁର୍ଗାରୂପେ ସମ୍ଭୂତା ହେବା ପୁରାଣପ୍ରସିଦ୍ଧ) ।

୪ । ଶିବପକ୍ଷେ, — ଅରବରକର — ଶ୍ରେଷ୍ଠଚକ୍ର ଯାହାଙ୍କ ହସ୍ତରେ ଅର୍ଥାତ୍ ବିଷ୍ଣୁ । ବିଷ୍ଣୁପ୍ରଭୃତି ଦେବତାମାନଙ୍କର ସ୍ତୁତପାଦ ଅର୍ଥାତ୍ ବନ୍ଦନୀୟ । ସେମାନେ ଯାହାଙ୍କୁ ସ୍ତୁତି କରନ୍ତି । ଗୌରୀପକ୍ଷେ — ଅରବରକର - -ଯେ ହସ୍ତରେ ଶ୍ରେଷ୍ଠଚକ୍ର ଧାରଣ କରିଅଛନ୍ତି । ଆଦ୍ୟଦେବ ପରଂବ୍ରହ୍ମ ବା ଶିବ, ତାଙ୍କର ସ୍ତୁତପାଦ (ବନ୍ଦନା ଯୋଗ୍ୟ) ଅଟନ୍ତି ଯେ । ପ୍ରଣୟ କଳହ କାଳରେ ମାନାପନୋଦନ ପାଇଁ ଶିବ ଯାହାଙ୍କୁ ସ୍ତୁତି କରନ୍ତି । ଶିବପକ୍ଷେ — ଅମର···ଗୋତ୍ର । ଅମରଗଣଶରଣ — ଦେବତାମାନଙ୍କ ରକ୍ଷାକାରୀ । ଯାର ଗୋତ୍ର (ନାମ) ତାତ — ପିତା ଅର୍ଥାତ୍ ଜଗତ୍‌ପିତା ବୋଲି ଯେ ଖ୍ୟାତ । ଗୌରୀପକ୍ଷେ — ଅମରଗଣ ଶରଣ ଗୋତ୍ର

ଅଜପଶୁରକ୍ତାସବାଶନ ପ୍ରିୟମତ,
ଅରୁଣ ଅବ୍ଜାକ୍ଷ ମାଳ ଗିରିବରେ ସ୍ଥିତ ଯେ । ୫ ।
ଅସମ ଶର ନୟନେ ହତ ଚଣ୍ଡବଳ,
ଅମୃତ-କରବଚନେ ହର ମହାକାଳ ଯେ । ୬ ।
ଅସୁର କ୍ଷଣଦାନରେ ଉଭୟ ଅତିଶୟେ,
ଅପୂର୍ବହାରାଜ ଶୋଭା ଦିଶନ୍ତି ହୃଦୟେ ଯେ । ୭ ।
ଅଚୀର-ବର-ତାଣ୍ଡବ-କାରି-ଶିବପର,
ଅଖିଳ-ଜନ-ନିଦାନ-କର କୃପା-ବାରି ଯେ । ୮ ।

---

(ପର୍ବତ) ହିମାଳୟ ଯାହାଙ୍କର ପିତା । ଅସୁର ଉପଦ୍ରବରେ ଦେବତାମାନେ ହିମାଳୟରେ ଆଶ୍ରୟ ଗ୍ରହଣ କରନ୍ତି ଅର୍ଥାତ୍ ସେଠାରେ ବାସ କରନ୍ତି ।

୫ । ଶିବପକ୍ଷେ,—ଅଜ··· । ଅଜ—ଜନ୍ମରହିତ । ପଶୁରକ୍ତ—ପଶୁଠାରେ ସ୍ନେହବାନ ଅର୍ଥାତ୍ ପଶୁପତି । ଆସବାଶନ—ମଦ୍ୟପାୟୀ—ଭୂତାଦିଙ୍କଠାରେ ପ୍ରିୟମତି ଯାହାଙ୍କର ମନ ପ୍ରୀତ । ଗୌରୀପକ୍ଷେ,—ଅଜ··· । ଛାଗରୂପକ ପଶୁର ରକ୍ତ ଓ ମଦ୍ୟ ପାନରେ ଯାହାଙ୍କର ମନ ପ୍ରୀତ । (କାଳିକାଦି ରୂପ ବିଶେଷରେ) ଶିବପକ୍ଷେ,--ଅରୁଣ··· । ଅରୁଣ--ସୂର୍ଯ୍ୟ । ଅବ୍ଜ—ଚନ୍ଦ୍ର । ଏ ଦୁହେଁ ଅକ୍ଷମାଳ (ଚକ୍ଷୁ) ଯାହାଙ୍କର । ଗିରିବର କୈଳାସରେ ଯାହାଙ୍କର ସ୍ଥିତି (ଅବସ୍ଥାନ) । ଗୌରୀପକ୍ଷେ,—ଅରୁଣ··· ମାଳ ରକ୍ତବର୍ଣ୍ଣ ପଦ୍ମ ବୀଜରେ ନିର୍ମିତ (ଅକ୍ଷମାଳା) ଜପ ମାଳରେ ଶୋଭିତା, କୈଳାସରେ ଯାହାଙ୍କର ଅବସ୍ଥିତି ।

୬ । ଶିବପକ୍ଷେ,—ଅସମ···ଚଣ୍ଡବଳ—ଅତି ବଳବାନ୍ । ଅସମଶର—ବିଷମେଷୁ (କାମ) ଯାହାଙ୍କ କର୍ତ୍ତୃକ ନୟନେ (ଆକ୍ଷିଦ୍ୱାରା) ନିହତ ହୋଇଥିଲା । ଗୌରୀପକ୍ଷେ,--ଅସମ ଅତୁଳ୍ୟ ଶର ସଦୃଶ ନୟନ—ଚକ୍ଷୁ ଦ୍ୱାରା ଯେ ଚଣ୍ଡନାମକ ଅସୁରର ବଳକୁ 'ହତ' (ନାଶ) କରିଥିଲେ । ଶିବପକ୍ଷେ—ଅମୃତକର··· । ଯେ ହର ଓ ମହାକାଳ ବୋଲନ୍ତି । ବଚନେ—କଥାମାନେ ଯେ ପ୍ରାଣୀଙ୍କୁ ଅମୃତକର (ମୃତ୍ୟୁରହିତ) କରନ୍ତି । ଗୌରୀପକ୍ଷେ,—ଚନ୍ଦ୍ରତୁଲ୍ୟ ଶୀତଳ ବାକ୍ୟରେ ମହାକାଳକୁ ହରଣ କର । (ହେ ଦେବି ! ) ।

୭ । ଶିବପକ୍ଷେ,—ଅସୁ (ପ୍ରାଣ)ର ରକ୍ଷଣ ଓ ଦାନ (ଛେଦନ ବା ନାଶ) ଉଭୟ କାର୍ଯ୍ୟରେ ଅତିଶୟ ଭବ (ତତ୍ପର) । ଗୌରୀପକ୍ଷେ,—ଅସୁରମାନଙ୍କର କ୍ଷଣ (ଉତ୍ସବ) ଦାନ (ବିନାଶ) ବିଷୟରେ ଅତିଶୟ ତତ୍ପରା । ଶିବପକ୍ଷେ,—ଅ' ପୂର୍ବ 'ହିରାଜ' ଅହିରାଜ (ବାସୁକି) ଯାହା ହୃଦୟରେ ଶୋଭା ଦିଶନ୍ତି । ଗୌରୀପକ୍ଷେ,- ଅପୂର୍ବ—ଅମୂଲ୍ୟ; ହୀରା—ମଣି ବିଶେଷ ଯାହା ହୃଦୟ (ବକ୍ଷ)ରେ ଶୋଭା ପାଉଛି ।

୮ । ଶିବପକ୍ଷେ,—ଅଚୀର· ବସ୍ତ୍ରହୀନ (ଦିଗମ୍ବର); ବରତାଣ୍ଡବକାରୀ--ଯେ ଉତ୍କୃଷ୍ଟ ତାଣ୍ଡବନୃତ୍ୟ କରନ୍ତି । ଶିବ—ମଙ୍ଗଳମୟ । ପର—ଉତ୍କୃଷ୍ଟତମ ଅଟନ୍ତି ।

ଅଷ୍ଟପଦ ଶ୍ଳେଷରେ ଏ ଶିବଶିବା ସ୍ତୁତି
ଅର୍ଥକର ସାଧୁଜନେ ତୋଷ କରି ମତି ଯେ । ୯ ।
ଅମ୍ବୁନିଧି ପରି ତୁମ୍ଭେ ପରତାପ ହର,
ଅମୃତ ଶ୍ରୀପଦ ଅନ୍ତର୍ଗତ ଶୁଚିଧର ଯେ । ୧୦ ।
ଅନନ୍ତ ରସ-ତରଙ୍ଗ-ରଙ୍ଗରେ କୁଶଳ,
ଅନୁଗତ ଜନ ଅଘନାଶନେ କୁଶଳ ଯେ । ୧୧ ।
ଅଙ୍ଗୀକାର କର କିନା ନ ଧରି ମୋ ଦୋଷ,
ଅର୍ଚ୍ଚନା କରଇ ତବ ଚରଣ-ସାରସ ଯେ । ୧୨ ।
ଅପ କଳିବା ବୁଦ୍ଧିରେ ଅବ୍ଧିରେ ପଶିଚି,
ଅମ୍ବିକା ବର ବିବାହ ବର୍ଣ୍ଣିବ ବସିଚ୍ଛି ଯେ । ୧୩ ।
ଅପାର ଅନ୍ତର ଏହୁ ପ୍ରକାର ମୋ ବୁଦ୍ଧି,
ଅନିଳ ବାନ୍ଧିବା ବିଧି କେହ୍ନେ ହେବ ସିଦ୍ଧି ଯେ । ୧୪ ।
ଅଶ୍ମ ମାନଙ୍କ ଏ ଅଶ୍ମ ଦେବ ହେବା ନ୍ୟାୟେ,
ଅସମ୍ଭବ କଥା ହୋଏ ମହତ ଆଶ୍ରୟେ ଯେ । ୧୫ ।

---

ଗୌରୀପକ୍ଷେ,-ଅଟୀର ବରଡାଣ୍ଡବକାରୀ (ଶିବ)ଙ୍କଠାରେ ଆସକ୍ତା । ଶିବପକ୍ଷେ- ଅଖିଳ···ଅଖିଳଜନନନ୍ଦାନ—ସମସ୍ତ ଲୋକଙ୍କର ମୂଳହେତୁ ହେ ଶିବ ! ବାର—ଥରେମାତ୍ର କୃପ କର । ଗୌରୀପକ୍ଷେ—ହେ ସର୍ବଜନନୀ ! କୃପାବାରି— ଦୟାରୂପ ଜଳ ଦାନକର ।

୧୦ । ଅମ୍ବୁନିଧି—ସମୁଦ୍ର । ପରତାପହର—(ସମୁଦ୍ର ପକ୍ଷେ) ଜଳଦ୍ୱାରା ସନ୍ତାପ ହରଣକାରୀ, (ସାଧୁପକ୍ଷେ) ଶତ୍ରୁର ତାପ ଯେ ହରଣ କରେ । ଅମୃତ (ସମୁଦ୍ରପକ୍ଷେ) ଅମୃତ ଓ ଶ୍ରୀ--ଲକ୍ଷ୍ମୀଙ୍କର ପଦ (ସ୍ଥାନ) ଯାହାର ଅନ୍ତର୍ଗତ । ଶୁଚିଧର—ପବିତ୍ର । ସାଧୁପକ୍ଷେ—ଅମୃତ (ମୃତ୍ୟୁଭୟନିବାରକ) ଶ୍ରୀପଦ (ସୁନ୍ଦର ଚରଣ ) ଯାହାଙ୍କର ଅନ୍ତରରେ, ଯେ ପବିତ୍ରତାକୁ ଧାରଣ କରନ୍ତି ।

୧୧ । ସମୁଦ୍ରପକ୍ଷେ—ଅନନ୍ତ···। ଅସଂଖ୍ୟ ରସ (ଜଳ) ତରଙ୍ଗ କ୍ରୀଡ଼ାରେ କୁଶଳ । ସାଧୁପକ୍ଷେ—ଅସଂଖ୍ୟରସ—ଶୃଙ୍ଗାରାଦି ରସର ରଙ୍ଗରେ ରସିକତାରେ କୁଶଳ । ଅନୁଗତ—ସେବକ । ଅଘ—ପାପ ।

୧୨ । ସାରସ—ପଦ୍ମ ।

୧୩ । ଅପ—ଜଳ । କଳିବା—କଣ୍ଟିବା (ମାପିବା) । ଅବ୍ଧି—ସମୁଦ୍ର ।

୧୪ । ଅନ୍ତର—ଭେଦ । ଅନିଳ ବାନ୍ଧିବା—ପବନକୁ ଧରିବା । ସିଦ୍ଧି— ସଫଳ । ବିଂ. ରୂପେ ବ୍ୟବହୃତ ହୁଏ ।

୧୫ । ଅଶ୍ମ—ପଥର । ମହାତ୍ମା ପ୍ରତିଷ୍ଠିତ ପଥର ଦେବତା ହେଲା ପରି ।

ଅସାଧୁ ଲୋକଙ୍କୁ ମୋର ଦୂରୁ ନମସ୍କାର,
ଅର୍କ ପରି ଅଟନ୍ତି ସେ ଅତି ଚଣ୍ଡକର ଯେ । ୧୬ ।
ଅଚ୍ଛି ସିଦ୍ଧ ହୋଇ ଶବ୍ଦ ସତ୍କାବ୍ୟ ତାଙ୍କର,
ଅଧିକ କି କହିବା ଅଇରି କୃଷ୍ଣ ଯାର ଯେ । ୧୭ ।
ଅଟନ୍ତି ସେ ପାପଗ୍ରହ ଯେସନ ପର ଭାଗ୍ୟ,
ଅପାଙ୍ଗ ପତନ ଯାର କରେ ମୃତ ପତ୍ର ଯେ । ୧୮ ।
ଅତ୍ୟର୍ଥରେ ତାଙ୍କୁ ଡର ମୋର ହୋଏ ଚିତ୍ତେ,
ଅସାର କରିବେ ନଷ୍ଟେ କବ ବୋଲି ମୋତେ ଯେ । ୧୯ ।
ଅଥ ଶୁଣ ସାଧୁ ଗୁଣଗ୍ରାହୀ ଦେଇ ମତି,
ଅବ୍ଜାସନ-ନନ୍ଦନ ଯେ ଦକ୍ଷ ପ୍ରଜାପତି ଯେ । ୨୦ ।
ଅବତରିଲେ ତାଙ୍କର ଶତେକ ଦୁଲଣୀ,
ଅଟେ ତହିଁ ସତୀ ନାମେ ଏକ ସୁଲକ୍ଷଣୀ ଯେ । ୨୧ ।
ଅନୁପମ ସୁନ୍ଦରୀ ସେ ଅତି ଗୁଣବତୀ,
ଅନୁମିତ ହୋଏ ରତିପତିର ସମ୍ପତ୍ତି ଯେ । ୨୨ ।
ଅଚ୍ଛନ୍ଦ, ସୁନ୍ଦର-ବଦନକୁ ସୋଦର,
ଅରୁଣ ଅଧର ଅଙ୍କୁରିତ ପୟୋଧର ଯେ । ୨୩ ।
ଅଞ୍ଜନ-ଗଞ୍ଜନ-କେଶୀ ଖଞ୍ଜନ-ଈକ୍ଷଣୀ,
ଅମୃତ-ମଧୁର-ମୃଦୁ ବାଣୀ ପୃଥ ଶ୍ରେଣୀ ଯେ । ୨୪ ।
ଅହକୁ ଅହ ସେ ସିତ-ପକ୍ଷ ଶଶୀ ପରି,
ଅଧିକୁ ଅଧିକ ଶୋଭା ଦଶିଲା ସୁନ୍ଦରୀ ଯେ । ୨୫ ।

---

୧୬ । ଚଣ୍ଡକର— ତୀକ୍ଷ୍ଣକିରଣ, ଉଗ୍ରକାର୍ଯ୍ୟ କରୁଥିବା ବ୍ୟକ୍ତି ।

୧୭ । ସତ୍କାବ୍ୟ—ଉତ୍ତମ କାବ୍ୟ ଓ ଶୁକ୍ରଚାର୍ଯ୍ୟ । କୃଷ୍ଣ—ବସୁଦେବ ପୁତ୍ର ଓ କଳାବର୍ଣ୍ଣ ।

୧୮ । ସୂର୍ଯ୍ୟପକ୍ଷେ—ପାପଗ୍ରହ—ସୂର୍ଯ୍ୟ । ଜ୍ୟୋତିଷ ମତରେ ସୂର୍ଯ୍ୟ ପାପଗ୍ରହ । ତେଣୁ ପୀଡ଼ାଦାୟକ । ଖଳପକ୍ଷେ— ପାପଗ୍ରହ—ପାପରେ ଆଗ୍ରହୀ କିମ୍ବା ଯେ ପୁଣ୍ୟ ଓ ପାପମଧ୍ୟରୁ ପାପକୁ ଗ୍ରହଣ କରେ । ପାପଗ୍ରହଦୃଷ୍ଟି ଅଳ୍ପ ପଡ଼ୁଥିଲେ ସୁଦ୍ଧା ଖରାପ ଫଳ ଦେଇଥାଏ ।

୧୯ । ଅତ୍ୟର୍ଥ—ଅତିଶୟ ।

୨୪ । ଶ୍ରେଣୀ—ପିଚ୍ଛ ।

୨୫ । ସିତପକ୍ଷ—ଶୁକ୍ଳପକ୍ଷ । ଅହକୁ ଅହ—ଦିନକୁ ଦିନ ।

ଅପାଙ୍ଗେ ତରଙ୍ଗ-ରଙ୍ଗ କେଳି କଲା ବାସ,
ଅକଲି ତା ଭ୍ରୂଲତାକୁ କାହିଁ ନାଟ ରସ ଯେ । ୨୬ ।
ଅଳପ ଅଳପ ଭଙ୍ଗୀ-ଘଷେ ଭାଷେ ଭାଷା,
ଅଧରକୁ କ ମାନଇ ସେ ମୃଦୁଳ-ହସା ଯେ । ୨୭ ।
ଅଳସାଇ ହୋଇ ଥରେ ଥରେ ହାଇ ମାରି,
ଅଙ୍ଗୁଳିରେ ଫଟୁକ ଫୁଟାଇ ଚମ୍ପାଗୋରୀ ଯେ । ୨୮ ।
ଅଂଶୁକ ରହସେ ରହେ ବସୁଥାଇ ପିନ୍ଧି,
ଅନୁରାଗେ ଦେଖୁଥାଇ ଉରୁଯୁଗ ସନ୍ଧି ଯେ । ୨୯ ।
ଅଟବୀ-ବିହାରେ ସୁଖ ପାଇ ଚଳୁଥାଇ;
ଅନୁଗତ ସଖୀଙ୍କୁ ଇଙ୍ଗିତେ ଛଳୁଥାଇ ଯେ । ୩୦ ।
ଅତନୁପାଠ ପଢ଼ଇ କ ଶରଧା ପାଇ,
ଅର୍ଥ ଯେନି ପରମ ଆନନ୍ଦେ ମଜ୍ଜୁଥାଇ ଯେ । ୩୧ ।
ଅକସ୍ମାତେ ବିକାର ପ୍ରକଟ ହେଲେ ଅଙ୍ଗେ,
ଅପିଧାନ କରୁଥାଇ ଆନ ପରସଙ୍ଗେ ଯେ । ୩୨ ।
ଅନୁମାନୁ ଅତନୁ ଶରଧା ତାର ଲକ୍ଷି
ଅମ୍ବା ଆଗେ ପ୍ରସଙ୍ଗରେ କହୁଥାନ୍ତି ସଖୀ ଯେ । ୩୩ ।
ଅନୁରୂପ ବର ତାକୁ କାହିଁ ନ ମିଳିଲା,
ଅନ୍ଦେଶ ଏ ଚନ୍ତା ପିତାମାତାଙ୍କର ହେଲା ଯେ । ୩୪ ।
ଅନୁସନ୍ଧାନରେ ବ୍ରହ୍ମା କଟିଣ ବିଚାରିଲ,
ଅନୁମାନ କଲେ ସତୀ ଯୋଗ୍ୟବର ହର ଯେ । ୩୫ ।
ଅଭିମତ ନ କଲେ ତା ଦକ୍ଷପ୍ରଜାପତି,
ଅନେକ ଦୋଷ ତାଙ୍କର କହେ ପିତାକତି ଯେ । ୩୬ ।
ଅକୁଳୀନ ସେ ତ ତାତ କିଛି ଗୁଣ ନାହିଁ,
ଅସ୍ଥିମାଳାଗୁଡ଼ାଏ ଗଳାରେ ଥାଏ ବନ୍ଧି ଯେ । ୩୭ ।

---

୨୬ । ତରଙ୍ଗରଙ୍ଗକେଳି—ଅଞ୍ଚଳତା ।
୨୭ । ଭଙ୍ଗୀଘଷେ—ବକ୍ରୋକ୍ତିରେ (ଘୁରୁଘାସହ କହିବାରେ) ।
୨୯ । ରହେ—ଏକାନ୍ତରେ ।
୩୦ । ଅଟବୀବିହାରେ—ବନ ଭ୍ରମଣରେ ।
୩୧ । ଅତନୁପାଠ—କାମଶାସ୍ତ୍ର ।
୩୨ । ଅପିଧାନ କରୁଥାଇ—ଲୁଚ୍ଛଇ ପକାଏ ।
୩୩ । ଅମ୍ବା—ମାତା ।
୩୬ । ପିତାକତ—ବ୍ରହ୍ମାଙ୍କ ନିକଟରେ ।

ଅଂଶୁକ ନ ଥିଲେ ଦେହେ ଲଜ ନାହିଁ ଯାର,
ଅଚଳ-ଗୁମ୍ଫାରେ ଥାଇ ନାହିଁ ତାର ଘର ଯେ । ୩୮ ।
ଅହିଗଣ ଅଟନ୍ତି ତାହାର ଅଳଙ୍କାର,
ଅର୍ଦ୍ଧରାତ୍ରେ ଶ୍ମଶାନରେ କରଇ ବିହାର ଯେ । ୩୯ ।
ଅନାଇଁ ଅନାଇଁ ଏହା କରିବା କି କରି,
ଅତି ସୁକୁମାରୀ ଗୁଣବତୀ ମୋ କୁମାରୀ ଯେ । ୪୦ ।
ଅମ୍ବୁଧିରେ ଭସାଇଦେବାର ଏଥୁଁ ଭଲ,
ଅବଶ୍ୟ ନ ଦେବି ସୁତା ଏ କଥା ନ ବୋଲ ଯେ । ୪୧ ।
ଅବନ୍ଧ କରି ତା ଧାତା କରିଛି ନିର୍ମାଣ,
ଅନାଇଁ ବୋଇଲେ ଦକ୍ଷପ୍ରଜାପତି ଶୁଣ ଯେ । ୪୨ ।
ଅଜ୍ଞାନ ତୁ ବିବେକ ତ କିଛି ନାହିଁ ତୋର,
ଅନନ୍ତ ସଂସାରର ସେ ଅଟନ୍ତି ଠାକୁର ଯେ । ୪୩ ।
ଅବୋଧ ନୃପ ତୁ ସୁତା ଦିଅ ଈଶାନଙ୍କୁ,
ଅବିଳମ୍ବେ କର ଏ ବିବାହ-ବିଧାନକୁ ଯେ । ୪୪ ।
ଅବ୍ଜ-ଭବ-ବଚନେ ସେ ଦକ୍ଷଧୀ ତା ତୋଷି,
ଅନୁରୂପେ ବିବାହ-ବିଧାନେ ପରବେଶ ଯେ । ୪୫ ।
ଅନେକ ସମ୍ଭାର ବେଶରରେ ଉପଯମ,
ଅବିଘ୍ନରେ କଲେ ସେ ଶଙ୍କର ପୂର୍ଣ୍ଣକାମ ଯେ । ୪୬ ।
ଅଙ୍ଗନା-ମଣିକି ଘେନି କାଶୀପୁରେ ଚଳି,
ଅନୁଦିନେ ତୋଷମନେ କଲେ କାମ କେଳି ଯେ । ୪୭ ।
ଅପତ୍ନେ ବହୁବିଧିରେ ବର୍ଣ୍ଣିବା ବିବାହ,
ଅଳ୍ପ ସୂଚିଲଇଁ କାର୍ଯ୍ୟ ହେବାକୁ ନିର୍ବାହ ଯେ । ୪୮ ।

ଗୋମୂତ୍ରିକା ବନ୍ଧ

| ଅ | ରି | ହା | ରୀ | ଗି | ରି | ଗୃ | ରୀ | ହ | ରି | ଶି | ରୀ | କା | ରୀ |
|---|---|---|---|---|---|---|---|---|---|---|---|---|---|
| ଅ | ରି | ଧା | ରୀ | ହ | ରି | ଗୃ | ରୀ | ପା | ରି | ହ | ରି | ପୂ | ରି |

୪୫ । ଅବ୍ଜଭବ—ବ୍ରହ୍ମା ।
୪୬ । ଉପଯମ—ବିବାହ ।
୪୮ । ସୂଚିଲଇଁ—ସଂକ୍ଷେପରେ କହିଲୁଁ ।

ଅରହାସ ଗିରିସୁଖ ହରଶିରକାସ,
ଅରଧାସ ହର ସୁଖ ଯାର ହର ସୁର ଯେ । ୪୯ ।
ଅଟନ୍ତି ବୃଷଭାନୁକୂଳ ଭବାନନ୍ଦଦାୟୀ,
ଅବ୍ଜ ଶିବା ଶିବ ରାଧା କୃଷ୍ଣ ରାଜାଙ୍କୁ ହିଁ ଯେ । ୫୦
ଅର୍ଥ ହେବ ହେ ସାଧବ ବିଭାବନା କର,
ଅଭେଦ୍ୟେ ଭାଷଇ ବଳଭଦ୍ର ଭଞ୍ଜ ବୀର ଯେ । ୫୧ ।



## ଦ୍ୱିତୀୟ ଛାନ୍ଦ

ରାଗ—କେଦାରକାମୋଦୀ

**କେଳି ବେଶ ଗୃହୁ**

ଯତି—୭+୨+୩, ୭+୨+୩+୧

ଅଙ୍ଗନାମଣି ଅଙ୍ଗ ସଙ୍ଗକୁ ଯାଇ
ଅନ୍ଧକପର ଗୁଣେ ବନ୍ଧନ ହୋଇ ଯେ ।
ଅତନୁ ଅଭିମତ ଫଳ ଜାତରୁ
ଅଳପ ମଣିଲେ ସେ କଳପତରୁ ଯେ । ୧ ।
ଅଙ୍କରେ ରଙ୍କରତନକୁ ବସାଇ
ଅପଘନକୁ ଘନସ୍ତନେ ମିଶାଇ ଯେ ।
ଅନୁରାଗ ସମ୍ଭବେ ନେହପାତରୁ
ଅଳପ ମଣିଲେ ସେ କଳପତରୁ ଯେ । ୨ ।

---

୫୦ । ଅଟ୍ଟେ···ଚନ୍ଦ୍ରପକ୍ଷେ—ବୃଷନାମକ 'ଭ' (ନକ୍ଷତ୍ର)ର ଅନୁକୂଳ ଓ ଭବ (ସଂସାର)ର ଆନନ୍ଦଦାତା । ଗୌରୀପକ୍ଷେ—ବୃଷଭପ୍ରିୟ ମହାଦେବଙ୍କର ଆନନ୍ଦଦାୟିନୀ । ରାଧାପକ୍ଷେ—ବୃଷଭାନୁ ନାମକ ଗୋପାଳ କୁଳରେ ଭବ (ଜନ୍ମ) ଯାହାର ଓ ଆନନ୍ଦମୟୀ ହୋଇଥିବାରୁ ଆନନ୍ଦ ପ୍ରଦାନକାରିଣୀ । କୃଷ୍ଣପକ୍ଷେ—ରାଧାଙ୍କର ଆନନ୍ଦଦାୟୀ । ରାଜା ବଳଭଦ୍ରଙ୍କ ପକ୍ଷେ—ବୃଷଭାନୁକୁଳଭବ—ବିଖ୍ୟାତ ସୂର୍ଯ୍ୟବଂଶରେ ଜାତ ଓ ଆନନ୍ଦଦାୟକ ।



### ଦ୍ୱିତୀୟ ଛାନ୍ଦ

୧ । ଅନ୍ଧକପର-ମହାଦେବ । ୨ । ଅପଘନ-ଶରୀର । ଅବ୍ଜସ୍ଥାନ-ଚନ୍ଦ୍ରସ୍ଥାନ ଅର୍ଥାତ୍ କାମଶାସ୍ତ୍ରୋକ୍ତ ତିଥିବିଶେଷରେ ଚନ୍ଦ୍ରକଳାର ଅବସ୍ଥିତ ସ୍ଥାନମାନଙ୍କୁ

ଅତି ସରୁ ଚୁମ୍ବନ ମଣ୍ଡି ମୁଖରେ
ଅଙ୍କେ ଛାନମାନଙ୍କ ଗୁଳ ନଖରେ ଯେ ।
ଅମୃତ ପାନ କରି ଓଷ୍ଠ ଭିତରୁ
ଅଳପ ମଣିଲେ ସେ କଳପତରୁ ଯେ । ୩ ।
ଅବଶେଷେ ଦେହରେ ନ ରଖି ଲାଜ
ଅଙ୍କିତ କଲେ ପଙ୍କଜାକ୍ଷୀ ଉରଜ ଯେ ।
ଅଙ୍ଗନା ଅଙ୍ଗ ରୋମାଙ୍କର ଜାତରୁ
ଅଳପ ମଣିଲେ ସେ କଳପତରୁ ଯେ । ୪ ।
ଅଷ୍ଟ ଅଷ୍ଟ ଗୁଣନେ ବନ୍ଧ ବିଧାନ
ଅଦେହ ସନ୍ଦେହ ସେ କ୍ରୀଡ଼ା ବିଧାନ ଯେ ।
ଅଶ୍ରାନ୍ତ ପରାଗ ପୂର୍ଣ୍ଣ ହୋଇ ରତରୁ
ଅଳପ ମଣିଲେ ସେ କଳପତରୁ ଯେ । ୫ ।
ଅପୂର୍ବ ବନଗତ ହୋଇଲ ପ୍ରାଣୀ
ଅଭିନବ ଅମୃତ-ସମସ୍ତ ଜାଣି ଯେ ।
ଅସମ ପୟୋଧର ଉପରେ ଘୋଟି
ଅତି ସରସେ କଲ ସୁରସ ବୃଷ୍ଟି ଯେ । ୬ ।
ଅଙ୍ଗେ ରୋମକଦମ୍ବମାନେ ଫୁଟିଲେ
ଅଙ୍ଘ୍ରି ନୂପୁର ଭେକ ରଟି ଫୁଟିଲେ ଯେ ।
ଅଧୀରେ ରାମା ବିଦ୍ୟୁଲ୍ଲତା ଚହଟି
ଅତି ସରସେ କଲ ସୁରସ ବୃଷ୍ଟି ଯେ । ୭ ।
ଅସିତ କେଶ ବେଶ ଫିଟି ଯା ତଳେ
ଅନୁବନ୍ଧେ ସେ ନାଚେ କେକୀ ଚଞ୍ଚଳେ ଯେ ।
ଅତନୁ ତମ ଘୋଟି ରହିଣ ସୃଷ୍ଟି
ଅତି ସରସେ କଲ ସୁରସ ବୃଷ୍ଟି ଯେ । ୮ ।

---

ଶ୍ଳୋକ—ଅନଙ୍ଗରଙ୍ଗେ

ସୀମନ୍ତ ଚ୍ୟଧଲେ କପୋଳଫଲକେ କକ୍ଷାକୁଚୋରଃସ୍ଥଲେ
ନାଭି-ଶ୍ରୋଣି-ବଳଗ୍ନ-ଜାନୁବିଷୟେ ଗୁଲ୍ଫେପଦେଽଙ୍ଗୁଷ୍ଠକେ
କୃଷ୍ଣାକୃଷ୍ଣବିଭାଗତୋ ମନସିଜସ୍ତିଷ୍ଠେଦ୍ଧମ ଦ୍ଧ୍ୟୋଷିତାଂ
ବାମାଙ୍ଗେଷ୍ୱଥ ଉଦ୍ଧ୍ୱଂ ତୋଽଭିଗମନାନ୍ନୃସ୍ୟ ପକ୍ଷଦ୍ୱୟେ ।

୫ । ଅଷ୍ଟଅଷ୍ଟଗୁଣନ—ଚଉଷଠି । ୬ । ବିପରୀତ ରତିକୁ ବର୍ଷାକାଳ ସହିତ ତୁଳନା କରାଯାଇଅଛି । ପୟୋଧର—ସ୍ତନ ଓ ମେଘ । ୮ । ତମ—ଅନ୍ଧକାର ।

ଅମର-ଗୁରୁ ନାସାମଣି ଚଳିଲ,
ଅବ୍ଧିଫଳ କରକାମାନ ପଡ଼ିଲା ଯେ ।
ଅଣ୍ଡାକର୍ଷିଣୀ ଘନ ସ୍ୱନ ପ୍ରକଟି,
ଅତି ସରସେ ଜଲ୍ଲ ସୁରସ ବୃଷ୍ଟି ଯେ । ୯
ଅନିଳ ଖରେ ଯାହା ଜାତ ହୁଅନ୍ତ,
ଅଙ୍ଗ-ଅବମୀ ଗଲା ଫର୍କିଲ ହୋଇ ଯେ ।
ଅମୂଲ୍ୟ-ଭୁରୁ-ଇନ୍ଦ୍ରଚାପ ଉଝଟି,
ଅତି ସରସେ କଲା ସୁରସ ବୃଷ୍ଟି ଯେ । ୧୦ ।
ଅଷ୍ଟ ଚତୁର ଗୁଣ ବନ୍ଧ ସରଳ,
ଅବଳ ହୋଇ କାମ ଦେବ ହାରିଲା ଯେ ।
ଅତନୁ-କେଳି-ଅନ୍ତ ବେଶ ସୁଷମା,
ଅମର ପୁରେ ନାହିଁ ନାହିଁ ଉପମ ଯେ । ୧୧ ।
ଅତୁଲ୍ୟ କେଶ-ବେଣୀ କର ନିର୍ମାଣ,
ଅଙ୍ଗେ ଖଞ୍ଜିଲେ ରତ୍ନ ଭୂଷଣମାନ ଯେ ।
ଅନାଇଁ ତୁଚ୍ଛ ପର ହସେ ଅଣିମା,
ଅମର ପୁରେ ନାହିଁ ନାହିଁ ଉପମ ଯେ । ୧୨ ।
ଅଳକେ କାଟି ଚାରୁ ଚନ୍ଦନପାଟୀ,
ଅଗ୍ରେ ତା'ର ସୁତାର-ସିନ୍ଦୂର ଗୋଟି ଯେ ।
ଅଧିକ ଝଟକିଲା ମୁଖଚନ୍ଦ୍ରମା,
ଅମର ପୁରେ ନାହିଁ ନାହିଁ ଉପମା ଯେ । ୧୩ ।
ଅସିତ ପଦ୍ମନେତ୍ରେ ଅଞ୍ଜନ ରଞ୍ଜି,
ଅପାଙ୍ଗେ କର୍ଣ୍ଣଯାଏ ସରୁଆ ଲଞ୍ଜି ଯେ ।
ଅଭ୍ରାମ ଉପରେ ହେଲା ସେ ରାମା,
ଅମର ପୁରେ ନାହିଁ ନାହିଁ ଉପମା ଯେ । ୧୪ ।
ଅରୁଣ-ଅଧରକି କୋଳରେ ଧରି,
ଅନୁରାଗେ କହନ୍ତ ଚାଟୁ-ଚାତୁରୀ ଯେ ।

---

ଅଜ୍ଞାନତା । ୯ । ଅମରଗୁରୁ - ବୃହସ୍ପତି । ନାସାମଣି ସଙ୍ଗେ ଉପମିତ । ବୃହସ୍ପତି ଚଳନରେ ମେଘ ବରଷେ । 'ବାରପୂର୍ଣ୍ଣାଂ ମହୀ କୃତ୍ୱା ପଶ୍ଚାତ୍‌ଶ୍ରୟତେ ଗୁରୁଃ ।' ଅବ୍ଧିଫଳ-ମୁକ୍ତା ୧୦ । ଉଝଟି-ଚହଟି, ଅଣିମା-ଯୋଗଶାସ୍ତ୍ର ପ୍ରସିଦ୍ଧ ଐଶ୍ୱର୍ଯ୍ୟ ବିଶେଷ । ୧୩। ସୁତାର—ଅତି ଉଜ୍ଜ୍ୱଳ । ୧୪ । ଅଭ୍ରାମ···ରାମା – ରାମା (ସତ୍ତା)

ଅନୁରୂପରେ ତୋ' ମୋ' ପ୍ରୀତିକ ବାମା,
ଅମରପୁରେ ନାହିଁ ନାହିଁ ଉପମା ଯେ । ୧୫ ।
ଅକ୍ଷିପିଲା କାଳା ବୋଲନ୍ତି ତୋତେ,
ଅପାର ଅନ୍ତରେ ସେ ରହିଲା ମୋତେ ଯେ ।
ଅବା ବୋଲନ୍ତି ତୁ ମୋ' ହୃଦୟମଣି,
ଅନୁରୂପ ଏ ବାଣୀ ନୁହଇ ପୁଣି ଯେ । ୧୬ ।
ଅଳକର ତିଳକ ବୋଲନ୍ତି ଧନ,
ଅହଙ୍କୁ ଅହ ସେହୁ ହୁଅଇ ଆନ ଯେ ।
ଅତନୁ-ସରିତକୁ ତୁ ମୋ ତରଣୀ,
ଅନୁରୂପ ଏ ବାଣୀ ନୁହଇ ପୁଣି ଯେ । ୧୭ ।
ଅଟୁ ତୁ ଲଲାଟର ଭାଗ୍ୟ ଅକ୍ଷର ?
ଅବ୍ୟକ୍ତ ହେଲ ସେ ତ ନୋହେ ଗୋଚର ଯେ ।
ଅମର-ପତି-ସମ୍ପତ୍ତି ମୋ ରମଣୀ,
ଅନୁରୂପ ଏ ବାଣୀ ନୁହଇ ପୁଣି ଯେ । ୧୮ ।
ଅବ୍ଜ-କୁମୁଦ ଅର୍କ-ଅମ୍ବୁଦ-ଭାବ,
ଅହର୍ନିଶି ନ ରହେ ଦୂର ସ୍ୱଭାବ ଯେ ।
ଅମ୍ବୁଜ-ସ୍ତୋକ ତୁଲ୍ୟ କରନ୍ତି ଆଣି,
ଅନୁରୂପ ଏ ବାଣୀ ନୁହଇ ପୁଣି ଯେ । ୧୯ ।
ଅତନୁ-ବାଞ୍ଛାକୁ ତୁ ଅମର ଲତା;
ଅଟେ ନୀରସ ହୃଦ ବୋଲିବ କି ତା ଯେ ?
ଅଞ୍ଜନୟନ ଚକ୍ଷୁରତନମଣି,
ଅନୁରୂପ ଏ ବାଣୀ ନୁହଇ ପୁଣି ଯେ । ୨୦ ।
ଅପସର ମୁରଲୀ ହଂସୁଲି ଶେଯ,
ଅଙ୍ଘ୍ରି-ଅଳତା ଅଙ୍ଗ-କର୍ପୂର ରଜ ଯେ ।
ଅଙ୍ଗସାତରେ ଅବା ହୁଅନ୍ତି ସରି,
ଅନୁକ୍ଷଣେ ଏ ନ ରହନ୍ତି ଚତୁରି ! ଯେ । ୨୧ ।

---

ସୁନ୍ଦରଠାରୁ ଆହୁରି ସୁନ୍ଦର ହେଲ । ୧୫ । ଅନୁରୂପରେ – ତୁଳନାରେ । ୧୬ । ଅପାର···ମୋତେ-ମୋଠାରୁ ଦୂରରେ ରହିଲ । ୧୭ । ଅଳକ-ଲଲାଟ । ତରଣୀ-ନୌକା । ୧୯ । ଅବ୍ଜ-ଚନ୍ଦ୍ର, ସ୍ତୋକ-ଚାତକ । ୨୧ । ଅପସର-ଛଣକଆ, ମାଣ୍ଡି ।

ଅଙ୍ଗୁଳି କବରୀର ସୁମନ ଝରା,
ଅଧରେ ପୀନସ୍ତନ ତଟରେ ହାଣ୍ଡ ଯେ ।
ଅବଳା ବଳା ବୋଲି ବୋଲିବା ଯାର
ଅନୁକ୍ଷଣେ ଏ ନ ଉହନ୍ତୁ ଚତୁର ! ଯେ । ୨୨ ।
ଅବା ଦର୍ପଣ ବିମ୍ବ ତୋହର ମୁହଁ;
ଅଙ୍ଗ-ଗୁରୁ ଦଙ୍ଗରେ ଦେବ ମଗ୍ନ ଯେ ।
ଅଣ୍ଡା କର୍କଶୀ-ସମ ହୁଅନ୍ତୁ ଗୋର,
ଅନୁକ୍ଷଣେ ଏ ନ ଉହନ୍ତୁ ଚତୁର ! ଯେ । ୨୩ ।
ଅମ୍ବୁରୁହନୟନ-କଜ୍ଜଳ କଳା
ଅଙ୍ଗ-କୁଙ୍କୁମ ବୋଲି ଏ ପ୍ରେମଶୀଳା ଯେ ।
ଅଧର-ପାନବୋଳ ହୋନ୍ତୁ ସୁନ୍ଦର !
ଅନୁକ୍ଷଣେ ଏ ନ ଉହନ୍ତୁ ଚତୁର ! ଯେ । ୨୪
ଅଙ୍ଗନା ତୋ ବଜନ୍ତା-ବୀଣା ହୁଅନ୍ତୁ,
ଅବା ଅତନୁ-ଶାସ୍ତ୍ର-ଚେତନ ପୋଥି ଯେ ।
ଅପ୍ରବର୍ତ୍ତିଳ ଏହି କଥା ଚତୁର,
ଅନୁକ୍ଷଣେ ଏ ନ ଉହନ୍ତୁ ଚତୁର ! ଯେ । ୨୫ ।
ଅକ୍ଷିରେ ରଖିଛୁ ତୁ ମୋକ୍ଷ ପଦବୀ,
ଅଣିମାପଦ ପଦତଳରେ ଭାବ ଯେ ।
ଅମୃତ ବୃଷ୍ଟି ତୋର ହାସ ରଚିତ,
ଅତନୁ-ବଳଭଦ୍ର ଭଞ୍ଜନୀ ମିତ ! ଯେ । ୨୬ ।
ଅଙ୍ଗନାକୁଳ ଅଳଙ୍କାର ତୁ ଗୋରୀ !
ଅଣୁଏ ରତ୍ତି ରମ୍ଭା ଲୁହନ୍ତି ସରି ।
ଅଚମ୍ବିତ ତୋ ଯେଉଁ କଳକଣ୍ଠିତ,
ଅତନୁ-ବଳଭଦ୍ର-ଭଞ୍ଜନୀ ମିତ ! ଯେ । ୨୭ ।

---

ସାତ୍ତରେ-ସନ୍ନିଧରେ । ୨୬ । ଅତନୁ-କନ୍ଦର୍ପର ବଳ ଓ ଭଦ୍ର-କୁଶଳର (ବିଦ୍ଧି-ମାରଣ ରୂପ ସୁଖର) । ଭଞ୍ଜନୀ— ନାଶକାରିଣୀ । ୨୭ । କଳକଣ୍ଠିତ ଲକ୍ଷଣ— ହର୍ଷହେତୁ ରୋଦନ, ଗାନ ଦ୍ରୁତ ଏକକାଳରେ ନାୟିକା କର୍ତ୍ତୃକ କୃତ ହେଲେ ତାହା କଳକଣ୍ଠିତ । "ହର୍ଷାଦ୍ରୁଦିତଗାନାଦ୍ୟବ୍ୟାମିଶ୍ରଂ କଳକଣ୍ଠିତଂ ।"

ଅସମ୍ପୃକ୍ତ ଭାବରେ ଥାଇ ସମ୍ପୃକ୍ତ,
ଅନୁକମ୍ପାରେ ଥାଇ ନିର୍ଘଣ ଚିତ୍ତ ଯେ ।
ଅଲକ୍ଷିତ ହେତୁ ଏ ପ୍ରେମ ରଚିତ,
ଅତନୁ-ବଳଭଦ୍ର-ଭଞ୍ଜନ ମିତ ଯେ । ୨୮ ।
ଅନଙ୍ଗ- ଅଳଙ୍କାରଶାସ୍ତ୍ର ନେତା ଖ୍ୟାତ,
ଅନେକ ହାବଭାବ-ଲୀଳାଦି ଗତ ଯେ ।
ଅଭିଧା ବ୍ୟଞ୍ଜନାଦି ଲକ୍ଷଣାମତ,
ଅତନୁ-ବଳଭଦ୍ର-ଭଞ୍ଜନ ମିତ ଯେ । ୨୯ ।
ଅପମୃତ୍ୟୁନାଶନ ସୁଖଦାୟକ,
ଅଜ୍ଞାନ-ଅନ୍ଧାରକୁ ଅର୍କ ପ୍ରଦ୍ୟୋତକ ଯେ ।
ଅଶେଷ ପାପ ହାରିବାକୁ ଏ ଗୀତ,
ଅତନୁ-ବଳଭଦ୍ର-ଭଞ୍ଜ ନିମିତ୍ତ ଯେ । ୩୦ ।

---

୨୮ । ଅସମ୍ବନ୍ଧାନେକଜନସମ୍ମୁଖ୍ୟଂ, ନିଷେଧ ଏବାନୁମତପ୍ରକାରଃ
ପ୍ରତ୍ୟୁତ୍ତରଂ ମୂଢ଼ବଦେବ ବାଚ୍ୟଂ, ନବାଙ୍ଗନାନାଂ ନନୁ ଏବ ଚେଷ୍ଟାଃ ।

୨୯ । ହାବ—ସ୍ତ୍ରୀଣାଂ ବିଳାସବିବ୍ବୋକବିଭ୍ରମା ଲଳିତଂ ତଥା,
ହେଳା ଲୀଳେତ୍ୟମୀ ହାବାଃ କ୍ରିୟାଃ ଶୃଙ୍ଗାରଭାବଜାଃ ।
ଭାବ—ନିର୍ବିକାର ଚିତ୍ତରେ ପ୍ରଥମେ ଯେଉଁ ବିକାର ଜାତ ହୁଏ ।
ଲୀଳା—ପ୍ରିୟର ସମାଗମ ଲାଭ କରି ନ ପାରିଲେ ନିଜ ମନକୁ ସନ୍ତୁଷ୍ଟ କରିବା ପାଇଁ ପ୍ରିୟ ନାୟକର ଗତି, ବାକ୍ୟ, ବେଶ, ଦୃଷ୍ଟି, ହାସ ପ୍ରଭୃତିର ଅନୁକରଣ (ନାୟିକାକର୍ତ୍ତୃକ) ।

୩୦ । ଅତନୁ—ରାଜା, ଅ—ବିଷ୍ଣୁ ତାଙ୍କର ତନୁ—ଶରୀର । "ନା ବିଷ୍ଣୁଃ ପୃଥିବୀ ପତିଃ ।" ରାଜା ବିଷ୍ଣୁଙ୍କ ଅଙ୍ଗ ବୋଲି ଶାସ୍ତ୍ରପ୍ରସିଦ୍ଧ ।



# ତୃତୀୟ ଛାନ୍ଦ

## —ଦକ୍ଷପ୍ରଜାପତିଙ୍କ ଯାଗ—

### ସତୀଙ୍କ ପ୍ରାଣତ୍ୟାଗ

ରାଗ—କାଳୀ

ଯତି—୪+୪+୬, ୪+୪+୭, ୪+୪+୬, ୪+୪+୬

[ଷୋଡ଼ଶ ଅକ୍ଷର ଘର୍ଦ୍ଧ ଉଚ୍ଚାରିତ ହେବ]

ଅତି ହରଷ ମନେ ଏ ରସ ଶୁଣ ହେ ସାଧୁନର,
ଅମୃତ ପ୍ରତି ମତି ତୃପତି କରେ ଶ୍ରବଣ ଯାର ।
ଅଶ୍ୱମେଧ ଭବ ଯାଗ ଆରମ୍ଭି ସେ ଦକ୍ଷପ୍ରଜାପତି,
ଅନୁ ରୂପରେ ସମ୍ଭାର କରେ ବେଦବିଧାନ ରୀତି । ୧
ଅକ୍ଷତ ବାସ ଦେଇଣ ଦଶଦ୍ୱିଜଙ୍କୁ ପେଷି ଘର,
ଅଣାଇଲେ ସେ ନିମନ୍ତି ତୋଷେ ଯେତୁଙ୍କ ଯୋଗିବର ।
ଅଙ୍ଗିରା ଶୁକ ସୂତ ସନକ କଶ୍ୟପ ସନାତନ,
ଅତ୍ରି ମରୀଚି କପିଳ ଶୁଚି ବଶିଷ୍ଠ ବିଦ୍ୟମାନ । ୨ ।
ଅଗସ୍ତି ବ୍ୟାସ ଆତ୍ମଭୂ ଶିଷ୍ୟ ଭୃଗୁ ପୁଲହ ଆଦି,
ଅଇଲେ ବାମଦେବ ଗୌତମ ଦୁର୍ବାସା ବିଶ୍ରବାଦି ।
ଅପରେ ଋତୁ ଆଦି ଯେ ଋତୁବେତ୍ତା ନିର୍ମଳଚିତ୍ତ,
ଅଥର୍ବ ପରାଶର ଯେ ସୁରାସୁର ନରରେ ଖ୍ୟାତ । ୩ ।
ଅନନ୍ତ ଧାତା ଆଦି ଦେବତା ଇନ୍ଦ୍ର ବରୁଣ କଲେ,
ଅଷ୍ଟଦିକ୍‌ପାଳ ଗ୍ରହସକୁଳମାନଙ୍କୁ ନିମନ୍ତିଲେ ।
ଅଖିଳେ ଯେତେ ଜନ୍ତୁ ପ୍ରଶସ୍ତେ ସର୍ବ ଅଇଲେ ପୁଣ,
ଅନ୍ଧକକାଳଙ୍କୁ ହିଁ କେବଳ ନ ଦେଲେ ନିମନ୍ତ୍ରଣ । ୪ ।

---

୧ । ଅମୃତ ପ୍ରତି—ଅମୃତର ପ୍ରତିନିଧି ।

ଅରଣିଚ୍ଛେଦ କଲେ ବିବିଧ ବାଦ୍ୟ ମଙ୍ଗଳ ଘଟେ
ଅତିଥିଜନ ରହିବା ସ୍ଥାନ ରଚିଲେ ଠାବେ ଠାବେ ।
ଅଷ୍ଟ ଚେଳ ତ ବଂଶ-ନିର୍ମିତ କଲେ ମଣ୍ଡପ ଶାଳ
ଅମରପୁର ସମ ସମ୍ଭାର ଯତନେ ଠୁଳ କଲ । ୫ ।
ଅବ୍‌ଜକମଠ ସଙ୍ଗେ ଷଟ କୋଣ ବର୍ତ୍ତୁଳ ଖଣ୍ଡ
ଅଷ୍ଟ ଓ କୋଣ ବେଦ ପ୍ରମାଣ ନିର୍ମାଣ କଲେ କୁଣ୍ଡ ।
ଅଶେଷ ଗୁଣ ଶ୍ରୁତିଜ୍ଞପୂର୍ଣ ଆଚାର୍ଯ୍ୟ ବ୍ରହ୍ମା କଲେ
ଅଧ୍ୟାପକଙ୍କ ମୁଖ୍ୟ ଯେ ଯହିଁ ଭବିରେ ନିଯେ ଗିଲେ । ୬ ।
ଅଗ୍ନିଧ୍ର ହୋତା ବେଦ ବକତା ଅଟନ୍ତି ଉଦ୍‌ଗାତା
ଅଗ୍ନିବର୍ଯ୍ୟକ ସେ ବଗ୍ଧ ସର୍ବାଂଶେ ଆଗ୍ଧ ଏକକୁ ଏକ ।
ଅଙ୍ଗୁଳିମାନ ପ୍ରଣୀତ ପୂର୍ଣ୍ଣ ଶ୍ରୁବ ସ୍ରୁଚବି କଲେ
ଅପରେ ଯେତେ ବିଧି ଉଚିତେ ଶୁଧ ନ ଭୁଆଇଲେ । ୭ ।
ଅଯୁତ ଯୁତ ସ୍ୱର୍ଣ୍ଣ ପ୍ରାଶ୍ଚିତ କଲେ ଅବଘ୍ନକାମେ
ଅପରାଜିତା ଚଣ୍ଡୀ ଗଣିତ ନୁହେ ବରଣକ୍ରମେ ।
ଅପୂର୍ବ ପଟ୍ଟବସ୍ତ୍ରେ ଶ୍ରେଷ୍ଠଜନମାନଙ୍କୁ ବର
ଅଳକେ ଶଶୀ ଚନ୍ଦନ ଘଷିଦେଲେ ଆଦର କର । ୮ ।
ଅଗ୍ରେ ବଟୁକ ପୂଜା କରିଣ ଆରମ୍ଭ କଲେ କର୍ମ
ଅଗ୍ନିସ୍ଥାପନା କାର୍ଯ୍ୟେ ସେ ନାନା ବିଧାନେ କଲେ ଶ୍ରମ ।
ଅମ୍ବୁଦ ସ୍ୱନେ ଶିଖୀ ଯେସନେ ଟେକ କରଇ ନାଦ
ଅନୁକ୍ରମରେ ସେ ବିପ୍ରବରେ ଟେକ ପଢ଼ନ୍ତି ବେଦ । ୯ ।
ଅତିଥି ଜନମାନଙ୍କୁ ଅନ୍ନମୃଷ୍ଟ ଭୋଜନ ଦେଲେ
ଅନ୍ଧ କୁବୁଜା ପଙ୍ଗୁଙ୍କୁ ଖଞ୍ଜି ସକଳ ଦ୍ରବ୍ୟ କଲେ ।
ଅପରେ ଦୂରଦେଶୀ ନର ବନ୍ଦୀ ଭିକ୍ଷୁକ ଗଣେ
ଅଭୀଷ୍ଟ ପୂର୍ଣ୍ଣ କରି ସୁବର୍ଣ୍ଣ ଦେଲେ ସେ ଅନୁକ୍ଷଣେ । ୧୦ ।
ଅଇଲେ ଦୂରଦେଶୁ ଭୂସୁରମାନେ ଅର୍ଜନେ ଧନ
ଅଟେ କେ ସାମବେଦେ ଆଗମ ଶାସ୍ତ୍ରେ କେ ବିଦ୍ୟମାନ ।
ଅପରେ ଯଜୁର୍ବେଦରେ ବିଦୁଷ କେ ଋଗ୍‌ବେଦବେତ୍ତା
ଅଥର୍ବ ବେଦରେ କେ କୋବିଦ କେ ସର୍ବଶାସ୍ତ୍ରେ ଜ୍ଞାତା । ୧୧ ।

---

୫ । ଅରଣି— ଯଜ୍ଞରେ ଯେଉଁ କାଠ ଦୁଇଖଣ୍ଡ ଘଷି ଅଗ୍ନି ବାହାର କରନ୍ତି । ୮ । ଶଶୀ—କର୍ପୂର । ୯ । ଟେକ—ଉଚ୍ଚରେ । ପାତଞ୍ଜଳେ— ପତଞ୍ଜଳିପ୍ରଣୀତ ଯୋଗ ଶାସ୍ତ୍ରରେ ।

ଅଷ୍ଟ ବତ୍ତିଶ ମନ୍ତ୍ରେ ଜା ଯଜ୍ଞ ବୈୟାକରଣ କେନ୍ଦ୍ର
ଅଟନ୍ତି ଜେ ଯନ୍ତ୍ରମନ୍ତ୍ର ଯ ତନ୍ତ୍ର କାର୍ଯ୍ୟେ ପ୍ରଧାନ ତନ୍ତ୍ରୀ ।
ଅର୍କ ଟୀକରେ ତର୍କ ଶାସ୍ତ୍ରେ ଅଟନ୍ତି ଜେ ପାରଗତ
ଅତି ପ୍ରବନେ ଜେ ପାତଞ୍ଜଳେ କେହୁ ଦେବାନ୍ତେ ବର । ୧୨
ଅଶ୍ୱମେଧ ଯ ଯାଗେ ଜା ସିଦ୍ଧି ମୀମାଂସା ଶାସ୍ତ୍ରେ ମାନ୍ୟ
ଅଛି ଜା ଖ୍ୟାତି ସାଂଖ୍ୟରେ ଅତି ଜେ ବୈଶେଷିକେ ଜ୍ଞାନ୍ୟ ।
ଅଲଙ୍କାରିକ କାବ୍ୟ ନାଟକ ଧୀର ଜେ କବିବର
ଅଷ୍ଟମ ଦଶ ପୁରାଣେ ବ୍ୟାସ ପରି ଜେ ଧୂରନ୍ଧର । ୧୩ ।
ଅଙ୍ଗ ଜେ ବିଦ୍ୟା ହେଲେହେଁ ଅପ୍ରମିତ ପ୍ରସଙ୍ଗ ଜାଣେ
ଅନେକ ଜେ ମୋଟ ଥନ୍ତିଲ ପେଟ ରୂପରେ ଲେଖା ଜଣେ ।
ଅଠର ପାଆ ଉଛ ଜା ବାହା ବୃଷଳ ଟେକ ସ୍ତୁତି
ଅଳିକେ ଚଢା ଦ୍ରବ୍ୟ ପଇଡା ଯେନ୍ତ ସେ ପୂଜ୍ୟ ଅତି । ୧୪ ।
ଅଂଶେ କୁଳୀନ ବେଶେ ମଳିନ ହେବଲ ସେ ବିଦ୍ୟମାନେ
ଅଗ୍ରେ ପୂଜ୍ୟ ହୋଇଲେ ଦ୍ୱିଜ ଅଛଲେ ସୁଖାସନେ ।
ଅଲଙ୍କ ରଙ୍ଗ ଅଧରେ ନାଗବଲ୍ଲୀ ବିଡା ଜେ ଖାଇ
ଅଙ୍ଗରେ ଝୁଲ ଉଡି ଜେ ଫୁଲ ଗୁଳ୍ପ ଦୋହଲାଇ । ୧୫ ।
ଅନସରକୁ ଜେ ଛତ୍ର ଦୂର ହୁଅଇ ଠେର ଠେର
ଅଙ୍ଗମଣ୍ଡଳୀ ଖୋଜ ସେ ମିଳ ସ୍ନେହାନୁରସ୍ତ
ଅନେକ ମତେ ବିପ୍ରେ ଏମନ୍ତେ ପ୍ରବେଶ ହେଲେ ଆସି
ଅବକଳନା କରନ୍ତେ ଲକ୍ଷେ ହେଲେ ସେ ସବୁ ମିଶି । ୧୬ ।
ଅନାଇଁ ଲକ୍ଷ ସୁବର୍ଣ୍ଣ ଦକ୍ଷ ଧାତା ଦେବାକୁ କଟିଲ
ଅପାତ୍ର ପାତ୍ର ବିପ୍ରଙ୍କ ମାତ୍ର ଦେଇ ତା ପାତ୍ର ବୋଲେ ।
ଅର୍ଜି ସୁଗୁଣ ପୂଜ୍ୟ ନିପୁଣ ଦ୍ୱିଜମାନେ ଯେ ଥିଲେ
ଅଶୀଇ ପାଞ୍ଚ ଜଣରେ ତାଙ୍କୁ ଦଶ ସୁବର୍ଣ୍ଣ ଦେଲେ । ୧୭ ।
ଅତି ସୁଧୀର କୁଳୀନ ବର କରିଣ ବିବେଚନା
ଅଥ ଏ ଦଶ ଜଣରେ ଦଶ ଛଅ ସେ ଦେଲେ ସୁନା ।
ଅଂଶ ଅଂଶକେ ବିଦ୍ୟ ଅଟନ୍ତି ଜେ କେଉଁ ବିଦ୍ୟାରେ କ୍ଷମ
ଅଷ୍ଟ ଦ୍ୱାଦଶ ଜଣେ ଏହାଙ୍କୁ ଦେଲେ ସେ ଦଶ ହେମ । ୧୮ ।

---

୧୨ । ଅଷ୍ଟବତ୍ତିଶ—ଚାଳିଶ—ଯଜୁର୍ବେଦୀୟ କଣ୍ୱସଂହିତାର ଅଧ୍ୟାୟ ସଂଖ୍ୟା ।
୧୬ । ପାତ୍ର—ଅମାତ୍ୟ ।

ଅବଦ୍ୟମାନ କର୍ମେ ନିଯୁକ୍ତ ଅଟନ୍ତି ବିପ୍ରବର୍ଗ,
ଅଠର ବାର ଜଣେ ତାଙ୍କର ଦେଲେ ସେ ଦଶ ସ୍ୱର୍ଣ୍ଣ ।
ଅମଳେ ଲକ୍ଷ ସୁବର୍ଣ୍ଣ ଲକ୍ଷ ବିପ୍ରେ ଏ ରୂପେ ଦେଲେ
ଅଧିକ ଉଣା କରି ଏ ମାନ ଗୃହ ପ୍ରକାରେ ନେଲେ । ୧୯ ।
* ଅନୁଜ୍ଞା ଏଣୁ ଦକ୍ଷ ବିଧାତା କଲେ ମନ୍ତ୍ରୀଙ୍କି ଗୁହାଁ
ଅନୁକ୍ରମେ ଏ ସ୍ୱର୍ଣ୍ଣ ଟଙ୍କ କେତେ ନେଲେ ତା କହ ତୁହ୍ନି ।
ଅମର-ଲତା ସମାନ ଦାତା ହୋଇଲେ ପ୍ରଜାପତି
ଅଧିକ କରି ବାଞ୍ଛାକୁ ପରି-ପୂରିତ କଲେ ମତି । ୨୦ ।
ଅହି ଅମର ମନୁଜ ପୁର ପୂରିଲା ତାର ଯଶ
ଅମ୍ବୁଦ କାଳ ଶେଷେ ଉଜ୍ଜ୍ୱଳ ଯେମନ୍ତ ତାରାଈଶ ।
ଅଷ୍ଟଦିକ୍‌ପତିଗଣେ ଆହୁତି ଦିଅନ୍ତି ଯଥୋଚିତରେ
ଅବକଳନା ନୋହେ ସୁମନା ଆଦ୍ୟ ଆହୁତି କେତେ । ୨୧ ।
ଅନୁକ୍ରମରେ ଦ୍ୱିଗୁଣ ଦରେ ଦିଅନ୍ତି ବେଳୁଁ ବେଳେ
ଅଟେ ପ୍ରମିତ ପଦର ଶତ ତିରିଶ ମିଶି ଠୁଳେ ।
ଅନେକ ଦୂର ଦେଶର ନର ଅଇଲେ ଯାଗ ଦେଖି
ଅନାଇ ସ୍ଥାନ ସମ୍ଭାର ମାନ ମାନସ ହୋଏ ସୁଖୀ । ୨୨ ।
ଅନୁରାଗରେ କାନ୍ତ ଆଗରେ ବିନୟଭାବେ କହି
ଅଇଲେ ସତୀ ପିତାବସତି ଯାଗଦେଖିବା ପାଇଁ ।
ଅଷ୍ଟଲୋଚନ ତାର ସାଧନ କରିଛି ବିରଚନା
ଅନାଇ ସୁତା ସେ ଦକ୍ଷ ଧାତା ନ କଲେ ସମ୍ଭାବନା । ୨୩ ।
ଅଙ୍ଗ କୁଶଳ କାନ୍ତ ମଙ୍ଗଳ ବାର୍ତ୍ତା ପୁଚ୍ଛିଲେ ନାହିଁ
ଅର୍ଘ୍ୟ କ୍ଷାଳନ ନିମିତ୍ତେ ବନ ଦାନ ନ କଲେ କେହି ।
ଅସମ୍ଭାବନା ପାଇ ଅଙ୍ଗନା କ୍ରୋଧରେ ଜରଜର
ଅନଳକୁଣ୍ଡେ ପଡ଼ିଲେ ଗୃଣ୍ଡେ ସୁନ୍ଦରୀ ନାରୀବର । ୨୪ ।
ଅପୂର୍ବ ଘଟି ଦେଖି ସଖ୍ୟତ ହୋଇଲେ ଋଷିଗଣ
ଅମରବୃନ୍ଦ ଭଜିଲେ ମନ୍ଦଭାବକୁ ତତକ୍ଷଣ ।
ଅଟବୀଦ୍ୟୁତି ଋତୁନୃପତି ଅନ୍ତର ହେଲେ ଯଥା
ଅଚିରେ ଶାଳା-ଶୋଭା ଦିଶିଲା ଅତି ବିକୃତ ତଥା । ୨୫ ।

---

* ଚିହ୍ନିତ ପଦଟି ପ୍ରକ୍ଷିପ୍ତ ପରି ବୋଧ ହେଉଛି ।
୨୫ । ଅଟବୀଦ୍ୟୁତି—ବନର ଶୋଭା । ଋତୁନୃପତି—ବସନ୍ତ ।

ଅଖିଳ ଲୋକମୁଖରେ ଡାକ ଶୁଭିଲା ପ୍ରଜାପତି
ଅଗ୍ନିଷ୍ଟୋମରେ କି ଅଧର୍ମରେ ହେଲା ଦୁହିତା ମୃତି ।
ଅବନା ଅନଙ୍ଗ ହରକର ସମସ୍ତ କଜ୍ଜଳ ସହରର ?
ଅଘପ୍ରକର ଖଣ୍ଡ ସଭର ବଳଭଦ୍ରର ହର । ୨୭ ।

———

# ଚତୁର୍ଥ ଛାନ୍ଦ

## ଯାଗଧ୍ୱଂସ ଓ ଦକ୍ଷବଧ

ରାଗ—ଭସକୁଳ୍ଲା

ଅନ୍ତି ସୁମନେ ଶୃଣ ହେ ସୁଜନେ
ଅମ୍ବିକା ଦଗ୍ଧ ହେବାର ଦହନେ
ଅନ୍ଧକ-ଅସୁର-ଅରିର ଶୁଣି
ଅନଳରେ ଘୃତ ପଡ଼ିଲା ଜାଣି ସେ
ଅତି କୋପମତ୍ତ ହେଲେ ଯେ
ଅଟ୍ଟହାସ କରି— ବଡ ଆଡମ୍ବରେ
ନିଃଶ୍ୱାସ-ମରୁତ କଲେ ସେ । ୧ ।
ଅନାଇଁ ଅନାଇଁ ଓଷ୍ଠ କମ୍ପିଲା
ଅଙ୍ଗ ଅତ୍ୟନ୍ତ ଥରଥର ହେଲା
ଅରବିନ୍ଦ-ମୁଖ ନିମିଷକରେ
ଅନେକ ଚଣ୍ଡକର ତେଜ ଧରେ ସେ
ଅକ୍ଷି ଅନଳୁଁ ପ୍ରଜ୍ୱଳ ଯେ
ଅରୁଣତା ପାଇ— ପଡୁଅଛି କୋଟି
କୋଟି କ୍ରୋଧ ହୋଇ ଠୁଳ ଯେ । ୨ ।
ଅତି ବିକଟ ଦନ୍ତ ରଟ ରଟ
ଅସ୍ଥି ଅଙ୍ଗରେ ଫୁଟେ ମଟ ମଟ
ଅଧରଦେଶ ଦଶନରେ ଚାପି
ଅତ୍ୟନ୍ତ ବିକରାଳ କାଳରୂପୀ ସେ

---

୨୭ । ମୃତି—ମରଣ ।

**୪ର୍ଥ ଛାନ୍ଦ**

୧ । ଦହନେ—ଅଗ୍ନିରେ । ଚଣ୍ଡକର—ସୂର୍ଯ୍ୟ । ଦଶନରେ—ଦାନ୍ତରେ ।

ଅନୁଚରେ ଚଳାଇଲେ ଯେ
ଅନ୍ୟ ଲୋକେ ଧୃତି                 କାର କେତେ କତି
ମହାକାଳେ ନ ରହିଲେ ସେ । ୩ ।

ଅଗ୍ରଭୂଗେ ଜନ୍ମ ହେବାକୁ କ୍ଷମ
ଅଷ୍ଟ ଦିଗପାଳ ଆଦିତ୍ୟ ସୋମ
ଅବ୍ଜଭବ ଅନନ୍ତ ଚ ନୁହନ୍ତି
ଅନନ୍ତା ଦେବୀ କଲ୍ ଅତି ଖ୍ୟାତି ସେ
ଅମରପୁର ଚଳିଲା ଯେ
ଅନାଳ ନ କହି                 ସ୍ଥିର ହୋଇ ରହି
ଅମ୍ବୁନିଧି ଝଳ୍କୁଲା ଯେ । ୪ ।

ଅମାନ ଘରଚଣ୍ଡ କ୍ରୋଧବଶେ
ଅବତୀର୍ଣ୍ଣ ହେଲା ଏକ ପୁରୁଷେ
ଅନୁରୂପ ତାକୁ ଉପମା ନାହିଁ
ଅନ୍ତକର ଭୟଙ୍କର ଅଟଇ ସେ
ଅଗ୍ରଦେଶେ ଜନ୍ମ ହେଲା ଯେ
ଅନୁଜ୍ଞା କର ମ—                 ହେଶ୍ବର କାହାର
ଅସୁ ଆଣିବି ବୋଇଲା ଯେ । ୫ ।

ଅନାଇ ତାକୁ ଗଉରୀ-ରମଣ
ଅନୁଜ୍ଞା କଲେ ବୀରଭଦ୍ର ଶୁଣ,
ଅଦ୍ୟ ଦକ୍ଷ ପ୍ରଜାପତିଙ୍କ ମାଇ
ଅବିଳମ୍ବେ ତା' ଯାଗ ନାଶକର ସେ
ଅସିତକଣ୍ଠ ବଚନେ ଯେ
ଅନିଳରୁ ବେଗ                 ଚଳିଲା ସେ ଯାଗ—
ସ୍ଥାନେ ଅତି ରାଗ ମନେ ଯେ । ୬ ।

---

୪ । ଅବ୍ଜଭବ—ବ୍ରହ୍ମା । ଅନନ୍ତା—ପୃଥିବୀ । ଚଳିଲା—କମ୍ପିଲା ।
୫ । ଅମାନ—ଅପରିମିତ, ଅଧିକ । ଅନୁରୂପ—ଯୋଗ୍ୟ । ଅନୁଜ୍ଞାକର—ଆଦେଶ ଦିଅ । ଅସୁ—ପ୍ରାଣ । ୬ । ଅସିତକଣ୍ଠ—ନୀଳକଣ୍ଠ, ମହାଦେବ ।

ଅବ୍ଧି କି ସେ ଭେକ-ବଳେ ପଶିଲା
ଅଜାକୁଳ କି ଶାର୍ଦ୍ଦୂଳ ଗ୍ରାସିଲା
ଅନର୍ଥ କି ତନୁ ଧରି ଆସିଲା
ଅର୍କବାର ରୂପ କି ପ୍ରକାଶିଲା ସେ
ଅଟେ ପ୍ରଳୟ ସାଗର ସେ
ଅନୁମାନ ହୋଏ ବୀରଭଦ୍ର ନୋହେ
ମନ୍ଦର ସେ ଜପ୍ରାଚର ସେ । ୭ ।

ଅସ୍ତ୍ରବ୍ୟସ୍ତ କଲେ ଯାଗସମ୍ଭାର
ଅନ୍ୟୋଽନ୍ୟରେ ହେଲା ସମର ଘୋର ।
ଅସ୍ତ୍ରମାନଙ୍କର ଆତଯାତରେ
ଅର୍କ ଲୁଚିଲେ ଅମ୍ବର ଭିତରେ ସେ
ଅନେଶେ ଗୁଣଟଙ୍କାର ସେ
ଅସି ଗଦା ଭଲ୍ଲି କାତି କୁନ୍ତ ହେଲ
ଗତି ଅତି ଚମତ୍କାର ସେ । ୮ ।

ଅକ୍ଷି ପଲକ-ଅବସର ମାଝେ
ଅସ୍ତ୍ର ପ୍ରୟୋଗ ଅୟୁତ ଅୟୁତେ
ଅନାଇଲେ ବୁଜିପଡ଼େ ନୟନ
ଅଗୋଚର ହେଲା ପ୍ରତିନୟନ ସେ
ଅନ୍ଧକାର ବ୍ୟାପ୍ତ ହେଲା ସେ
ଅଲ୍ପ ଅଲ୍ପ ମାତ୍ର ଆଲୋକ ସେ ଶସ୍ତ୍ର
ଝଟକବା କରୁଥିଲା ସେ । ୯ ।

ଅପରିମିତ ସତ୍ତ୍ୱେ ମହାବଳ
ଅଟନ୍ତି ଦକ୍ଷ-ପ୍ରଜାପତି ଦଳ
ଅନେକ ପ୍ରକାରେ ସମର କଲେ
ଅଣୁଏ ବୀରଭଦ୍ର ନ ଘୁଞ୍ଚିଲେ ସେ
ଅଦ୍ରି କି ଲୋଷ୍ଟ୍ରେ ଭାଙ୍ଗଇ ସେ
ଅପାର ସିକତା ବନ୍ଧ ପକାଇଲେ
ବାରିଧି କି ବନ୍ଧାଯାଇ ସେ । ୧୦ ।

---

୮ । ଅନ୍ୟୋଽନ୍ୟରେ—ଆପଣା ଆପଣା ଭିତରେ । ୯ । ପ୍ରତିନୟନ—ପରସ୍ପର ଚାହାଁଚାହିଁ । ୧୦ । ଲୋଷ୍ଟ୍ର—ଢେଲା । ସିକତା—ବାଲି ।

ଅଟ୍ଟହାସ କରି ପରକାଶ
ଅବହେଳେ ସେ ସୈନ୍ୟ କଲେ ନାଶ
ଅଗ୍ରେ ଉଭା ହୋଇ ଯୁଝିବା ପାଇଁ
ଅରହ ଚହିଁରେ ନୋହିଲେ କେହି ସେ
ଅମ୍ଭୁଜବନକୁ ଯଥା ଯେ
ଅନାୟାସେ ହସ୍ତୀ ପଶି ଦଏ ମନ୍ଥି
ସୈନ୍ୟେ ବୀରଭଦ୍ର ତଥା ଯେ । ୧୧ ।

ଅସିବରେ ଛିଡ଼ିଗଲା କା ଗଳା
ଅଣ୍ଟାଠାରୁ କେନ୍ନ ଖଣ୍ଡ କେ ହେଲା
ଅସ୍ଥି ଘଞ୍ଜିଲା ଗଦାରେ କାହାର
ଅନ୍ତ କୁନ୍ତରେ ହୋଇଲା ବାହାର ସେ
ଅଶ୍ବ ବରୂପ କେ ଦଶେ ଯେ
ଅନାଇଣ ପାଟି ପ୍ରସାରି ଚଉଟି
ଶବ ଦେଖ ଦୃଶ ଦେଶେ ଯେ । ୧୨ ।

ଅଧରେ ଦନ୍ତକୁ ନାବଦ୍ଧେ ଭିଡ଼ି
ଅଛି ମରପଡ଼ି କେ ମୁଖ ମୋଡ଼ି
ଅଳପ କା' ପିଣ୍ଡେ ଅଛି ପରାଣ
ଅନୁଭବ କରିବାକୁ କଷଣ ସେ
ଅଧେ ଛିଡ଼ିଛି କା' ବେକୁଁ ଯେ
ଅଧାଚନ୍ଦ୍ର ଶର ବାଜଣ କାହାର
ମେଲା ହୋଇଗଲା ବୁକୁ ଯେ । ୧୩ ।

ଅମ୍ବୁଦ ଘୋର ବରଷଣ ସମ
ଅବମା ରକତେ ହେଲା କର୍ଦ୍ଦମ
ଅଚଳସମ ମଡ଼ା କୁଢ଼ ପଡ଼ି
ଅସ୍ଥିପଳ ନୋହେ କଳଣା କରି ସେ
ଅପାର ଦୂରରୁ ଆସି ଯେ
ଅଶନ କରନ୍ତି ଶୃଗାଳ କୁକୁର
କାକ ଗୃଧ୍ରମାନ ମିଶି ଯେ । ୧୪ ।

---

୧୧ । ଅରହ—ଯୋଗ୍ୟ, ସମର୍ଥ । ୧୨ । ଅନାଇଣ···ଦଶେ—ଆଖିବାଟରେ ପ୍ରାଣ ଗୁଡ଼ପାଇ ଥିବାରୁ ଚଉଟି ରହିଛି । ୧୪ । ଅଶନ-ଭୋଜନ । ଗୃଧ୍ର-ଶାଗୁଣା ।

ଅନିବଂତମାପ୍ତ କବନ୍ଧ ହେଲେ
ଅମରେ ଗୃହ୍ନିଁ ଚକିତ ହୋଇଲେ
ଅକମ୍ମା ଭାବି ନ ସତ୍ୱ ଥିଲେ
ଅନ୍ୱପୁରହିଁ କର୍ମମାନ ହେଲ ସେ
ଅନନ୍ତ ଫଣା ଗୃଜିଲେ ଯେ
ଅନନ୍ତ ସତ୍ୱରେ ଯୁଦ୍ଧ କଲେ ଯେତି
କେଶ୍ୱ ବଳେ ନ ବଳିଲେ ଯେ । ୧୫ ।

ଅଙ୍ଗୁଁଶିର ମୋଡ଼ ଦକ୍ଷ ଧାତାର
ଅଗ୍ନିକୁଣ୍ଡେ ପକାଇଲେ ସତ୍ୱର
ଅନାଥ ହେଲ ତେଣୁ ଯାଗସ୍ଥଳ
ଅଚରେ ପଳାଇଲେ ଋଷିକୁଳ ସେ
ଅଣ୍ଡଜ ରୂପକୁ ଧରି ଯେ
ଅନ୍ତର ହୋଇଲେ କେଉଁ ଋଷି ଗଲେ
ମୃଗ ବ୍ୟାଘ୍ର ରୂପ ଧରି ଯେ । ୧୬ ।

ଅଜନ କରି ଦେଇଣ ସେ ସୃଷ୍ଟି
ଅଇଲେ ସେ ବୀରଭଦ୍ର ଲେଉଟି
ଅଖିଳ ନାଥ ଗ୍ରୀମୂରେ ପ୍ରବେଶ
ଅର୍ପିତ କଲେ ସମରସନ୍ଦେଶ ସେ
ଅନ୍ଧକାରି ଦୁଃଖେ ଲୀନ ଯେ
ଅପର ସ୍ଥନ୍ଦେ ବ— ସ୍ତ୍ରୀମା ବାମା ବିନା
ଭୀମ ଭୀମ କ୍ଲେଶମାନ ଯେ । ୧୭ ।

---

୧୫ । କବନ୍ଧ—ମସ୍ତକହୀନ ଯୋଦ୍ଧା । ୧୬ । ଅଣ୍ଡଜ—ପକ୍ଷୀ । ୧୭ । ଅଜନ—ଜନଶୂନ୍ୟ । ଭୀମ ଭୀମ କ୍ଲେଶ—ଭୀମ (ମହାଦେବ)ଙ୍କର ଭୀମ (ଭୟଙ୍କର) କଷ୍ଟ-ସମୂହ । 'ଭବୋ ଭୀମଃ ସ୍ଥାଣୁ ରୁଦ୍ର ଉମାପତିଃ' ।

ଅଟେ ଗୃତରୂପ ଭୁଜ ଚତୁର
ଅକ୍ଷ ବାଇଶ ମସ୍ତକ ଏଗାର
ଅଙ୍ଘ୍ରି ଗୋଟିଏ ତହ୍ନମାନ ଦଶେ
ଅନନ୍ତ ପାଦେ ଯା' ଶୋଭା ପ୍ରକାଶେ ସେ
ଅଚିନ୍ତ୍ୟ ମହିମା ଯାର ଯେ
ଅନାଦି ଗୁଣାତୀ— ତ ବ୍ରହ୍ମସ୍ୱରୂପ
ଭଣେ ଭଞ୍ଜ ନୃପବର ଯେ । ୧୮ ।

---

# ପଞ୍ଚମ ଛାନ୍ଦ

## ଶ୍ରୀ ବାନୁଚନ୍ତା

ରାଗ—ଚିନ୍ତାକେଦାର

( ଆଦ୍ୟ ଯମକ )

ଅସୁମାନେ ହୋଇଲେ ଅନ୍ତର
ଅସୁନ୍ଦର ଯଥା କଳେବର
ଅଂଶୁକହୀନ ଭୁହିନକର ପରି—
ବାମା ବିନା ଦିଶିଲେ ଶଙ୍କର ସେ ଈଶ୍ୱର । ୧ ।

---

୧୮ । ଏଠାରେ ନିର୍ଗୁଣ ବ୍ରହ୍ମ ସ୍ୱରୂପ ବର୍ଣ୍ଣନା କରିଥିବାରୁ ରୂପ-ଭୂଜ-ଅକ୍ଷି-କର-ମସ୍ତକ ଇତ୍ୟାଦିର ନିର୍ଦ୍ଦିଷ୍ଟ ସଂଖ୍ୟା ଦିଆଯାଇ ନାହିଁ । ଗୀତାର "ଅନେକ-ବାହୂଦର ବକ୍ତ୍ରନେତ୍ର" ଇତ୍ୟାଦି ବିଶ୍ୱରୂପର ଅନୁରୂପ ।

---

**ପଞ୍ଚମ ଛାନ୍ଦ**

(ଏ ଛାନ୍ଦ ଆଦ୍ୟ ଯମକ)

୧ । ଅସୁମାନେ—ପ୍ରାଣମାନେ, ସଂସ୍କୃତରେ ପ୍ରାଣ ଶବ୍ଦ ବହୁବଚନ । ପଞ୍ଚପ୍ରାଣ ସର୍ବଜନବିଦିତ; ଯଥା—ପ୍ରାଣ, ଅପାନ, ସମାନ, ଉଦାନ ଓ ବ୍ୟାନ । ନିମ୍ନୋକ୍ତ ପ୍ରକାରେ ପ୍ରାଣୀ ଶରୀରରେ ଏମାନଙ୍କର ଅବସ୍ଥିତି ।

ହୃଦି ପ୍ରାଣୋ ଗୁଦେଽପାନଃ ସମାନୋ ନାଭିସଂସ୍ଥିତଃ
ଉଦାନଃ କଣ୍ଠଦେଶେ ସ୍ୟାତ୍ ବ୍ୟାନଃ ସର୍ବଶରୀରଗଃ ।

ଅଂଶୁକହୀନ—କିରଣ (ତେଜ) ରହିତ, କାନ୍ତିହୀନ, ନିସ୍ତେଜ । ଭୁହିନକର-ଚନ୍ଦ୍ର ।

ଅଙ୍ଗହୀନ ଶରେ ହୋଇ ଘାନ
ଅଗତରେ ବୋଲନ୍ତି ରେ ଧନ
ଅଗ ଅଗରେ ବସାଇ କାଟିଦେଲୁ—
ମୂଳ ମୂଳ କରି ମୋ ନିଧନ ରେ ଅଙ୍ଗନା । ୨ ।

ଅରବିନ୍ଦବଦନା ରମଣି
ଅରୁଦ୍ଧ କି ମୁଁ ଏଥିକି ପୁଣି
ଅରିଷ୍ଟ ପରି ପରିଣତେ କରି—
ଗତି କଲୁ କରି ନୃପମଣିରେ ଅଙ୍ଗନା । ୩ ।

ଅଧମ ମୁଁ ନ ମରିବ ମିତ
ଅଧରୁ ତୋ ପିଇଛୁ ଅମୃତ
ଅଧର୍ମିକୁ ଦର ନ କର ସୁନ୍ଦର
ଦରକଣ୍ଠି କଲୁ ଏତେ କୃତ୍ୟ ରେ ସୁନ୍ଦରି । ୪ ।

ଅନ୍ତ ନୁହଇ ତୋ ଭାବ ସଖି
ଅନ୍ତଃକରଣ ତହିଁକି ସାକ୍ଷୀ
ଅନ୍ତର ହୋଇବା ଜାଣିଥିଲେ ଅବା
ଆଣି ହୃଦୟରେ ଥାନ୍ତି ରଖି ରେ ସୁନ୍ଦରି । ୫ ।

ଅଖିଳରେ ତୋ ଶୋଭା ସମାନ
ଅକ୍ଷି ଦେଖି ନାହିଁ ପ୍ରାଣଧନ
ଅକ୍ଷୀଣନିତମ୍ବା ପୀନସ୍ତନୀ ରମ୍ଭା—
ଧନ୍ୟ ଧରଣୀ ଶିରମଣ୍ଡନ ରେ ସୁନ୍ଦରି । ୬ ।

ଅଙ୍କୁରିତ ଯଉବନେ ତୋତେ
ଅଙ୍କୁ ନ ଛାଡ଼ଇ ଅନୁବ୍ରତେ
ଅଙ୍କୁଶ ନ ଥିଲା ହସ୍ତୀ ପ୍ରାଏ ହେଲି
ଏବେ ମାର ମାରିବାକୁ ମୋତେ ରେ ସୁନ୍ଦରି । ୭ ।

---

୨ । ଅଙ୍ଗହୀନ-କାମ । ଅଗ-ନଗ ଅର୍ଥାତ୍ ବୃକ୍ଷ । ଅଗ୍ର ଅଗ-ଗଛର ଅଗ । ନିଧନ—ମୃତ୍ୟୁ । ୩ । ପରିଣତେ—ଶେଷରେ । କରିଗତି—ହସ୍ତୀ ପରି ମନ୍ଦମନ୍ଦ ଗମନ ଯେ କରେ । ୪ । ଦରକଣ୍ଠୀ-ଶଂଖକଣ୍ଠୀ ଅର୍ଥାତ୍ ଶଂଖପରି ଯାହାର କଣ୍ଠ ତିନି ରେଖାଯୁକ୍ତ । ୬ । ଅକ୍ଷୀଣ—ପୃଥୁଳ । ୭ । ଅଙ୍କୁରିତଯୌବନା—ମୁଗ୍ଧା ।

ଅନୁମାନ ତୋ ମନକୁ କରି
ଅନୁସରିଥାଇଁ ଗ୍ରାଇ ପରି
ଅନୁଗ୍ରହ ଯେତିକିରୂପେ କରିଥିଲୁ
ଅନୁତାପ ଦେଲୁ ସେହ୍ନପରି ରେ ସୁନ୍ଦର ! ୮ ।

ଅବଲୋକନ ତୋ ମୁଖ କଲେ
ଅବମାନ୍ଦ୍ର ପଦ ପଦତଳେ,
ଅବହେଳେ ଆସି ମିଳେ ମୃଦୁହାସି,
କାଣ୍ଡୀ ଝାସିଥିବା ଫଳ ଫଳେ ରେ ସୁନ୍ଦର ! ୯ ।

ଅପାର ମୁଁ ଦେଖିଅଛୁ ନାଥ
ଅପାଂନାଧି ଗୁଣେ ତୁ ଚତୁର !
ଅପାଙ୍ଗରେ ତୋର ଥିଲା ସ୍ୱର୍ଗପୁର
ଅଣିମାଦ୍ୱ ଅଧିକାର ଶିଶୁ ରେ ସୁନ୍ଦର ! ୧୦ ।

ଅପବର୍ଗଦାୟିନି ଜିତାନ୍ତେ
ଅପସର କରି ଦିନେ ମୋତେ
ଅପଘନ ମୁକ୍ତ କରିଦେଲୁ ଭକ୍ତ—
ଅମ୍ବୁଜାକ୍ଷେ ଗୃହୁଁ ଗୃରୁସିକ୍ତେ ରେ ସୁନ୍ଦର ! ୧୧ ।

ଅହଙ୍କାର କରି ଫୁଲକାଣ୍ଡ
ଅହର୍ନିଶି ହାଏ ନାନା ଦଣ୍ଡ
ଅହଲ୍ୟା ପଗ୍ରପୁ ହେଲା ପରକାପୁ
ସହି ! ହେଉ ଅଛୁ ଖଣ୍ଡ ଖଣ୍ଡ ରେ ସୁନ୍ଦର ! ୧୨ ।

ଅରପଣ ଅଣି ଶୁଝାଇଲା
ଅର ପର ଧନୁ ଏକା କଲା
ଅରିଷ୍ଟ ଚଢ଼ିଲା କାଳ ଜାଣି ଭଲ
ଶିରଷ୍ଟନ୍ଦ୍ର-କଳା ଅଗ୍ନି ହେଲା ରେ ସୁନ୍ଦର ! ୧୩ ।

---

୧୦ । ଅପାଂନାଧି—ସମୁଦ୍ର । ...... ୧୧ । ଅପବର୍ଗ—ଧର୍ମ, ଅର୍ଥ ମୋକ୍ଷ ଓ କାମ । ଅପସର—ଚକଅା । ଅପଘନ—ଦେହ । ଅମ୍ବୁଜାକ୍ଷେ—ପଦ୍ମସଦୃଶ ସୁନ୍ଦର ଆଖିରେ । ୧୨ । ଅହଲ୍ୟା ପଗ୍ରଏ-ପଥରପରି । ୧୩ । ଅରପଣ-ଶରପୂର୍ଣ୍ଣ । ଅର ପର-ଚନ୍ଦ ପରି, ଧନୁକୁ ଆକର୍ଷଣ କରିବାଦ୍ୱାରା ଚନ୍ଦପରି ବୃତ୍ତାକାର କରିବା ଶିର...ହେଲା-ବିରହ ହେତୁ ଶିରରେ ଥିବା ଚନ୍ଦ୍ର ମଧ୍ୟ ଅଗ୍ନି ପରି ତାପ ଦେଉଛି ।

ଅଧନ କି ନୋହିଲା ଦକ୍ଷର
ଅଧ ପ୍ରାଣ ମୋ କଲା ଅନ୍ତର
ଅନ୍ଧକ ବଇରୀ ହୋଇ ଏବେ ଧର—
ପାରୁ ନାହିଁ ନିଜ କଳେବରରେ ସୁନ୍ଦରି ! ୧୪ ।

ଅବ୍ଜାନନା ସୁଗୁଣ ଶତେ
ଅବସରେ ସେ ଚିନ୍ତା କରନ୍ତେ
ଅବଧି ପରି ଘୋଟିଲା କାମ-ତମ
ନାହିଁ ଅବଧି ତାହାର କେତେ; ଏ ସମୟେ । ୧୫ ।

ଅନ୍ଧକାର ଦିଶିଲା ସଂସାର
ଅଧୈର୍ଯ୍ୟ ହେଲେ ଅତି ଘୋର
ଅଧମଧ୍ୟସୁର-ପୁରେ ସେ ଠାକୁର
ଜାଣି ଧୈର୍ଯ୍ୟ ହେଲେ ହର; ସେ ଈଶ୍ୱର । ୧୬

ଅଚିନ୍ତିତ ଶକ୍ତି ଅଛି ଯାର
ଅଚଞ୍ଚଳ ହେଲେ ସେ ଈଶ୍ୱର
ଅଚିରେ ଭୁବନ ଧରକୁ ଗମନ
କଲେ ତପ କାର୍ଯ୍ୟ ତତଃପର; ସେ ଶଙ୍କର । ୧୭

ଅସାର ଏ ଦେଖିଲେ ସଂସାର
ଅଶାନ୍ତତା ଚିତ୍ତୁ କଲେ ଦୂର
ଅସାଧାରଣ ତପସ୍ୟା ଆରମ୍ଭିଲେ
ନାନା ସୁଖ ତେଜି ନିରାହାର; ସେ ଶଙ୍କର । ୧୮ ।

ଅଚଳରେ ବୁଧ-ସିଦ୍ଧସ୍ଥାନେ
ଅଚଳରେ ବସି ଯୋଗାସନେ
ଅଚକ୍ଷୁ-ନାସା-ଶ୍ରବଣ-ରୂପ ଗୁଣ
ସ୍ଥୂଳ ସୂକ୍ଷ୍ମ ଯେ ଆନନ୍ଦ ଧ୍ୟାନେ; ସେ ଶଙ୍କର । ୧୯ ।

---

୧୪ । ଅଧନ—ନିଧନ, ମୃତ୍ୟୁ । ଅଧପ୍ରାଣ—ଅର୍ଦ୍ଧାଙ୍ଗ ହେତୁରୁ ଅଧ ପ୍ରାଣ । ୧୫ ଅବ୍ଜମୁଖ-ଅବ୍ଜ ବା ଚନ୍ଦ୍ର ସଦୃଶ ଯାହାର ମୁଖ । ଅବଧି-ଅବ୍ଧି ବା ସମୁଦ୍ର । କାମତମ—କାମ ହେତୁକ ଅଜ୍ଞାନତା । ଅବଧି—ସୀମା । ୧୬ । ଅଧ ମଧ୍ୟ ସୁର-ପୁରେ-ପାତାଳ, ମର୍ତ୍ତ୍ୟ ଓ ସ୍ୱର୍ଗରେ । ୧୯ । ଅଚଳରେ-ପର୍ବତରେ । ଅଚଳରେ ନିଶ୍ଚଳରେ । ଅଚକ୍ଷୁ ଇତ୍ୟାଦି ଦ୍ୱାରା ବ୍ରହ୍ମାଙ୍କର ନିରାକାରତା ପ୍ରତିପାଦିତ ।

ଅପମାଣ ବଳଭଦ୍ର ମନ
ଅବଶ୍ୟ ତ ଜାଣନ୍ତି ଈଶାନ
ଅବଜ ପଦଦ୍ୱନ୍ଦ୍ୱ ବିନା ତାଙ୍କର
ମୋର ଶରଣ ତ ନାହିଁ ଆନ ହେ ଶଙ୍କର ! ୨୦ ।

---

# ଷଷ୍ଠ ଛାନ୍ଦ

## ହିମାଳୟ-ବର୍ଣ୍ଣନା ଓ ଅମ୍ବିକାନନ୍ଦ

ରାଗ—କୁମ୍ଭକାମୋଦୀ

ଅଥ ସୁମନେ ଶୁଣ ସୁମନେ ମାନସମୋଦକ-ରସ
ଅଲଗା ହୋଇ ଯାଉ ଜଳାଉ ଭବ-ଭବ-ଭୟ-କ୍ଳେଶ । ୧
ଅଚଳକୁଳ-ଅବନୀପାଳ ହିମବନ୍ତ-ନଗ ନାମ
ଅଛି ଉନ୍ନତ ଅପରିମିତ-ଆୟତନ ଅନୁପମ । ୨ ।
ଅନେକ ତରୁ-ଲତାରେ ଗୁଚ୍ଛ ନୟନ ଆନନ୍ଦକର
ଅଟଇ ପାତାଳ ସ୍ୱର୍ଗ ଭୂତଳ ଯେଣୁ ଶୋଭା ନାଗେଶ୍ୱର । ୩
ଅମର ଲତା ଚମ୍ପା ଶୋଭିତା ଉଚ୍ଚଶୃଙ୍ଗେ ସ୍ୱର୍ଗପୁର
ଅମୃତପୂର ମୀନ ମକରକେତନ ସ୍ଥାନ ସାଗର । ୪

---

## ଷଷ୍ଠ ଛାନ୍ଦ

୧ । ଭବ-ଭବ-ଭୟକ୍ଳେଶ—ଭବ (ସଂସାର)ରେ ଭବ (ଜନ୍ମ) ହେଲେ ଯେଉଁ ଭୟ ଓ କଷ୍ଟ ହୁଏ ।

୨ । ଅଚଳକୁଳ—ଅବନୀପାଳ—ପର୍ବତମାନଙ୍କର ରାଜା । ହିମବନ୍ତ ନଗ—ହିମାଳୟ ପର୍ବତ ।

୩ । ନାଗେଶ୍ୱର—ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ତିନି ପୁର ସଙ୍ଗେ ହିମାଳୟର ତୁଳନା କରାଯାଇଅଛି । ପାତାଳରେ 'ନାଗେଶ୍ୱର' ବାସୁକି, ସ୍ୱର୍ଗରେ ନାଗେଶ୍ୱର ବା ନାଗ (ହସ୍ତୀ) ଈଶ୍ୱର ଐରାବତ ଓ ମର୍ତ୍ତ୍ୟରେ 'ନାଗେଶ୍ୱର' ବୃକ୍ଷ ଥାନ୍ତି ।

୪ । ହିମାଳୟ ପକ୍ଷେ—ଅମର ଲତା—ଯେଉଁ ଲତା ମରେ ନାହିଁ ବା ଯାହା ବ୍ୟବହାରରେ ଲୋକେ ଅମର ହୁଅନ୍ତି । ବନୌଷଧି ବିଶେଷ ।

ଅଶୋକ କେଳି-ନୀପ ପାଟଳୀ କରବୀର କଣିଅର
ଅମିତ ମଲ୍ଲୀ କୁନ୍ଦ ମାଧବୀ ପାରିଜାତକ ତଗର । ୫ ।
ଅର୍ଜୁନ ଶାଳ ଧବ ତମାଳ ଖଦିର କପିତ୍ଥ ବେଲ
ଅସନ ନିମ୍ବ ଜମ୍ବୁ କଦମ୍ବ କଟମଙ୍ଗା ପିଆଶାଳ । ୬ ।
ଅପୈଁଳା ନାଗରଙ୍ଗ ପୂନାଙ୍ଗ କମଳା କରୁଣା ଟାଳ
ଅଛି ହେନ୍ତାଳ ଜମ୍ବୀର ଜାଳ ଲେମ୍ବୁ ପନସ ରସାଳ । ୭
ଅମ୍ବକ ଦାରୁ ବଦାମ ତରୁ ଲଳିତ ଲବଙ୍ଗ ଲତା ।
ଅଳାଇଚର ତରୁ ଅପାର ଜାତି ଫଳ ଅଗଣିତା । ୮ ।
ଅନେଶ ଯହିଁ ଅଛନ୍ତି ରହି ଷଡ଼ରତୁ ଏକମେଳେ
ଅଳି ଝଙ୍କାର କୋକିଳଗିର ଶୁକସାରୀ କୁତୁହଳେ । ୯
ଅନଙ୍ଗରସ ଅଛି ବିଶେଷ ମୂର୍ତ୍ତିବନ୍ତ ହୋଇ ଯହିଁ
ଅଙ୍ଗନା-ଲଜ ପୁରୁଷ ଧୈର୍ଯ୍ୟ ଗୃହୁଁ ଗୃହୁଁ ହୋଏ ଦହି । ୧୦ ।
ଅଷ୍ଟାଙ୍ଗ ଯୋଗ ଅତନୁଭୋଗ ଅଷ୍ଟସାଧନ ମୁକତି
ଅଟେ ଯା ମନ ଯହିଁ ମଗନ ଲଭଇ ସେ ସେହି ମତି । ୧୧ ।
ଅପରିମିତ ଗୁଣ ପର୍ବତ ଅଛି ପୁଣି ଦିବ୍ୟ ମୂର୍ତ୍ତି
ଅଟେ ଅଙ୍ଗନା ତାହାର ମେନା ସୁନ୍ଦରୀ ଗୁଣବନ୍ତୀ । ୧୨ ।
ଅଞ୍ଜନକେଶୀ ଖଞ୍ଜନଦୃଶୀ କୁନ୍ଦନନ୍ଦନ ଗୋରୀ
ଅରି-ନିତମ୍ବା ପ୍ରବାଳବିମ୍ବ ଧରୀ ପୀନପୟୋଧରୀ । ୧୩ ।
ଅନଙ୍ଗରସେ କାନ୍ତ ସଙ୍ଗେ ସେ ରସି ହରେ ଦିନରାତି
ଅମୃତାସନ ଯୋଗେ ପ୍ରସନ୍ନ-ମୁଖୀ ହେଲା ଗର୍ଭବତୀ । ୧୪ ।

---

ସ୍ୱର୍ଗ ପକ୍ଷେ—ଅମର ଲତା—କଳ୍ପଲତା । ରମ୍ଭା—ଅପ୍ସରା ।

ହିମାଳୟ ପକ୍ଷେ—ଅମୃତପୁର—ଦେବତାମାନଙ୍କ ଗୃହ । ମୀନମକର କେତନ—କନ୍ଦର୍ପର ସ୍ଥାନ ।

ସାଗର ପକ୍ଷେ—ଅମୃତପୂର—ଜଳପ୍ରବାହ । ମୀନମକରକେତନ—ମାଛ ଓ ମଗରମାନଙ୍କ ଅବସ୍ଥାନ ।

୮ । ବଦାମ ତରୁ—ପିଜୁଳି ଗଛ । କେନ୍ଦୁଝରରେ ପିଜୁଳିକୁ ବଦାମ ବୋଲି ଅଦ୍ୟାପି ଲୋକେ କହୁଥାନ୍ତି । କୁନ୍ଦନନ୍ଦନଗୋରୀ—ସ୍ୱର୍ଣ୍ଣକାନ୍ତିଜିଣା ଗୌରାଙ୍ଗୀ । ଅରିନିତମ୍ବା—ଯାହାର ନିତମ୍ବ ଦେଶ ଚକ୍ରାକାର ।

୧୪ । ଅମୃତାସନ ଯୋଗେ—ଦୈବଯୋଗେ ।

ଅଳସ ତନୁ ବଦନକୁ ଦନୁ ଚିତ୍ତରେ ସେ ହେଲା କ୍ଷୀଣ
ଅର୍ଦ୍ଧ ଚନ୍ଦ୍ରମା ପରିଏ ବାମା ଦିଶିଲା ପାଣ୍ଡୁର ବର୍ଣ୍ଣ । ୧୫ ।

ଅମ୍ଳିଳ *ରସ ଦ୍ରବ୍ୟେ ଆବେଶ ହୋଇ ଖାଏ ଇଛି ଇଛି
ଅପସରରେ ଆଉଜିବାରେ ବିନା ନ ପାରଇ ବସି । ୧୬ ।

ଅନ୍ତକେ ଚିତ୍ତ ପ୍ରବେଶେ ଅତି କଷ୍ଟରେ ହୁଅଇ ଉଭା
ଅଗ୍ରକୁ ସ୍ଥୂଳ ଭାବେ ମଞ୍ଜୁଳ ଉଦର ଦିଶଇ ଶୋଭା । ୧୭ ।

ଅର୍ଦ୍ଧକୁ ଅର୍ଦ୍ଧ ଅତି ଦୁର୍ବଦ୍ଧ ହେଲା ସେ ରମଣୀ କାଏ
ଅଷ୍ଟମ ବେଳ ମାସେ କାମିନୀ ଜାତକଲା ଦୁହିତାଏ । ୧୮ ।

ଅମୃତ କାଳ ଗ୍ରହ ସକଳ ଉଚ୍ଚତନ୍ତ୍ର ଉଚ୍ଚ ହୋଇ
ଅଷ୍ଟାଙ୍ଗବର୍ଗ-ସାଧନେ ଯୋଗ ସର୍ବ ଶୁଭ ଅଛି ତହିଁ । ୧୯ ।

ଅଚଳଚୂଳଗୃହୀ ଉଜ୍ଜ୍ୱଳ ବ୍ରହ୍ମଜାତିହୀର ବାମା
ଅଚଳ-କୋଳ-ସରଃ-କମଳ ଅଖିଳ ଆନନ୍ଦ ସୀମା । ୨୦ ।

ଅବଜାସନ ତିନିଭୁବନ-ଶୋଭାମାନ ଛାଣ୍ଟିଆଣି
ଅବା ନିର୍ମାଣ କଲା ହରିଣଧର-ଶିର-ମୋହ-ମଣି । ୨୧ ।

ଅଖିଳଆଖି ଚଞ୍ଚଳ ପକ୍ଷୀ ବାନ୍ଧିବାକୁ ମୋହ ପାଶ
ଅଥବା ଲୋକ-ଧୃତି-ବିବେକ-ଗିରି ଅଶନି ପ୍ରକାଶ । ୨୨ ।

ଅବା ବିହାର ହୀରକସାର ଟେକଳରତନପିତୁଳୀ
ଅମରପୁର ଶୋଭାଭଣ୍ଡାର ମହାର୍ଘ ଅଇଲା ଚଳି । ୨୩ ।

ଅନଙ୍ଗ ଶିବଦେବ ଜିଣିବ କଲା ଏ ବାଣ ନିର୍ମାଣ
ଅବନୀ ତମଃ ନାଶେ ଉତ୍ତମ ଦୀପ କି ଦେଲା ଦ୍ରୁହିଣ । ୨୪ ।

---

୧୯ । ଅଷ୍ଟାଙ୍ଗ ବର୍ଗ— ଅଷ୍ଟବର୍ଗ ଜ୍ୟୋତିଃଶାସ୍ତ୍ର ପ୍ରସିଦ୍ଧ ।

୨୧ । ହରିଣଧରଶିରମୋହମଣି—ହରିଣ ଧର (ଶଶାଙ୍କ ବା ଚନ୍ଦ୍ର) ଯାହାଙ୍କ ଶିରରେ ଅର୍ଥାତ୍ ଶିବ । ତାଙ୍କ ମୋହ (ମନ ଭୁଲାଇବା) ପାଇଁ ମଣିସ୍ୱରୂପା । ଅଖିଳ-ଲୋକ-ଧୃତିବିବେକ-ଗିରି ଅଶନି—ଜଗତର ଲୋକମାନଙ୍କର ଧୈର୍ଯ୍ୟ ଓ ବିବେକ ରୂପକ ପର୍ବତକୁ ନାଶ କରିବା ପାଇଁ ବଜ୍ର ସଦୃଶ ।

୨୩ । ବିହାର—ବିଧାତାର । ୨୪ । ଦ୍ରୁହିଣ—ବ୍ରହ୍ମା ।

* ଅଳପ ରସ [ଖ]

ଅବଜ-ଶୋଭା ନାଶି ଏ ଅବା ଅକଳଙ୍କ ଶଶୀ ଉଦେ
ଅବା କେଳବ୍ଧ ରମ୍ଭାବ୍ଦ କାନ୍ତ ଖଣ୍ଡି ଏ ଜନ୍ମିଲ୍ଦ ବାଦେ । ୨୫ ।
ଅନେକ ଦାନ-ପୁଣ୍ୟ ବିଧାନ କରି ବ୍ରିମବନ୍ତ ରାଏ
ଅବଲୋକନ କରି ବଦନ ନାଭି-ଛେଦନ କରାଏ । ୨୬ ।
ଅନନ୍ତ ଗ୍ରନ୍ଥେ ବର୍ଣ୍ଣିବା ମତେ ବାଳିକା-ବାଳକ-ଲୀଳା
ଅବନୀପାଳ ଭଞ୍ଜାଣ ନୀଳକଣ୍ଠ ଉବନଭାବେଲା । ୨୭ ।

---

# ସପ୍ତମ ଛାନ୍ଦ

## ବାଳଲୀଳା ବର୍ଣ୍ଣନ

ରାଗ – ରାମକେରୀ

ଅତି ଶୁଦ୍ଧମନେ ସୁଜନେ ଶୁଣ କୁତୁକ ରସ
ଅଚଳ-ଦୁଲଳୀ ବଢ଼ନ୍ତି ଦିବସକୁ ଦିବସ । ୧ ।
ଅନୁରୂପେ ଯଥାକାଳରେ କଲେ ନାମକରଣ
ଅତୁଲ୍ୟ ଅଙ୍ଗରେ ଖଞ୍ଜିଲେ ନାନା ଭୂଷଣମାନ । ୨ ।
ଅଢ଼ାଇ ମାସ ସମ୍ପୂର୍ଣ୍ଣରେ ପାଦ କର ସିଞ୍ଚାଡ଼ି
ଅଂଶୁକ ନ ରଖନ୍ତି ଦେହେ ପୁଣି ଲେଉଟି ପଡ଼ି । ୩ ।
ଅମ୍ବା ଅମ୍ବା ରବ କରନ୍ତେ ଉଚ୍ଚସ୍ୱରେ ରୋଦନ
ଅଙ୍କେ ଧରି ମାଏ କହନ୍ତି ଆହା ମୋ' ପ୍ରାଣଧନ । ୪ ।
ଅଣିଆଇଁ ଧରି ଜନନୀ କୋଳେ ଥାଇ ଶୁଆଇ
ଅଳପହିଁ ଅଙ୍ଗ ଟଳିଲେ ଉଠନ୍ତି ସେ ଚାଆଁଇ । ୫ ।

---

୨୫ । କେଳବ୍ଧ—ରମ୍ଭା, କାମସ୍ତ୍ରୀ ।

---

**ସପ୍ତମ ଛାନ୍ଦ**

୩ । ଅଂଶୁକ—ଲୁଗା ।

ଅଗୁଣ-ପଦାର୍ଥ ଦେଖାଉଥିଲେ ଅଙ୍କ ରହସେ
ଅଙ୍ଗୁଳି କର ଗୃହ ଚାଞ୍ଚଲେ ଖେଳୁଥାନ୍ତି ଭଲ ହସେ । ୬ ।
ଅଙ୍ଗୁଷ୍ଠ ଅଙ୍ଗୁଳି ଚପଦର କରୁଥାନ୍ତି ଅଦନ
ଅଜାଗେ ସ୍ଖଳନ ହୁଅନ୍ତେ ଜଣନ୍ତି ଯେ ବେଦନ । ୭ ।
ଅପସରକୁ ଆଉଜାଇ ଦେଇଥାନ୍ତି ବସାଇ
ଅଗ୍ରେ କଟକି କରେ କହ୍ଣ କର କର ହଲାଇ । ୮ ।
ଅଧିକରଷ ପରବେଶ ଆସି ଯହୁଁ ହୋଇଲା
ଅଣ୍ଟା ଢେର ରଖି ବସିବା ହୋଇ ବଳ ପାଇଲା । ୯ ।
ଅବମରେ ଜନଙ୍କ ଉରକୁ ଦେଇ ଝୁଲୁଥାଆନ୍ତି
ଅଳପ ଅଳପ ଆଗକୁ କ୍ରମେ କ୍ରମେ ଯାଆନ୍ତି । ୧୦ ।
ଅଷ୍ଟମ ମାସ ସମ୍ପୂର୍ଣ୍ଣରେ ହେଲେ ଅଳପ ଉଭା
ଅନଙ୍ଗ କୁଟ୍ଟଣୀ ପ୍ରତିମା ପର ଦିଶନ୍ତି ଶୋଭା । ୧୧ ।
ଅବଲମ୍ବ ଧାତ୍ରୀ କରକୁ କରି ଚାଳନ୍ତି ପାଦ
ଅତି ରହସରେ ନାଚନ୍ତି ଜରେ କଙ୍କିଣୀ ନାଦ । ୧୨ ।
ଅଙ୍କେ ବସି କେଉଁ ଧଣ୍ଡର ଲଭି ମହାଆନନ୍ଦ
ଅଙ୍ଗୁଳି ଚାଳି ଆ ଆ ବୋଲି ଡାକୁଥାଆନ୍ତି ଚାନ୍ଦ । ୧୩ ।
ଅବ୍ଦହିଁ ଆସି କ୍ରମେ ସେ କହୁଁ କହୁଁ ପୂରିଲା
ଅନ୍ନପ୍ରାଶନ ବିଧି ଯଥାବିଧାନରେ ସରିଲା । ୧୪ ।
ଅଣ୍ଡୀର କୋକନ ବଳକୁ ଜିଣି ଦରବୋଲି କଥା
ଅଣୁଏ ନାହିଁ ଏ ମାଧୂର୍ଯ୍ୟପୀୟୂଷରେ ସର୍ବଥା । ୧୫ ।
ଅର୍ଥ ନ ଥାଇ ସେ କଥାରେ ଥାଏ ବଶୀକରଣ
ଅଳପହିଁ କର୍ଣ୍ଣେ ପଡ଼ିଲେ ନ ଚଳଇ ଚରଣ । ୧୬ ।
ଅଢ଼ାଇ ବରଷେ ବାଳକା କର୍ଣ୍ଣଭେଦ ବଢ଼ିଲା
ଅନାଇ ସେ ଛବି କବିଙ୍କ ଦୃଷ୍ଟି ସୃଷ୍ଟି ବୁଡ଼ିଲା । ୧୭ ।
ଅନୁକ୍ରମେ ପାଞ୍ଚ ବରଷ ଆଳୀ ସଙ୍ଗରେ ମିଳି
ଅଗାର ଭୋଳ ନାନା ରଙ୍ଗେ ଖେଳୁଥାଆନ୍ତି ଧୂଳି । ୧୮ ।

---

୭ । ଅଙ୍ଗୁଷ୍ଠ...ଆନନ୍ଦ—ଗୋଡ ବୁଢ଼ା ଅଙ୍ଗୁଳିକୁ ପାଟିରେ ପୁରାଉଥାନ୍ତି । ଅଜାଗେ—ଅଜାଣତରେ । ୧୨ । ଧାତ୍ରୀ—ଧାଈ । ୧୪ । ଅବ୍ଦ—ଅବ୍ଦ ବା ବର୍ଷ । ୧୫ । ପୀୟୂଷ—ଅମୃତ । ୧୮ । ଅଗାର—ଘର ।

ଅନ୍ନ-ବ୍ୟଞ୍ଜନାଦ୍ୟ ରନ୍ଧନ ଚର୍ଚ୍ଚାଁ କର କଳ୍ପନା
ଅଶନ ତା ମିଛ କରନ୍ତି ପୁଣି ପଦ୍ମଲପନା । ୧୯ ।
ଅର୍ଣ୍ଣିର ମାଙ୍କ କର୍ଣ୍ଣାଙ୍କ ଶବ୍ଦ କରୁଥାଅନ୍ତି
ଅନ୍ତରେ ତାଙ୍କ କଉତୁକ ଯେନେ ସୁଖ ପାଆନ୍ତି । ୨୦ ।
ଅଇଲା ସଙ୍ଗୀତ ସାହିତ୍ୟ-ପାଠ ପଠନ ମାନେ
ଅକ୍ଷି ତାଙ୍କର ନ ଗମିଲା କେଉଁ ଶବ୍ଦ ଛଟଟେ । ୨୧ ।
ଅଷ୍ଟମ ବରଷେ ସମ୍ପୂର୍ଣ୍ଣ ଶୋଭା କନ୍ତି ନୋହିଲା
ଅବା ସେ ଶିବ ସ୍ୱନାଶିବା ବଧି ବହ୍ନି ବହ୍ନିଲା । ୨୨ ।
ଅଖିଳ ଲାବଣ୍ୟ ବୀଜକୁ କାମ ରୋପି ସେ ଥିଲା ।
ଅଙ୍କୁରିତ ହୋଇ କ୍ରମେ ସେ ଏବେ କାଳେ ବଢ଼ିଲା । ୨୩ ।
ଅଳପ ଦିନେ ପୁଷ୍ପବନ୍ତ ହୋଇବ ଏ ବ୍ରତତି
ଅନେକ-ମସ୍ତକ-ମଣ୍ଡନ ହୋଇ ହରିବ ମତି । ୨୪ ।
ଅଦ୍ଭୁତ ଅତନୁରସଧି ବାଳା ଏ ନୋହେ ଛଳ
ଅଲଙ୍ଘ୍ୟ ବଢ଼ି ବୁଡ଼ାଇବ ମହାଯୋଗୀନ୍ଦ୍ର କୁଳ । ୨୫ ।
ଅତି ଚଞ୍ଚଳେ ଖେଳି ଝସଗଣ କଲେଣି ରଙ୍ଗେ
ଅକ୍ଷି ଲାବଣ୍ୟ ଜଳରାଶି ମିଶି ଆସେ ତରଙ୍ଗେ । ୨୬ ।
ଅଧିକୁଁ ଅଧିକ ହେଉଛି ଶୋଭା ଲହରୀବଳ
ଅପୂର୍ବ ଭୂମି ପ୍ରକାଶଇ ପୁଳିନହିଁ ମଞ୍ଜୁଳ । ୨୭ ।
ଅକଳଙ୍କ ପୂର୍ଣ୍ଣଚନ୍ଦ୍ରମା ଉଦେ ଦ୍ୟୁତି ପ୍ରକାଶେ
ଅଇରାବତ ଜନ୍ମିବ ତା କୁମ୍ଭ ସଂସ୍ଥ ତ ଦିଶେ । ୨୮ ।

---

୧୯ । ପଦ୍ମଲପନା—ପଦ୍ମମୁଖୀ । ୨୪ । ବ୍ରତତି—ଲତା । ୨୫ । ଅତନୁ ରସଧି-କନ୍ଦର୍ପ (ଶୃଙ୍ଗାର ରସ) ଆଧାର ବା ଶୃଙ୍ଗାର ସମୁଦ୍ର ଉଚ୍ଛୁଳିଲେ ଯୋଗୀନ୍ଦ୍ର କୁଳ (ଯୋଗୀସମୂହ ରୂପକ କୂଳ) ବୁଡ଼ାଇବ । ୨୬ । ଚକ୍ଷୁର ଗତିକୁ ଏଠାରେ ଝସ (ମୀନ)ର ଗତି ସହିତ ତୁଳନା କରାଯାଇଅଛି । 'ପୁଳିନ' (କୂଳ) ପଦରେ ଜଘନକୁ ଲକ୍ଷ୍ୟ କରାଯାଇଅଛି । ସମୁଦ୍ରରୁ ଚନ୍ଦ୍ର ଜନ୍ମେ । ଏ ଶୃଙ୍ଗାର ସମୁଦ୍ରରୁ ମୁଖରୂପ ଅକଳଙ୍କ ଚନ୍ଦ୍ର ଉଇଁ ଆସୁଛି । ସମୁଦ୍ରରୁ ଐରାବତ ଜାତ, ଏ ଶୃଙ୍ଗାର ସମୁଦ୍ରରୁ ଐରାବତ ଉଇଁ ଆସୁଛି । ବର୍ତ୍ତମାନ ତାହାର କୁମ୍ଭର (ସ୍ତନ) ଚିହ୍ନ ଦିଶିଆସୁଛି ।

ଅନୂନ ହୀରା ମରକତ ମୁକ୍ତା ବିଦ୍ରୁମ ଝଳା
ଅପାର ଜାତ କରେ ଅଙ୍ଗୁ ଯୌବନ ବାଳା । ୨୯ ।
ଅନଙ୍ଗ ସାଧୁତ ଏ ସିନ୍ଧୁରେ ସେ ବାଣିଜ୍ୟ କର
ଅପ୍ରମିତ ସୁଖବଳେ ସେ ଜାଣିବ ଏ ଇପ୍ସିତ । ୩୦ ।

## ପ୍ରଶ୍ନୋତ୍ତର ଅନ୍ତଲାପିକା

ଅନନ୍ତ କେ ଖରେ ନ ଜାଣ ହନୁ ଜାତିରେ କସ
ଅଟଇ କ ରମଣୀ ବାମା ତିଳନାସା ସଦୃଶ । ୩୧ ।
ଅଙ୍ଗନାମାନଙ୍କ ମାନସ ରସି କେତି ତୋଷନ୍ତ
ଅଟେ କେ କ କଳା କେଶୀର ପର ଠାକୁର ଶାନ୍ତ । ୩୨ ।
ଅଛନ୍ତି କାହିଁ ପୂର୍ଣ୍ଣଚନ୍ଦ୍ର କାନ୍ତ ଶ୍ରୀ ବଦ ନରେ
ଅହର୍ନିଶି କେ କର ଗତି ପତି ମତିକ ଧରେ । ୩୩ ।
ଅନାଶେ କ କହିଲେ ହୋଏ କାଳଦଣ୍ଡ ବାରଣ
ଅବନୀପାଳ ବଳଭଦ୍ରର କେବଳ ଶରଣ । ୩୪ ।
ଅଜ ହର ଭାରତି କାନ୍ତ କୃଷ୍ଣ' ରାମ ମୁଖରେ
ଅମ୍ବୁଜବାସୀ ବରଧୀରେ ଏହା ଘେନ ମୁଖରେ । ୩୫ ।

———

୨୯ । ହୀରା ପଦରେ ନଖ ବା ହସ, ମର୍କତ ପଦରେ କେଶ, ମୁକ୍ତା ପଦରେ ଦନ୍ତ ଓ ବିଦ୍ରୁମ ପଦରେ ଅଧରକୁ ଲକ୍ଷ୍ୟ କରାଯାଇଅଛି । ଯୌବନ ଆଗମରେ ଏହି ଅଙ୍ଗମାନେ ଉଜ୍ଜ୍ୱଳ ହୁଅନ୍ତି । ୩୦ । ଅନଙ୍ଗସାଧୁତ-କାମରୂପକ ସଉଦାଗର । ୩୧ । ପ୍ରଶ୍ନ—ଅନନ୍ତ କେ ? ଉତ୍ତର—(ଆକାଶ) ପ୍ରଶ୍ନ—ହନୁ ଜାତିରେ କସ (କଣ) ? ଉତ୍ତର—କୀଶ—ମର୍କଟ । ପ୍ରଶ୍ନ—କ (କଣ) ବାମା (ସ୍ତ୍ରୀ)ର ତିଳନାସା—ତିଳଫୁଲ ସଦୃଶ ନାକର ସଦୃଶ (ତୁଲ୍ୟ) ଅଟେ ? ଉତ୍ତର—କୀରମଣି—(ଶୁକଶ୍ରେଷ୍ଠ) ୩୨ । ପ୍ରଶ୍ନ-ଅଙ୍ଗନାମାନଙ୍କ (ସ୍ତ୍ରୀମାନଙ୍କର) ମାନସ (ମନ) କେ (କେଉଁ-ମାନେ)ରସି (ଅନୁରକ୍ତ ହୋଇ) ତୋଷନ୍ତ (ସନ୍ତୁଷ୍ଟ କରନ୍ତି) ? ଉତ୍ତର—ରସିକେତି—ରସିକମାନେହିଁ । ପ୍ରଶ୍ନ--କେ କଳା ଅଟେ କ ? ଉତ୍ତର--କେକୀ (ମୟୂର) ପ୍ରଶ୍ନ—କେ (କେଉଁ) ଠାକୁର (ଦେବତା) ଶିର ପର (ମସ୍ତକ ଉପରେ) ଅର୍ଥାତ୍—ଶ୍ରେଷ୍ଠ ? ଉତ୍ତର—କେଶୀର (କେଶୀ ନାମକ ଅସୁରର) ପର (ଶତ୍ରୁ) ଅର୍ଥାତ୍ କୃଷ୍ଣ, ପ୍ରଶ୍ନ—କାହିଁ (କେଉଁଠାରେ) ପୂର୍ଣ୍ଣଚନ୍ଦ୍ର କାନ୍ତ—(ପୂର୍ଣ୍ଣିମା ଜହ୍ନ କିରଣ) ଶ୍ରୀ (ଶୋଭା) ଅଛି, ହେ ନରେ (ନରମାନେ) ବଦ (କୁହ) ଉତ୍ତର--ବଦନରେ (ମୁଖରେ) । ୩୩ । ଦିବସ ତଥା ରାତି କେ (କିଏ) ଗତି କରି ମତିରମତିକୁ ହରେ । ଉତ୍ତର—କରିଗତି-ଗଜଗମନା । ଅବନୀପାଳ—ରାଜା । ବଳଭଦ୍ରର କେବଳ ଶରଣ କେ ? ଉତ୍ତର—ହଳ ।

# ଅଷ୍ଟମ ଛାନ୍ଦ

## ବୟଃସନ୍ଧି ଓ ଋତୁ କର୍ମବିଧି

ରାଗ-ମୁଖାରୀ

ଅଷ୍ଟରସମସ୍ତ ରସିକ-ନିଚୟ ଶୁଣ ଦେଇ ମନ ହେ
ଅମ୍ବିକା ତାରୁଣ୍ୟ ପ୍ରବେଶ ହୁଅନ୍ତେ ହେଲେ କି ଶୋଭନ ହେ । ୧
ଅବନୀର-ସୁରପୁର-ପଟାନ୍ତର ହୋଇ ନାହିଁ କିଛି ଯେ
ଅଖିଳ ଲାବଣ୍ୟରାଶି ଆସି ମିଶି କି ଠୁଳ ହେଉଛି ଯେ । ୨
ଅଙ୍କୁରିତ ହୋଇବାରୁ ସ୍ତନଦୁଇ କି ଶୋଭା ଦିଶଇ ଯେ
ଅଙ୍ଗ-ସରସୀରେ ସରସିଜ କଢ଼ି ଧରିକି ଆସଇ ଯେ । ୩
ଅପୂର୍ବ ବାଟୁଳି ହରିତାଳେ ଦଳି ବଳିଛି ମଦନ ଯେ
ଅଖିଳ ଅକ୍ଷି-ପକ୍ଷୀକି ମାରିବାକୁ କରି ଅଛି ମନ ଯେ । ୪
ଅମଳ ହେମ କୋମଳ ଲତାଜାଳ ଫୁଟିବାକୁ ହେଲା ଯେ
ଅନୁମାନ ହୋଏ ତାର ସ୍ତବକ ଏ ଆଗ ପ୍ରକାଶିଲା ଯେ । ୫
ଅସମ ହେମ କମ-ସମ-ସୁଷମ ଶ୍ରୀଅଙ୍ଗ ହୋଇଛି ଯେ
ଅତନୁ ବିନ୍ଧାଣି ରସାଣି ତା ଗୁରୁ ରତ୍ନ ବସାଇଛି ଯେ । ୬
ଅବା ରୋମାବଳୀ ଲତାଫଳ ଫଳୁଅଛି ଆଭାସଇ ଯେ
ଅଛି ହୃଦସ୍ଥଳେ ନାସା ଗଜମୋତି କି ପ୍ରତିବିମ୍ବଇ ଯେ । ୭

---

### ଅଷ୍ଟମ ଛାନ୍ଦ

୧ । ନିଚୟ-ସମୂହ । ତାରୁଣ୍ୟ-ଯୌବନ । ୨ । ଅବନୀର ସୁରପୁର-ପାତାଳ, ମର୍ତ୍ତ୍ୟ ଓ ସ୍ୱର୍ଗପୁର । ୩ । ଅଙ୍ଗସରସୀରେ-ଦେହରୂପ ପୁଷ୍କରିଣୀରେ । ସରସିଜ—ପଦ୍ମ । ୪ । ଅଖିଳ-ଅକ୍ଷିପକ୍ଷୀ-ସମସ୍ତଙ୍କର ଚକ୍ଷୁରୂପ ଚଢ଼େଇ । ୫ । ହେମ-ସୁନା । ସ୍ତବକ—କଢ଼ି । ୬ । ଅସମହେମ କମ ସୁଷମ-ଉତ୍କୃଷ୍ଟ ସୁନା ତିଆରି ଅଳଙ୍କାର ବିଶେଷ ପରି ସୁନ୍ଦର । ରସାଣି—ପାଲିସ୍ କରି । ୭ । ଆଭାସଇ-ଜଣାପଡ଼ୁଛି ।

ଅଭିଷେକ ହୋଇ ନାମ ରାଜା ହେବ ଶ୍ରୀଅଙ୍ଗଦେଶରେ ଯେ
ଅନୁକୂଳ ଗ୍ରହ ଦୁଇ ଥୋଇଛନ୍ତି କି ମଙ୍ଗଳ ଆଶାରେ ଯେ । ୮
ଅଗ୍ରେ କୌମାର ସଚିବକୁ ବଶ୍ୟରେ ପଠାଇଥିଲା ଯେ
ଅନ୍ୟାୟ ନ୍ୟାୟ ସେ ବିମର୍ଶ ନ ଦେଖି ସକଳ ବୁଝିଲା ଯେ । ୯
ଅଟାଳ ମଧ୍ୟମ ପୃଥୁଳତା ଭାଙ୍ଗିଦିଏ ଶୀର୍ଣ୍ଣ କରି ଯେ
ଅଙ୍ଘ୍ରିତଳେ ଯେ ମନ୍ଦତାକୁ ଟେକିଛି ବଶ୍ୟର ବଶ୍ୟର ଯେ । ୧୦
ଅକ୍ଷିତୁରଙ୍ଗ-ତରଙ୍ଗଗତି ଦେଖି ବିବେଚନା କଲା ଯେ
ଅପାଙ୍ଗଠାରୁ କର୍ଣ୍ଣଯାଏ ତାଦାଣ୍ଡି ଦାଣ କରିଦେଲା ଯେ । ୧୧
ଅଧର ବୋଲି ତାଠାରେ ହାସ ସତ୍ତ୍ୱମାତ୍ରକ ଥୋଇଛନ୍ତି ଯେ
ଅତିସୁଖେ କର ଦେବାକୁ ସେ ଉରଜକୁ ବଢ଼ାଇଛନ୍ତି ଯେ । ୧୨
ଅତନୁ ଆସି ରାଜା ହୋଇ ବସିବ ଜାନୁସିଂହାସନେ ଯେ
ଅତି ସଘନେ ଏଣୁ ତା' ସଜାଉଛନ୍ତି ଅତ୍ୟନ୍ତ ଯତନେ ଯେ । ୧୩
ଅନୁରୂପ କରି କୌମାର-ସଚିବ ପାଳିଲା ଅବନୀ ଯେ
ଅଛି ସଙ୍ଗେ ସଙ୍ଗ ଲଜ୍ଜା ବିବେକ ଏ ବେନି ସେନା ଘେନି ଯେ । ୧୪
ଅମୃତ ଯୋଗରେ ଆସି ସେ ନଗରେ ବିଜେ ମାରି ନୃପ ଯେ
ଅମାନ ଅଇରି ଗୁମାନକୁ ମାରି ଦେବ ତା ପ୍ରତାପ ଯେ । ୧୫
ଅର୍କ୍କ ନପକ୍ଷ ଜୀବବାର ଦଶମୀ ଗୁରୁ ପୂର୍ଣ୍ଣଯୁକ୍ତ ଯେ
ଅର୍କ ଉଦୟାଦ୍ୟ ନବଘଡ଼ି ବୁଧ-ବେଳା ଉପଗତେ ଯେ । ୧୬

---

୯ । କୌମାର—ଯୌବନର ପୂର୍ବ ଅବସ୍ଥା । ବଶ୍ୟରେ—ବଶ୍ୟ କରିବା ପାଇଁ । ୧୦ । ମଧ୍ୟମ ପୃଥୁଳତା—କଟିଭାଗର ମୋଟା । ଶୀର୍ଣ୍ଣ—ସରୁ । ଅଙ୍ଘ୍ରିତଳେ-ପାଦତଳେ । ମନ୍ଦତା—ଧୀରତା ୧୧ । ଅକ୍ଷି···ଦେଲା-ଚକ୍ଷୁ ରୂପ ଅଶ୍ୱର ତରଙ୍ଗ ପରି ଚଞ୍ଚଳ ଗତିକୁ ଦେଖି (ଅପାଙ୍ଗ) ନେତ୍ରପ୍ରାନ୍ତଠାରୁ କର୍ଣ୍ଣଯାଏ ତାର ଦାଣ୍ଡି ଦେବାର ବ୍ୟବସ୍ଥା ନିର୍ଦ୍ଦେଶ କରିଦେଲା । ଯୌବନ କାଳରେ ଚକ୍ଷୁ ଚଞ୍ଚଳ ହୋଇ ତେରଛା ଭାବରେ କର୍ଣ୍ଣ ପର୍ଯ୍ୟନ୍ତ ଗତି କରିଥାଏ ।

୧୨ । ଅଧର···ଅଧର ନୀଚ ବୋଲି ତାଠାରେ ହାସର ସତ୍ତ୍ୱ (ଛାଇ) ମାତ୍ର ଥୋଇଛନ୍ତି । ନୀଚ ଲୋକର ଉଚ୍ଚ (ମାନ୍ୟଗଣ୍ୟ) ବ୍ୟକ୍ତି ପ୍ରଭୃତିଙ୍କ ନିକଟରେ ଉଚ୍ଚ ହାସ କରିବା ଅନୁଚିତ । ଯୌବନରେ ଅଧରରେ ମନ୍ଦହାସ ଦେଖାଯାଏ । ଅତି···ବଢ଼ାଇଛନ୍ତି । ଅତିସୁଖେ—ବିନା ଜୋର ଜୁଲମରେ, ଅତି ସୁଖରେ । କର—ଖଜଣା, ହସ୍ତ । ପ୍ରଜାଙ୍କୁ ବଡ଼ କରିପାରିଲେ ରାଜା ସୁଖରେ (ସୁବିଧାରେ) ଖଜଣା ଆଦାୟ କରିପାରନ୍ତି । ୧୩ । ସଘନେ-ଲଗାଲଗି କରି । ୧୬ । ଅର୍କ୍କନପକ୍ଷ

ଅବ୍ଜ ତାର-ବାର-ଯୋଗ-ଲଗ୍ନ-କରଣାଦି ଶୁଭ ସର୍ବେ ଯେ
ଅମରଗୁରୁ ଭାର୍ଗବ ସୌମ୍ୟ ଛନ୍ତି ଲଗ୍ନ କେନ୍ଦ୍ର ଠାବେ ଯେ । ୧୭

ଅର୍କ ଅଙ୍ଗାରକ ଅନ୍ୟ ଲଗ୍ନ ଆୟ ଷଷ୍ଠ ତୃତୀୟରେ ଯେ
ଅଛି ଚତୁଷ୍ପଦ ଶୁଭଗ୍ରହ-ମୋଦ ଦୃଷ୍ଟି ଲଗ୍ନ ପରେ ଯେ । ୧୮

ଅମୃତ ସମୟେ ହୋଇଲା ଉଦୟେ ବାଳା-ପୁଷ୍ପ-ଜାଳ
ଅଶେଷ ମଙ୍ଗଳ-ପ୍ରଦାତାରେ ଥିବ କପାଁ ଅମଙ୍ଗଳ ଯେ । ୧୯

ଅଙ୍ଗ ଶ୍ରାନ୍ତ ହୋଇ ଅଭ୍ୟୁତ୍ଥିତ ଶୀତାଇ ଶୀତାଇ ଆସିଲା ଯେ
ଅଶନ ସୁବେଶେ ବସନ ସୁବାସେ ମନ ନ ରସିଲା ଯେ । ୨୦

ଅନ୍ୟ-ଅବସରଠାରୁ ନେତ୍ର ତାର ତରଳେ ସ୍ଫୁରିଲା ଯେ
ଅନାୟତେ ଭୂରୁ ନୃତ୍ୟ କଲା ଗୁରୁତର ଶ୍ରୋଣି ହେଲା ଯେ । ୨୧

ଅତିଶୟ ସ୍ମିତ ଦେଖି ମତିମତି ଅତି ଲଜମତି ଯେ
ଅସ୍ଫୁଟ ସେ କଲେ ସ୍ଫୁଟ କରିଦେଲେ କେତେ ଭୃଙ୍ଗତତି ଯେ । ୨୨

ଅନୁଚରୀମାନେ ଜାଣି ତୋଷମନେ ମାତାଙ୍କୁ କହିଲେ ଯେ
ଅକ୍ଷତ-ମାଷ-ମିଶ୍ରିତ ମଣ୍ଡଳକୁ ବିଧାନେ ବନ୍ଧିଲେ ଯେ । ୨୩

ଅରୁଣବାସ ପିନ୍ଧାଇ ସୁଭାଷୀଙ୍କ ଚନ୍ଦ୍ରିରେ ବସାଇ ଯେ
ଅନୁକୋଣେ ରୁଚି ଶର ପୋତି ରଙ୍ଗ ବସନ ବେଢ଼ାଇ ଯେ । ୨୪

ଅନୁପୂର୍ଣ୍ଣ-କୁମ୍ଭ ସ୍ଥାପି ସାତକୁମ୍ଭ-ପ୍ରଦୀପ ଜାଳନ୍ତି ଯେ
ଅଙ୍ଗନାଗଣେ ପୁରାଙ୍ଗଣ-ପ୍ରାଙ୍ଗଣେ ହୁଳହୁଳି ଦିଅନ୍ତି ଯେ । ୨୫

ଅଚଳମହୀଶ ଶୁଣି ମହାତୋଷ କଲେ ଦାନପୁଣ୍ୟ ଯେ
ଅପ୍ରମିତ ବାଦ୍ୟ ମଙ୍ଗଳଶବ୍ଦ ସୁଗୀତ-ଗାୟନ ଯେ । ୨୬

---

ଶୁକ୍ଳପକ୍ଷ । ୧୭-ଅବ୍ଜ—ଚନ୍ଦ୍ର, ଅମରଗୁରୁ-ବୃହସ୍ପତି, ଭାର୍ଗବ-ଶୁକ୍ର, ସୌମ୍ୟ-ବୁଧ, ୧୮-ଅର୍କ-ସୂର୍ଯ୍ୟ, ଅଙ୍ଗାରକ-ମଙ୍ଗଳ । ୨୧-ଅନ୍ୟ ଅବସର-ଅନ୍ୟ ବେଳ । ଶ୍ରୋଣୀ ଗୁରୁତର ହେଲା-ପିଚ୍ଛ ଭାରିହେଲା । ୨୨-ମତିମତି-ମନେ ମନେ, 'ମନ୍ଦମନ୍ଦ' ପାଠକଲେ ଅର୍ଥ ବୁଦ୍ଧି ହେବ । ଅସ୍ଫୁଟ କଲେ--ଲୁଚାଇଲେ । ଭୃଙ୍ଗତତି--ଭ୍ରମର-ମାନେ । ୨୩—ମାଷ-ବିରି । ୨୪—ସୁଭାଷୀ-ସୁବଚନା । ୨୫-ଶାତକୁମ୍ଭ ପ୍ରଦୀପ—

ଅନ୍ତର୍ଦ୍ଧି ସାତଜନ ଦେଖିମତ ଲକ୍ଷ୍ମୀବ-ବେଙ୍କାର ଯେ
ଅର୍ଘ୍ୟ ବନ୍ଦାପନା ନେଇକଲପନା ଯେମାଣ ବାହାର ଯେ । ୨୭
ଅନଙ୍ଗନାଶାଣ ହେଲ ଯୋଗିବଣ ତ୍ରିପୁର-ଜୟୀକୁ ଯେ
ଅଙ୍ଗନାସହାୟ ନ କଲ ତ ଭୟ ସେ ମୃତ୍ୟୁଞ୍ଜୟଙ୍କୁ ଯେ । ୨୮
ଅହକୁ ଅହ ସିତପକ୍ଷ ଚନ୍ଦ୍ରମା ହେଲ ଶୋଭା ଧାମା ଯେ
ଅଷ୍ଟଆଖି କ ବାଟ୍ଟବାଟ୍ଟ ଲଙ୍ଘୁଛି ବଢ଼ଧ ଦୂଷମା ଯେ । ୨୯
ଅନ୍ତ ଆଦ୍ୟ ମଧ ବୃଷଭ-ବାହନ ମୁନୀନ୍ଦ୍ର ଚରଣ ଯେ
ଅନ୍ତକ ଏ ରୁଦ୍ର ଦଣ୍ଡେ ବଳଭଦ୍ର କରିଛି ଶରଣ ଯେ । ୩୦

---

# ନବମ ଛାନ୍ଦ

## ଶିବ-ତପସ୍ୟା

ରାଗ—କାଫି, ଅବକାଶ ବୃତ୍ତେ

ଅଦ୍ରି ଉପର ଚରମ ସ୍ଥାନେ
ଅନନ୍ୟେକ୍ଷଣ କ୍ଷଣ-ବଧାନେ
ଅତୁଳିତ ତପସ୍ୟା ପ୍ରବଳେ
ଅନୁକ୍ଷଣେ କ୍ଷଣେ ଧ୍ୟାନ କଲେ ସେ
ଅସିତ; ସିତ କଲ ଶରୀର (?)
ଅନିଳଅନ୍ନ କରନ୍ତି ମନ୍ଥର ଯେ । ୧
ଅନୁଷ୍ଠାନ ପରମେଶ୍ୱର ବଧି
ଅନୁଦିନେ କଲେ ଅଷ୍ଟ ସିଦ୍ଧି
ଅନୁଦିନ ତାଙ୍କୁ ତପରେ ସେ
ଅନୁମାନେ ଆନ ଆଉ ନ ଦିଶେ ଯେ

---

ସୁନାଭିଆର ପାପ । ୨୭। ଅଚଳ ମହୀଶ-ହିମାଳୟ । ୨୯। ଅଷ୍ଟଆଖି-ବ୍ରହ୍ମା । ୩୦
ଯୋଗୀଶ୍ୱର ବୃଷବାହନ ମହାଦେବଙ୍କ ଚରଣର ଅନ୍ତ, ମଧ୍ୟ ଓ ଆଦ୍ୟଂଶ୍ରିତ ବଳଭଦ୍ର
ଭଞ୍ଜ (ଅନ୍ତକ ରୁଦ୍ରଦଣ୍ଡେ) ଯମର ଭୟଙ୍କର ଦଣ୍ଡକୁ ଡ଼ରି ଶରଣ କରିଛନ୍ତି ।

**ନବମ ଛାନ୍ଦ**

୧ । ଅଦ୍ରି ଉପର—ପର୍ବତ ଶୃଙ୍ଗରେ । ଅନନ୍ୟେକ୍ଷଣେ—ମହାଦେବ ।
କ୍ଷଣବଧାନେ-ଉତ୍ସବ ଅର୍ଥାତ୍ ଚିତ୍ତଶାନ୍ତି ସାଧନ କରିବାକୁ । କ୍ଷଣେଧ୍ୟାନ-ସର୍ବଦା ଧ୍ୟାନ

ଅନୃତ, ନୁହେ ଏହି ଘଟିତ
ଅନୁଭବୀ ସେ ତପ ଦୁଃଖେ ସେ ତ ଯେ । ୨
ଅଗ୍ରନାସାରେ ବ୍ୟଗ୍ରଲକ୍ଷିତ
ଅକ୍ଷି ରଖି ସେ ଅଖିଳ-ତାତ
ଅନ୍ତେ ସେ ବ୍ରହ୍ମ ହୃଅନ୍ତେ ପ୍ରକାଶ
ଅଶେଷନନ୍ଦନେ ସେ ଶିବ ତୋଷ ଯେ
ଅଣୁ ଏ, ସ୍ଥାଣୁ ଏହା ନ ଚେଜ
ଅମାନ ସୁଖନେ ମାନସ ମଜ୍ଜି ଯେ । ୩
ଅଦ୍ରିପୁତ୍ରୀ ଜଗି ଅବକାଶେ
ଅନୁସରଥାନ୍ତି ତାଙ୍କ ପାଶେ
ଅବ୍ଜଜାତ କରନ୍ତି ନିର୍ମାଣ
ଅମ୍ବିକା-ରମଣୀ-ଶ୍ରେଷ୍ଠ ପ୍ରମାଣ ଯେ
ଅନିଶେ, ସେବା ବିଧିରେ ଥାନ୍ତି
ଅଙ୍ଗ ସ୍ଥଳରେ ଭିନ୍ନ ନୁହନ୍ତି ଯେ । ୪
ଅଗ୍ନିସ୍ଥାପନ ଅର୍ଥେ ଇନ୍ଧନ
ଅଙ୍ଘ୍ରିପ୍ରକ୍ଷାଳନ ଆଚମନ —
ଅର୍ଥେ ଅମ୍ବୁ ଆଣି ନିଯୋଗନ୍ତି
ଅନୁଷ୍ଠାନ ଦ୍ରବ୍ୟମାନ ଘଟାନ୍ତି ଯେ
ଅକ୍ଷତ, ପୁଷ୍ପ ଚନ୍ଦନ କୁଶ
ଅର୍ଚ୍ଚନାଗାର-ମାର୍ଜ୍ଜନ-ବିଶେଷ ଯେ । ୫
ଅଭିରାଗ ବହି ଦାସ-ବାସେ
ଅନୁସରି କରନ୍ତି ସେବା ସେ

---

ଅନିଳ ଅନ୍ନ,କରି-ପବନ ଆହାର କରି । ୨ । ଅନୁଷ୍ଠାନ ପରମ୍ପର ବିଧି-ଯେଉଁ କାର୍ଯ୍ୟ ପରେ ଯାହା କରିବାର ନିୟମ । ଅନୁଦିନେ-ଦିନକୁଦିନ । ତପରେ-'ତପ ବ୍ୟଞ୍ଜିତ' ଏହି ଅର୍ଥରେ ପ୍ରଯୁକ୍ତ । ଅନୃତ-ମିଥ୍ୟା । ୩ । ଅଗ୍ରନାସାରେ--ଧ୍ୟାନଯୋଗକାଳରେ ନାସାଗ୍ରରେ ଦୃଷ୍ଟି ରଖିବା ଶାସ୍ତ୍ରବିଧି । ଅଣୁଏ—ଟିକିଏ । ସ୍ଥାଣୁ—ମହାଦେବ । ୪- ଅଦ୍ରିପୁତ୍ରୀ-ପାର୍ବତୀ । ଅବକାଶେ-ତପରୁ ବିରତ ହେବା ସମୟରେ । ଅନୁସରଥାନ୍ତି -ସେବୁଥାନ୍ତି । ଅବ୍ଜଜାତ-ବ୍ରହ୍ମା, ପାର୍ବତୀଙ୍କୁ ନାରୀଶ୍ରେଷ୍ଠରୂପେ ନିର୍ମାଣ କରନ୍ତି, ଏହା ସ୍ଥିର । ୫ । ଇନ୍ଧନ—ସମିଧ କାଠ ପ୍ରଭୃତି । ଅଙ୍ଘ୍ରିପ୍ରକ୍ଷାଳନ—ଗୋଡ଼ ଧୋଇବା

ଅମ୍ବୁଦଙ୍କୁ ଚାତକ ଯେମନ୍ତ
ଅବ୍‌ଜଠରେ ଯଥା ଚକୋରଚିତ୍ତ ସେ
ଅନ୍ଧର, ଅକ୍ଷି ଅପେକ୍ଷା ଯଥା
ଅସିତ କଣ୍ଠରେ ଅମ୍ବିକା ତଥା ସେ । ୬
ଅପର୍ଣ୍ଣାର ନାନା ସେବାକର୍ମ
ଅନର୍ଗଳେ ଘେନୁଥାନ୍ତି ଶ୍ରମ
ଅକ୍ଷିଗୋଚର ନୁହନ୍ତି ନାରୀ
ଅତି ଗୁପତେ ଗତାଗତ କରି ସେ
ଅଂଶେ ଯା, ଅଂଶୁଁ ଚଞ୍ଚଳା ଜାତ
ଅନୁଲକ୍ଷିବ କେ ତାର ଚରିତ ସେ । ୭
ଅର୍ଘମାର୍ଜନା ନାନା ବିହାର
ଅଳଙ୍କାର ମନୋହର ହାର
ଅତିସ୍ୱାଦୁ ଅମୃତ ଆହାର
ଅହି-ବଲ୍ଲୀ ଆଦି ଯେ ଉପହାର ସେ
ଅପୂର୍ବ, ଖେଳ କୌତୁକ ରସ
ଅହର୍ବିହାର ସୁପରିହାସ ସେ । ୮
ଅନୁଆନେ ବେଣୀଜୁଡ଼ା ବନ୍ଧା
ଅତି ଯତନେ ଦୁକୂଳ ପିନ୍ଧା
ଅଳିକରେ ଚିତ୍ର ଚନ୍ଦଲେଖା
ଅଚ୍ଛମୁକୁରେ ମୁଖ ଛବି ଦେଖା ସେ
ଅମୂଲ୍ୟ, ଫୁଲ ତୋଳି ଗୁନ୍ଥିବା
ଅଳତା ପଦେ ମୋଦେ ଦେଉଥିବା ସେ । ୯
ଅମୃତବର୍ଷି ପଞ୍ଚବଦନ—
ଅନୁରାଗେ ଆଳାପଗାୟନ

---

ଅନୁଷ୍ଠାନ ଦ୍ରବ୍ୟ—ଯୋଗ କରିବାର ଦରକାରୀ ଜିନିଷ । ଅର୍ଚ୍ଚନା ପାତ୍ର ମାର୍ଜନା—ପୂଜା ବାସନ ମାଜିବା । ୬ । ଅତିରାଗ—ଅତି ଅନୁରାଗ । ଦିଗବାସ—ମହାଦେବ । ଅବ୍ଜ—ଚନ୍ଦ୍ର । ଅସିତକଣ୍ଠ—ମହାଦେବ । ୭ । ଅପର୍ଣ୍ଣା—ପାର୍ବତୀ । ଶ୍ରମ-ମହାଦେବ । ଅଂଶେ.. ଜାତ—ଯାହାର ଅଂଶରୁ (ଚଞ୍ଚଳା) ଲକ୍ଷ୍ମୀ ଜାତ । ୮ ଅମୃତ ଆହାର—ଅମୃତ ତୁଲ୍ୟ ଭୋଜନ । ଅହିବଲ୍ଲୀ—ପାନ । ୯ । ଅନୁଆନେ—ପରସ୍ପର । ଅଳକରେ—କପାଳରେ । ୧୦ । ଅମୃତବର୍ଷି—ମହାଦେବଙ୍କ ଅନୁରାଗରେ ଅମୃତ ପରି ମଧୁର ଗାନ କରିବା ।

ଅନିରୁଦ୍ଧ ଶାମ୍ବ ପୋଥି ଦେଖା
ଅଗାରଭିତ୍ତିରେ ସୁଚିତ୍ର ଲେଖା ଯେ
ଅନ୍ତରେ, ଲୁଚ ଭୋଜ ଖେଳବା
ଅନୁକ୍ଷଣେ ସଖୀଙ୍କି ଛଳବା ଯେ । ୧୦
ଅବ୍ଜ ଶୁକସାରିକା କୋକିଳ
ଅଳି ହରିଣ ଦ ଶଶା ନେତ୍ରାଳ
ଅମ୍ବୁ ବୃତ୍ତା ଖଞ୍ଜନ ଚକୋର
ଅନନ୍ତ ଖେଳା ପାରୁଆ ମଞ୍ଜୁଳ ଯେ
ଅନ୍ତର; କଲେ ଛଟ୍ୟାଙ୍ଗ ଲୀଳା
ଅସିତ କଣ୍ଠ-ସେବାରେ ସେ ଲୋଳା ଯେ । ୧୧
ଅନୁଦିନେ ଏ ସେବା ପ୍ରକାର
ଅନ୍ତର୍ଗତେ କରୁଥନ୍ତି ହର
ଅହର୍ନିଶି କେ ସେବଛୁ ମୋତେ
ଅପୂର୍ବ ସ୍ତୁତି ଜାଣିମା କେମନ୍ତେ ଯେ
ଅକ୍ଷିରେ; ଲକ୍ଷି ନୋହିଲୁ ସେ ତ
ଅମଳ ଅବା ସେ କିବା ଚରିତ ଯେ । ୧୨
ଅତି ସାବଧାନ ଏଣୁ ହେଲେ
ଅକଳାର ଲୀଳା ସେ ଦେଖିଲେ
ଅନ୍ତଃକରଣେ କଲେ ଏ କାଳା
ଅନଙ୍ଗ ସିନ୍ଧୁରୁ ହେବ ମୋ ଭେଳା ଯେ
ଅଚଳ;-ପତି- କ୍ରମାଙ୍ଗଂ ଏହି
ଅବହେଳେ ସୃଷ୍ଟି ପାରଇ ମୋହି ଯେ । ୧୩
ଅଷ୍ଟମୁଖ ଶୋଭି ବେଦଭୁଜ
ଅର୍ଘ୍ୟ ବେନି କାନ୍ତି ଦ୍ୱିଜରାଜ
ଅଷ୍ଟ ସପ୍ତ ରସନା ସୁନ୍ଦର
ଅଖିଳନାଥ ଅମର ଈଶ୍ୱର ହେ
ଅଚଳା;—ପତି ବଳଭଦ୍ରର
ଅର୍ଜିତ ପାତକ ହଘାତ ହର ହେ । ୧୪

---

୧୨ । ଅନ୍ତର୍ଗତେ କରୁଥାନ୍ତି—ମନେ ମନେ ଭାବୁଥାନ୍ତି । ୧୪ । ଅଚଳାପତି—ପୃଥ୍ୱୀପତି (ରାଜା) । ପାତକ ହଘାତ— ପାପସମୂହ ।

# ଦଶମ ଛାନ୍ଦ

## ଶିବ-ତପୋଭଙ୍ଗ

( କନ୍ଦର୍ପଦାହ )

ରାଗ—ପାହାଡ଼ିଆ କେଦାର

ଅତ୍ର ରୁଚିର ଚରିତବର    ସଜ୍ଜନବାର ଶ୍ରବଣ କର
ତାରକାସୁର ପୀଡ଼ା ଅପାର ଦେବାରୁ ସୁର ଯେ
ଅମରପୁର-ପୁରରେ ସ୍ଥିର    ନୋହି କାତର ଲଭିଣ ଡର—
ନେଷ୍ଟୀ ଗୁମ୍ଫର କହିଲେ କର ଯୋଡ଼ି ଏ ଗିର ଯେ
ଅବ୍ଜଯୋନି ଆମ୍ଭର ଏ ଦର ହର ହେ
ଅନ୍ଧକାର-ଆକାର ଧଂଶ ସଂସାର ଯେ
ଅସହତର ତାରକାସୁର    ସନ୍ତାପ ଘୋର ହେଲା ତ୍ରିପୁର—
ଭୃତରେ ଆଉ ନ ଧଂଶ ପାର ହେବା ପ୍ରକାର ହେ । ୧ ।
ଅମରାଙ୍ଗଣ-ଘୋର କଷଣ    ସ୍ତୁତିଭାଷଣ ଶୁଣି ଦ୍ରୁହିଣ
କହନ୍ତ ଶୁଣ ହେ ସୁପର୍ବାଣ ଏ ସତ୍ୟ ଜାଣ ହେ
ଅଛି ପ୍ରମାଣ ସ୍ମୃତି ପୁରାଣ    ବେଦରେ ପୁଣ ତ୍ରିପୁର-ପ୍ରାଣ
ହାରି-ଅଂଶେଣ ଜନ୍ମିଲେ ତ୍ରାଣ ହେବେ ଗୀର୍ବାଣ ହେ
ଅଟେ ସେ ଦୈତ୍ୟପ୍ରାଣ ଅତ୍ୟନ୍ତ ଟାଣ ଯେ
ଅନ୍ୟ ଭିଆଣରେ ସେ ନୋହିବ କ୍ଷୀଣ ଯେ
ଅହିଭୂଷଣ ଅଙ୍ଗେ ତକ୍ଷଣ    ଫୁଲକମାଣ ଭ୍ରମର-ଗୁଣ
ଯୋଗରେ ବାଣ ମାରୁ, କହିଣ କର ପ୍ରେଷଣ ହେ । ୨
ଅଷ୍ଟଲୋଚନ ଏହି ବଚନ    ମେଘବାହନ ଶୁଣି ବହନ

---

### ଦଶମ ଛାନ୍ଦ

୧ । ସଜ୍ଜନ ବାର—ସାଧୁମାନେ । ଅମରପୁର-ପୁରରେ—ଅଳକାପୁର ଗୃହରେ ବା ଅଳକାପୁର ନାମକ ନଗରରେ । ଅବ୍ଜଯୋନି--ବ୍ରହ୍ମା । ଦର—ଭୟ । ୨ । ଦ୍ରୁହିଣ—ବ୍ରହ୍ମା । ସୁପର୍ବାଣ—ଦେବତା । ତ୍ରିପୁର···ଅଂଶେଣ—ମହାଦେବଙ୍କ ଅଂଶରେ । ଗୀର୍ବାଣ--ଦେବତାମାନେ । କ୍ଷୀଣ—କ୍ଷୟ । ଫୁଲକମାଣ—କାମଦେବ

ଯେଣୁ ସୁମନ ଅଛନ୍ତି ମନ-ତୋଷେ ସୁସ୍ଥାନ ହେ
ଅଣାଇ ମୀନକେତନ ମନ    କରି ପ୍ରସନ୍ନ ଏ କଥାମାନ
କଲେ କଥନ ଶୁଣି ମଦନ କଲା ଗମନ ହେ
ଅଟେ ଜନ-ଅଞ୍ଜନ-ଦାନେ ପ୍ରଧାନ ସେ
ଅତ୍ର ପୁଣ ସେ କରୁଅଛି ପ୍ରସ୍ଥାନ ଯେ
ଅଙ୍ଗନାସ୍ତନ-ଗିରି-ଗହନ—    ଦରୀ-ବିହୀନ-ପୁଂସ-ଯୌବନ
ରକ୍ଷସଦନ ନାହିଁ ଭୁବନ ଭିତରେ ଆନ ଯେ । ୩
ଅନ୍ଧକପର ସଙ୍ଗେ ସମର    କରି ବାହାର ହେଉଛି ସୁର
ଏଣୁ ବସ୍ତୁର କରି ତିଆରି-କଲା ସମ୍ଭାର ଯେ
ଅଇଲେ ତାର ମିତ୍ରପ୍ରକର    ବସନ୍ତ, ତାର-ତାରକେଶ୍ୱର
ଆଦି, ତାଙ୍କର ସହାୟବାର ଯେଣୁ ସଙ୍ଗର ଯେ
ଅଣାଇଲା ପ୍ରଖର ତୀକ୍ଷ୍ଣ ଶର ଯେ
ଅଶୋକାରବିନ୍ଦାଦି ଆୟୁଧବାର ଯେ
ଅଣ୍ଟାରେ ତାରତରରେ    ତରବାରି ଚତୁର ଭିଡ଼ିଲା
ଚଢ଼କଷି ଚୂତର ବାମପଦ୍ମର ଦରେ ତୋଡ଼ର ଯେ । ୪
ଅଳକେ ତୋର ଚନ୍ଦନ କୋର    ମସ୍ତକ ତୋର ପଗଡ଼ିର ହୀର
ଝଟକେ କରୁଅଛି ଅଧୀର ଗୃହାନ୍ତେ ଧୀର ଯେ
ଅମର ହାରାବଳୀରେ ବିରାଜେ    ହୃଦ ମାରିଗାଢ଼ ସୁନ୍ଦରୀ—
କୁଚ ମୁଦ୍ରିକ ଗୁରୁ କରାଙ୍ଗୁଳି ରୁଚିରା ଯେ,
ଅକ୍ଷି କ୍ରୀଡ଼ାର ପରି ନାହିଁ ଅପର ଯେ
ଅଟେ ନୟନତାରା-ପ୍ରକର-କାରା ଯେ
ଅବଶ୍ୟ ମରିଯିବେ ଏ ଧରା—    ବିଯୋଗୀ, ଖର ଲବଣୀ ପରି
ତରଳ, ପାରାପରି ଅଧୀର ହୋଇବେ ସ୍ଥିର ଯେ । ୫

---

୩ । ଅଷ୍ଟଲୋଚନ-ବ୍ରହ୍ମା । ମେଘବାହନ-ଇନ୍ଦ୍ର । ଯେଣୁ ସୁମନ-ଦେବତାଙ୍କୁ ଯେଣୁ । ମୀନକେତନ-କାମଦେବ । ଦରୀ-ଗୁହା । ରକ୍ଷାସଦନ— ରକ୍ଷାପାଇବାର ଜାଗା ।

୪ । ଅନ୍ଧକପର—ମହାଦେବ । ସମ୍ଭାର—ଉପକରଣ । ମିତ୍ରପ୍ରକର—ବନ୍ଧୁମାନେ । ତାରତାରକେଶ୍ୱର-ଉଜ୍ଜ୍ୱଳ ଚନ୍ଦ୍ର । ସହାୟବାର-ସାହାଯ୍ୟକାରୀମାନେ । ଅଶୋକାରବିନ୍ଦାଦି, ଯଥା—

ଅଶୋକମରବିନ୍ଦଂ ଚ ଚୂତଂ ଚ ନବମାଳିକା
ନୀଳୋତ୍ପଳଂ ଚ ପଞ୍ଚୈତେ କାମଦେବସ୍ୟ ଶାୟକାଃ ।

ଅସବ୍ୟ କରେ ସେ ଧନୁ ଧରେ ସୁମନଶରେ ଅଳଗୁଣରେ
ବସାଇ ଧୀରେ ନିର୍ଭରେ ଥରେ ଥରେ ଟଙ୍କାରେ ସେ
ଅସିଫଳରେ ସ୍ୱଣି ମସ୍ତକରେ ଆନଖିତରେ ଫିଙ୍ଗି ସୁତରେ
ଝମକ ଧରେ ଭଙ୍ଗ ଅଧରେ ଦନ୍ତ କ୍ରୋଧରେ ଯେ
ଅନାଶରେ ନାସରେ ଅଙ୍ଗୁଳି ମାରେ ସେ
ଅକ୍ଷି ଘାତମାନରେ କାତର କରେ ସେ
ଅଳପ ଧୀରେ ଧୀରେ ବାହାରେ ଦେଉଛି କରେ ରତି- ବାହାରେ
ଯାଇ ସୁତରେ ବସିଲା କରେ ମକରପରେ ଯେ । ୬

ଅନର୍ଥ ସ୍ମୃତି-ଯୋଗରୁ ଯତି ଜାଣି ଚଢ଼ନ୍ତି ଯୁବତୀ କତି
ମିଳଣ ଅତିରେକେ ବିନତି-ନୁତି କହନ୍ତି ଯେ
ଅଜ୍ଞାନମତି ହେଲେ କେ ରତି— ଚିତ୍ତରେ ରତ ଚଉରେ ଚନ୍ତ
ସାମାନ୍ୟା-ସ୍ତୁତିପରେ କେ ସ୍ତୁତି ଯୋଖି ରହନ୍ତି ଯେ
ଅଙ୍ଗନାକୁ କେ ଯେନା ବଳେ ଭିଡ଼ନ୍ତି ଯେ
ଅର୍ଦ୍ଧ ଚଳେ କେ ରତି ଆଶେ ଚଢ଼ନ୍ତି ଯେ
ଅଜ୍ଞାତରତି ଯେନା କେ କୃଷ୍ଣ ବନ୍ଧେ ନୁହନ୍ତି ସେ ଛୁଟିବନ୍ତି
କରେ ଝଟିତି ଧରେ ତ ଯେତି ହସେ ସୁଦତୀ ଯେ । ୭

ଅର୍ଜୁନ ତାର କାନ୍ତ ଯାହାର କସ୍ତୁରୀ-ମାଉରେ ତା ଶରୀର
କଲା ଜର୍ଜ୍ଜର ହୃଦୁଁ କେ ହାର କଲା ବାହାର ଯେ
ଅଙ୍ଗୁ କର୍ପୂରରଜ ଅନ୍ତର କରି ସନ୍ତର ହୋଇ କାତର
ନିର୍ଭରେ ଝର ଯୋଖି କେ ହରଜରେ କାନ୍ତାର ଯେ

---

ଆୟୁଧବାର—ଶସ୍ତ୍ରସମୂହ । ତରକଷି—ତୂଣୀର । ତେଡ଼ର—ଭୂଷଣ ବିଶେଷ । ୫ । ମାଣିଗାଦ୍ଧ...ଚୁଟିରି—ମାଣିକ ନାମକ ମଣି ବିଶେଷଦ୍ୱାରା ସୁନ୍ଦର ହୋଇଥିବା ମୁଦସବୁ ଅଙ୍ଗୁଳିମାନଙ୍କରେ ପିନ୍ଧି । ଅକ୍ଷି...କାରି--ନେତ୍ରର ବନ୍ଦୀଘର । ସ୍ତ୍ରୈରି-ସଖୀମାନେ । ୬ ଅସବ୍ୟକରେ-ବାମକରେ । ଅସିଫଳରେ-ଖଡ଼୍ଗକୁ । ଝମକ--ଧାଇଁ ବା ଉହ୍ମୁଁକ । କରେ-ଗୋଟିଏ ହାତ । ରତିବାହାରେ-ନିଜ ସ୍ତ୍ରୀ ରତିର ବାହୁ ଉପରେ । ସୁତରେ-ସାବଧାନରେ ବା କୌଶଳକ୍ରମେ । ବସିଲାକରେ-ବସିଲା । କ୍ରିୟାବାଚକ ବିଶେଷ୍ୟ । ମକର-ତାହାର ବାହାନ । ୭ । ଯୋଗରୁ-ଯୋଗବଳରୁ । ଅତିବିନତିନୁତି-ଅତି ବିନୟ ସହିତ ସ୍ତୁତି । ସାମାନ୍ୟା-ବେଶ୍ୟା । ଅଜ୍ଞାତରତିଯେତି ରତିକ୍ରୀଡ଼ା ବିଷୟରେ ଅଜ୍ଞ ହୋଇଥିବାରୁ । କୃଷ୍ଣ-ଦକ୍ଷ । ଛୁଟିବନ୍ତି-ଅସ୍ତବ୍ୟସ୍ତ । ସୁଦତୀ-ସୁନ୍ଦର ଦନ୍ତବିଶିଷ୍ଟା ସ୍ତ୍ରୀ । ୮ । ଯେଉଁ ଯୋଗୀର କାନ୍ତ ଅର୍ଜୁନ

ଅଳକରୁ ପୋଛୁଲେ ଜେ ତ୍ରିପୁଣ୍ଡ୍ର ଯେ
ଅଛି ନୀଳକଣ୍ଠଭକତ ଜେ ନର ଯେ
ଅଭୀଷ୍ଟତର ହେଲେହେଁ ବର— ମାର ସମରସମର୍ଥେ ଡର
ଲଭି ଅପାର ନ କଲା ଦୂର ଅଙ୍ଗୁ ଅମ୍ବର ଯେ । ୮

ଅବ୍ଜଶେଖର ଭୂଷାଧର— ଘଟେ କଠୋର ତପେ ଶରୀର
କରଣ ସ୍ଥିର ଛନ୍ତି ସମୀର କରି ଆହାର ଯେ
ଈଷିରୁ ଦୂର ପଞ୍ଚପ୍ରକାର କରିସୁଧୀର ହୃଦୟ-ନୀର—
ଜଟେ ତାଙ୍କର ପ୍ରଭୁଙ୍କୁ ପୁର ଦେଲେ ଯେ ହର ଯେ
ଅଗ୍ରେ ଯାର ଗୋଚର ନିତ୍ୟ ଈଶ୍ୱର ଯେ
ଅନ୍ୟ ଶରଧା ଆଉ କାହିଁ ତାଙ୍କର ଯେ
ଅନର୍ଥ-ବାର ଏ କାଳେ ମାର ଘେନିଣ ପରିବେଶ ସେ ତର—
ବଚରେ ତାର ନାନା ହୃଦର କଲା ପ୍ରଚୁର ଯେ । ୯

ଅତି ମଧୁର କୋମଳତର ତରଳକର କଳଗମ୍ଭୀର
ସ୍ୱସ୍ୱର ଗିର କହଇ ବର ଦ୍ରୋଣକୁମର ଯେ
ଅଳିନିକର ମିଳି ଝଙ୍କାର— କେଳିରେ ମାର-ଢୋଲ ଝଙ୍କାର
ମୋହ-ପ୍ରକାର ସର୍ବଲୋକର ଜନ୍ମେ ସତ୍ୱର ଯେ
ଅକ୍ଷତର-ସୁନ୍ଦର ପୀୟୂଷ କର ଯେ
ଅମ୍ବରକୁ ମଣ୍ଡିଲା ପ୍ରକାଶି କର ଯେ
ଅବନୀପର ଧୋଇଲା ପର— ମୈତ୍ରୀ କି କ୍ଷୀର ଫେନ ନିକର
ତାରୁଁ ସେ ତାର କରଇ ଶର ସଙ୍ଗ ଗୋଚର ଯେ । ୧୦

---

(ଧବଳ) ଓ ତାର (ଉଜ୍ଜ୍ୱଳ) ଥିଲା, ସେ କାମ ଭୟରେ ଦେହରେ କସ୍ତୁରୀ ବୋଳି ଦେଲା; ଆଶଙ୍କା :-କାଳେ ଧବଳବର୍ଣ୍ଣ ଦେଖି ଶିବ ବୋଲି ମନେକରି କାମ ଶର ପ୍ରହାର କରିବ । ସର୍ପଭ୍ରମ ଦୂର କରିବାପାଇଁ ହାର ବାହାର କଲା । ନୀଳକଣ୍ଠ-ଭକତ-ଶିବଭକ୍ତ; କେହି ଲୋକ ଅଳକ (କପାଳ)ରୁ ତ୍ରିପୁଣ୍ଡ୍ର ପୋଛୁଲେ । ସୁରତ-କାଳରେ ବସ୍ତ୍ର ତ୍ୟାଗ କରିବା ବାଞ୍ଛନୀୟ ହେଲେହେଁ ଉଲଗ୍ନ (ଦିଗମ୍ବର)ହେଲେ ମହାଦେବ ଜ୍ଞାନରେ କାମ ଅଧିକ ଶର ପ୍ରହାର କରିପାରେ ବୋଲି ତାହା କଲା ନାହିଁ ୯ । ଅବ୍ଜଶେଖର-ଚନ୍ଦ୍ରଶେଖର, ଶିବ । ଭୂଷାଧାର-ହିମାଳୟ । ପଞ୍ଚପ୍ରକାର-ପଚାର କାର୍ଯ୍ୟ-ଚଳନାଦି । ହୃଦୟ-ପଦ୍ମରେ ପ୍ରଭୁଙ୍କୁ (ଆରାଧ୍ୟ ଦେବତାଙ୍କୁ) ପୁର (ସ୍ଥାନ) ଦେଲେ । ୧୦ । ତରଳକର-ଯାହା ମନ ଓ ଶରୀରକୁ ଚଞ୍ଚଳ କରିପକାଏ । କଳଗମ୍ଭୀର-ଅସ୍ଫୁଟ ଅଥଚ ଗମ୍ଭୀର । ଦ୍ରୋଣକୁମାର-କାକର ପୁତ୍ର, କୋକିଳ ।

ଅସାଧାରଣ ମାର୍ଗଣେ    ଭ୍ରୂଲେ ଶ୍ରବଣ ଯାଏ କମାଣେ

ଓଠାର ପୁଣ ପଣ କଞ୍ଚଣ କେଳଷ୍ଟାଘଣ ଟେ

ଅକ୍ଷି ଯୋଖିଣ ଅନ୍ତଃକରଣ—    ମଧ୍ୟକୁ ପୁଣ ପୁଣ ପ୍ରେଷଣ

କରଇ ବାଣ ଅପରିମାଣ କ୍ଷଣକୁ କ୍ଷଣ ଯେ

ଅନ୍ୟ ପଂଚଣ କରିଯାନ୍ତି ପ୍ରୟାଣ ଯେ

ଅଟନ୍ତି ସେ ପୁରାଣ ପୁରୁଷଗଣ ଯେ

ଅରୁଣଗଣ ଟାଣ କରଣ    ଜବା କରନ୍ତି ଦହେ ଈକ୍ଷଣ

ଫେଡ଼ି ବୀକ୍ଷଣ କଲେ ହରିଣ-ଲକ୍ଷ୍ମ ଲକ୍ଷଣ ଯେ । ୧୧

ଏନାଇ ସ୍ମର ଏ ଅବସର    ଶରକୁ ଶର ଯୋଖି ଅସର

ନ କରି ଚରଣାଇଲ ହର ଉର ଉପର ଯେ

ଅଗ୍ରେ ଝଙ୍କାର କରେ ଭ୍ରମର ଧରଇ ସ୍ୱର, କୁମାଶ୍ୱବର

ଅଛନ୍ତି ପୁରତରେ ଯେ ମାର ମୋହ-ମନ୍ତ୍ର ଯେ

ଅନୁସଙ୍ଗରେ ଧୀର ଧୀର ସମୀର ଯେ

ଅବ୍ୟକ୍ତରେ ମଧୁର ପିକଙ୍କ ଗିର ଯେ

---

ଅଳନିକର—ଭ୍ରମରମାନେ, ମିଳି—ଏକତ୍ର ହୋଇ । ଝଙ୍କାର କେଳି—ଗୁଣୁଗୁଣୁ ଶବ୍ଦ କରିବାରୂପକ କ୍ରୀଡ଼ାରେ; ମାରଘୋରବିକାର—କାମସମ୍ବନ୍ଧୀୟ ଉତ୍କଟ ବିକାର । ସର୍ବଲୋକର—ସମସ୍ତ ଲୋକଙ୍କର । ମୋହପ୍ରକାର—ବିକ୍ଷିପ୍ତଚିତ୍ତତା (ମନର ଅସ୍ଥୈର୍ଯ୍ୟ) । ସତ୍ୱର—ହଠାତ୍ । ଅଚ୍ଛତର-ଅତି ନିର୍ମଳ । ପୀୟୂଷକର—ଚନ୍ଦ୍ର । କର—କିରଣ । ମଣ୍ଡିଲ—ଶୋଭିତ କଲା । ପରମେଷ୍ଠୀ—ବ୍ରହ୍ମା । କ୍ଷୀର ଧେନୁ—ଦୁଧଦ୍ୱାରା । ଅବନୀ ପର—ପୃଥିବୀର ପୃଷ୍ଠକୁ ଧୋଇଲା କି ? ନିକର—ସମୂହ । ଚାରୁ ଚାର—ଉଜ୍ଜ୍ୱଳତର । ୧୧ । ଅସାଧାରଣ-ଅଦ୍ଭୁତ । ମାର୍ଗଣ—ବାଣ । କମାଣ—ଧନୁ । କେଳଷ୍ଟ—ରତି । ରତିପତି—କାମ । ଅକ୍ଷି ଯୋଖିଣ—ଶରମୂନ ଓ ଲକ୍ଷ୍ୟବସ୍ତୁ ସଙ୍ଗେ ଆଖିକୁ ମିଳାଇ । ଅନ୍ତଃକରଣ—ହୃଦୟ । ପ୍ରୟାଣ-ଗମନ । କ୍ଷଣକୁକ୍ଷଣ—ଅନବରତ । ପୁରାଣପୁରୁଷ—ଆଦ୍ୟ ପୁରୁଷ । ଅରୁଣଗଣ—ଦ୍ୱାଦଶ ସୂର୍ଯ୍ୟ । ସୂର୍ଯ୍ୟପତ୍ନୀ ବିଶ୍ୱକର୍ମାଙ୍କ କନ୍ୟା ସଂଜ୍ଞା ସୂର୍ଯ୍ୟଙ୍କ ତେଜ ସହି ନ ପାରିବାରୁ ତାଙ୍କ ପିତା ସୂର୍ଯ୍ୟଙ୍କୁ ବାରଖଣ୍ଡ କରି ଦେଇଥିଲେ । ବାରମାସରେ ସେହି ବାରଖଣ୍ଡର ଉଦୟ ହୋଇଥାଏ । ଈକ୍ଷଣ-ଆଖି । ବୀକ୍ଷଣ—ଦେଖିବା । ହରିଣ-ଲକ୍ଷ୍ମ· ଲକ୍ଷଣ - ଶିବ । ୧୨ । ଅସର ନ କରି-ଅବସର ନ ଦେଇ । ଉର-ଛାତି । କୁମାଶ୍ୱବର-ପାବଣ୍ଟ । ପୁରତରେ-ସମ୍ମୁଖରେ । ମାର ମୋହ ମନ୍ତ୍ର—କାମର

ଅସ୍ତ୍ର-ପ୍ରକର ଧରି ମକର          ଚଢ଼ିଛନ୍ତି କ୍ରୂର ଶମ୍ବରପର
ଗୁହ୍ନିଁ ଶଙ୍କର ଏହୁ ପ୍ରକାର ଚମତ୍କାର ଯେ । ୧୨

ଅନ୍ଧକଜିତ ସେ ରତିକାନ୍ତ—          ଶ୍ରାନ୍ତ ଅଦ୍ଭୁତ ଗୁହ୍ନିଁ ତ୍ୱରିତ
ନେହଲେ ପ୍ରମତ୍ତ ନେତ୍ରେ ଯେମନ୍ତ କାଳ-କୃତାନ୍ତ ଯେ
ଅକ୍ଷିରେ ଯୁତ କରି ଅଯୁତ          କୋଟି-ଭ୍ରମିତ ପ୍ରଜ୍ୱଳ ଜାତ—
ବେଦ କୋପିତ ଅପାଙ୍ଗ ପାତ କଲେ ଦିଗତ ଯେ
ଅଙ୍ଗହତ ହୋଇଲା ସେ ଚିତ୍ତଜାତ ଯେ
ଅଗ୍ନିହିଁ ତ ହୋଇଲା ତା ଭସ୍ମୀଭୂତ ଯେ
ଅନାଇ ଗତପ୍ରାଣ ଜୀବିତ—          ନାଥ ଅମିତ କ୍ରୋଧେ ଯୋଷିତ
କରେ ରୁଦିତ ହୃଦେ ତାଡିତ କରୁଣ ହାତ ଯେ । ୧୩

ଅମାନ ରୋଷବଶେ ମହେଶ          ଅନଙ୍ଗ ନାଶ କରି ବିରସ
ଲଭି ବିଶେଷ ତପେ ସନ୍ତୋଷ ନୋହେ ମାନସ ଯେ
ଅନେକ ଆଶ ବନ୍ଧ ପ୍ରକାଶ          ହେବାରୁ ଖାସ ପାଇ ଗିରୀଶ
ସେହୁ ଗିରୀଶଦେଶକୁ ବାସ ଗୁଡିଲେ ଈଶ ଯେ
ଅମ୍ବିକାର ଉଲ୍ଲାସ ହୋଇଲା କୃଶ ଯେ
ଅଷେ ଦଶାନ୍ତ ଶଶଧର-ଶୀରଷ ଯେ
ଅଶନ ବେଶ ସୂକ୍ଷ୍ମ ବାସ          ଖେଳ ବିଳାସ ଶଯ୍ୟା ବାସ
ହାସ ସୁରସ ସୁପରିହାସ ନଶିଲେ ବିଷ ଯେ । ୧୪

---

ବଶୀକରଣ ମନ୍ତ୍ରସ୍ୱରୂପା । ଅନୁସନ୍ଧାନେ—ଗତିକରେ । ଅସ୍ତ୍ରପ୍ରକର ଅସ୍ତ୍ରସମୂହ । କ୍ରୂର—ନିର୍ଦ୍ଦୟ । ଶମ୍ବରପର—କାମ । ଚମତ୍କାର—ଆଶ୍ଚର୍ଯ୍ୟକୃତ ।
୧୩ । ଅନ୍ଧକଜିତ—ମହାଦେବ । ରତିକାନ୍ତଶ୍ରାନ୍ତ—କାମର ଢଙ୍ଗ । ତ୍ୱରିତ—ଶୀଘ୍ର । କାଳକୃତାନ୍ତ—ଯମର ଯମ ପରି । ଅଯୁତ କୋଟି ପଦଦ୍ୱୟ ଏଠାରେ ଅସଂଖ୍ୟତା ପ୍ରକାଶ କରିବାକୁ ପ୍ରଯୁକ୍ତ ହୋଇଅଛି । ପ୍ରଜ୍ୱଳ ଜାତବେଦ—ଦାଉଦାଉ ହେଉଥିବା ନିଆଁ । ଦିଗତ—ଦିଗମାନଙ୍କରେ । ଅଙ୍ଗହତ—ଅଙ୍ଗହୀନ । ଚିତ୍ତଜାତ—କାମ । ଗତପ୍ରାଣ—ମୃତ । ଜୀବିତନାଥ—ପ୍ରାଣେଶ୍ୱର, କାମ । ଅମିତ—ଅଧିକ । ଯୋଷିତ—କାମସ୍ତ୍ରୀ, ରତି । ୧୪ । ଅମାନ—ଅପରିମିତ । ରୋଷବଶେ—କ୍ରୋଧହେତୁ । ମହେଶ—ଶିବ । ବିରସ—ଦୁଃଖିତ । ଆଶବନ୍ଧ—ବାଞ୍ଛିତ ବିଷୟରେ ବ୍ୟାଘାତ । ଶଶଧର ଶୀରଷ—ଚନ୍ଦ୍ରଚୂଡ଼ ମହାଦେବ । ସୂକ୍ଷ୍ମବାସ—ସୂକ୍ଷ୍ମବସ୍ତ୍ର (ଦୁକୂଳ) । ବାସ—ଗୃହ ।

[ ସର୍ବସ୍ୱନିବୃତ୍ତି ]

ଅଖିଳେଶ୍ୱର ଆତ୍ମଭୂ ସୁର— ଇନ୍ଦ୍ରାଦି ଶୁଭ ଇଷ୍ଟ ଯାହାର
ଉମା-ରୁଚିର-ଉଜ୍ଜ୍ୱଳପର ରୁଦ୍ର ଶଙ୍କର ହେ
ଅରୂପ ସ୍ମରଲୁପ୍ତପ୍ରକାର · ଏକା ଠାକୁର ଐଶ୍ୱର୍ଯ୍ୟଧର
ଓଁକାରାକ୍ଷର ଔନ୍ନତ୍ୟ ଯାର ଅତଃଙ୍ଗାତର ଯେ
ଅକବାଦି ଏତେ ସ୍ୱର ଛଡ଼ାର ଯେ
ଅଥ କାଦି କ୍ଷାନ୍ତର ବୀଜମନ୍ତ୍ରର ଯେ
ଅର୍ଦ୍ଧମାତ୍ରାର ପରେ ଯା ପୁର ମହାପ୍ରାନ୍ତର ସ୍ଥିତି ଯାହାର
ନୂତନବର ବଳଭଦ୍ରର ତତ୍ତ୍ୱକୁ ଦର ନହ । ୧୫

———

୧୫ । ଅଖିଳେଶ୍ୱର— ଯେ ବିଶ୍ୱର ଈଶ୍ୱର । ଆତ୍ମଭୂ—ବ୍ରହ୍ମା । ସୁର-ଇନ୍ଦ୍ର (ସୁରେନ୍ଦ୍ର)—ଇନ୍ଦ୍ର । ଆଦି—ପ୍ରଭୃତି ଦେବତାମାନଙ୍କର । ଶୁଭ—ମଙ୍ଗଳ । ଯାହାର ଇଷ୍ଟ—ବାଞ୍ଛିତ । ଉମା-ରୁଚିର-ଉଜ୍ଜ୍ୱଳପର—ପାର୍ବତୀଙ୍କ ମନୋହର ଶୃଙ୍ଗାର ରସ ଯାହାର (ପର) ପ୍ରଧାନ ଅର୍ଥାତ୍ ଶୃଙ୍ଗାର ଭାବରେ ଯେ ଉମାଙ୍କଠାରେ ଆସକ୍ତ । ଅରୂପ—ରୂପହୀନ । ସ୍ମରଲୁପ୍ତପ୍ରକାର—କନ୍ଦର୍ପର ବିନାଶକାରୀ । ଏକା ଠାକୁର—ଏକମାତ୍ର ବିଶ୍ୱନିୟନ୍ତା । ଐଶ୍ୱର୍ଯ୍ୟଧର—ଅଣିମା, ଲଘିମା ଇତ୍ୟାଦି ଐଶ୍ୱର୍ଯ୍ୟର ଧାରଣକାରୀ । ଓଁକାରାକ୍ଷର—ଯେ ସୃଷ୍ଟି ସ୍ଥିତି ପ୍ରଳୟ, ସତ୍ତ୍ୱ ରଜଃ ତମଃ ଓ ଶକ୍ତିର ସମବେତ ମୂର୍ତ୍ତି ।

ଅକାରେ ଭଗବାନ୍ ବ୍ରହ୍ମା, ଉକାରେ ବିଷ୍ଣୁରୁଚ୍ୟତେ ।
ମକାରେ ଭଗବାନ୍ ରୁଦ୍ରୋଽପ୍ୟର୍ଦ୍ଧ—ମାତ୍ରା ମହେଶ୍ୱରୀ । ଇତି ସ: ବଂ: ଅ:

ଅକାରଠାରୁ କ୍ଷକାର ପର୍ଯ୍ୟନ୍ତ ସମସ୍ତ ବର୍ଣ୍ଣ ବର୍ଣ୍ଣମାତୃକା ନାମରେ ଖ୍ୟାତ । ଅର୍ଦ୍ଧମାତ୍ରା—ଏହା ଶକ୍ତିର ନାମାନ୍ତର । ନାଦର (ସ୍ପନ୍ଦନର) ଏହା ମୂଳ ହେତୁ । ମହାପ୍ରାନ୍ତର—ପ୍ରଳୟ ପରେ । ଯାହାର ସ୍ଥିତି—ଯେ ଏକମାତ୍ର ଅବଶିଷ୍ଟ ରହନ୍ତି । ଦର—ଭୟ ।

# ଏକାଦଶ ଛାନ୍ଦ

## ରତି-ବିଳାପ

ଅଦେହ ହେବାରୁ ହର-ନେତ୍ରାନଳେ ରମଣ
ଅତି ଦୁଃଖେ କେଳଙ୍ଗ ଚିନ୍ତା କରଇ କାନ୍ତଗୁଣ * । ୧
ଅନାଥ କରଣ ନାଥ ଛାଡ଼ିଗଲ ହେ କାହିଁ
ଅଶୋଭ ଦିଶିବ ସିନା*ମୋର କାଟିଲେ କରୁ ଉନ୍ନବାସ୍ତ । ୨
ଅଳକୁ ସିନ୍ଦୂର ଚିତା ଫୋଟୁବଟି କେମନ୍ତେ
ଅଲଗା ଦିଶିବ ପରା ମୋ'ମୁଖ ଛାଠଙ୍କ ଦୂର ହୋନ୍ତେ । ୩
ଅଞ୍ଜନ ରଞ୍ଜନ ପୁଣି ନୋହିବ ମୋ ନୟନେ
ଅଏଁଳାର ଶୋଭା-ଗଭ ଜୂଡ଼ାରେ ମଣ୍ଡିବ ନାହିଁ ଧନ । ୪
ଅମୂଲ୍ୟ ହାରହିଁ ପରା ନ ମଣ୍ଡିବ ମେ ହୃଦେ
ଅଳଚା ସରୁ କରି ଯେଉଁବ ନାହିଁ ଏ ଗ୍ଳୁଣ୍ଠ ପଦେ । ୫

ଅଶ୍ରୁଝର ଝରି ନେତ୍ର ଦିଶିବ ଯେ ଅଶୋଭନ
ଅଳକରେ କର ମାରୁ ମାରୁ ସରବ ନାହିଁ ଦିନ । ୬
ଅନୁଦିନେ ଆନେ ଆନେ ପତ୍ରାବଳୀ ମୋ କୁଚେ ଲିହ୍ନ
ଅଳିଆଳୀ ମକରଚିତ୍ରକୁ ଚିହ୍ନିବ ଏବେ କେହ୍ନୁ । ୭

---

### ଏକାଦଶ ଛାନ୍ଦ

୧ । ଅଦେହ—ଦେହହୀନ । ରମଣ—ସ୍ୱାମୀ, କାମ । କେଳଙ୍ଗ—ରତି । ୨ । ଉନ୍ନବାସ୍ତ-ଉନ୍ନ ହେଉ ଓ କାଚ । ୩ । ଅଳକୁ— ଲଲାଟରୁ । ଅଲଗା-ବିଲକ୍ଷଣ (ଅସୁନ୍ଦର) । ୪ । ଶୋଭାଗଭ-ସୁନ୍ଦରମାଳା । ୬ । ଅଶ୍ରୁଝର— ଲୁହଧାର । ୭ । ଅନୁଦିନେ— ପ୍ରତିଦିନ । ଆନେ ଆନେ—ନୂଆ ନୂଆ । ପତ୍ରାବଳୀ—କସ୍ତୁରୀ,

୧ । (କ) * କେଳଙ୍ଗ ବିଳାପ କରଇ ଚିନ୍ତା ପୁଣ । ଇତି

୨ । (ଖ) * ମୋ କର କାଟିଲେ ଉନ୍ନବାସ୍ତ ।

ଅରନ୍ଧ୍ରେ ଦିନ କ୍ଷଣ ତ ଯୁଗ ପରାଏ ଜାଣି
ଅଙ୍କ ବିନା ପଲଙ୍କେ ବସଇ ନାହିଁ ମୁଁ ଅଲକ୍ଷଣୀ । ୮

ଅଖିଳମଣ୍ଡନା ହୋଇ ନିରମାଷୀ ତ ହେଲି
ଅବଲମ୍ବେ ଫାଟିଯା ହୃଦୟୁ ହା ପ୍ରାଣନାଥ ବୋଲି । ୯

ଅଙ୍କେ ଥାଇ ମୁଁ ଛୁଇ ନ ଛୁଉଇ ହେ ନାଥ*
ଅଙ୍ଗନାକୁଳକୁ ହେଲି କଳଙ୍କ ଘେନିଲେ ପ୍ରୀତିପଥ । ୧୦

ଅଙ୍ଗ ଭସ୍ମ ହେଲା ତୋର ଅଶ୍ମ ହେଲା ମୋ ଛାତି
ଅଗ୍ନି ନେଇ ମୋ ପରେ ନ ପକାଇଗଲେ ପଶୁପତି । ୧୧

ଅକାଠ ଖାଇଛୁ କିଛୁ ନ କାଟଇ ପ୍ରାଣକୁ
ଅଛୁ ଏବେ ଛି-ଛି ବାଣୀ ଶୁଣି ଲଭିବ କା ପଣକୁ । ୧୨

—ପୁନରୁକ୍ତ ବଦାଭାସ—

ଅନ୍ତର ହୃଦରୁ ଆଶ୍ଳେଷରେ କାନ୍ତ ହାର
ଅସମପାରିତ ରତି କାମକୁ ଦିଅନ୍ତି ଦୃଷ୍ଟାନ୍ତର । ୧୩

---

ଚନ୍ଦନାଦିରେ ରଚିତ ଚିହ୍ନ । ଲିପ୍ତ—ରଚନା କରୁ । ମକରୀ—ଗଣ୍ଡଦେଶରେ ଚନ୍ଦନାଦିରେ ରଚିତ ଚିହ୍ନ । ୮ । ଅରନ୍ଧ୍ରେ—ନିର୍ବିଶେଷରେ । ୧୦ । ମୁଁ ଅଙ୍କରେ (କୋଳରେ) ଥାଏ ଓ ଛୁଇଲୁ ସୁଦ୍ଧା ଛୁଉଁ ନାହିଁ । 'ମଛୁଇଁ' ପାଠକଲେ—ମୁଁ କୋଳରେ ଥାଇଁ ତୁମ୍ଭ ଦେହ ଛୁଇ ସଙ୍ଗେ ମୋ ଦେହ ଛୁଇଲୁ ମିଶାଇଥାଏ । ୧୧ । ଅଶ୍ମ—ପଥର । ୧୨ । ଅକାଠ—ଏକଜାତୀୟ ପାହଣ୍ଡୀୟ ଲତା । ଏହା ନିୟମପାଳନ ପୂର୍ବକ ଖାଇଲେ ଶରୀର ବଜ୍ରପରି କଠିନ ହୁଏ ବୋଲି ପ୍ରବାଦ ଅଛି । ୧୩ । ଏଠାରୁ ଛାନ୍ଦ ଶେଷ ପର୍ଯ୍ୟନ୍ତ ପୁନରୁକ୍ତବଦାଭାସ ଅଳଙ୍କାର । ଲକ୍ଷଣ—ବାକ୍ୟରେ ବ୍ୟବହୃତ ପଦମାନ ଆପାତତଃ ସମାନାର୍ଥକ ବୋଧ ହେଲେହେଁ ପରିଣାମରେ ଭିନ୍ନାର୍ଥ ବୁଝାଇଲେ ତାହାକୁ ପୁନରୁକ୍ତ ବଦାଭାସ କହନ୍ତି । ଯଥା—ଅନ୍ତର, ହୃଦରୁ; ଅନ୍ତର ଓ ହୃଦୟ ସମାନାର୍ଥକ, ତଥାପି ଏଠାରେ ଅନ୍ତର-ବିଚ୍ଛେଦ ହୃଦରୁ—ଚିନ୍ତା କରିବାରୁ; ହୃଦୟର ଧର୍ମ ଚିନ୍ତା କରିବା; ତେଣୁ ତାହାର କାର୍ଯ୍ୟ ବୁଝାଇବାକୁ ଉକ୍ତ ପଦର ବ୍ୟବହାର । ଆଶ୍ଳେଷ—ଆଲିଙ୍ଗନ । କାମ ଓ ରତିର ପ୍ରୀତି ଅସମ (ଅସାଧାରଣ) ବୋଲି ଦୃଷ୍ଟାନ୍ତ (ଉଦାହରଣ) ଦେଇଥାନ୍ତି ।

ଅହ ଅହକ ଚରିତ ଚିନ୍ତିଲେ ତୋ ବର ପତି
ଅନ୍ତ ଶେଷମୁଖରେ ହେବ କି କେ ମୋର ଭୂପତି । ୧୪

ଅଙ୍ଗତନୁ ହେବ ଗୁଣି ଗୁଣମାନ ସେ ମନେ
ଅମ୍ବୁ ନିରନ୍ତରେ ଝରି ନୟନୁଁ ପୂରିବ ଏ ସଦନେ । ୧୫

ଅହିନାଗ ପରି ଅଙ୍ଗ ପରେ ହୋଏ ଏହାର
ଅଚଳ ପର୍ବତବତ ଏ ଝିନ ବସନ ଲାଗେ ଭାର । ୧୬

ଅମ୍ବୁଦଘନଶ୍ୟାମଳ ସୁନ୍ଦର ତୋ ଶ୍ରୀଅଙ୍ଗ
ଅବ୍ଜ ପଦ୍ମ ସରି ନିକି ମୁଖକୁ ଧଇର୍ଯ୍ୟ କରେ ଅଙ୍ଗ । ୧୭

ଅରୁଣ ବାଳାର୍କ ଜିଣି ଶୋଭା ଦିଶେ ଅଧର
ଅଳ୍ପ ଦରହସିତେ ଈକ୍ଷିତେ ମୋହେ ସେ ତ୍ରିନାପୁର । ୧୮

ଅବନୀର ସାର ତୁମ୍ଭ ଜନ-ଆନନ୍ଦକାରୀ
ଅନନ୍ତ ସୁଖରେ କ୍ରୀଡ଼ା କରାଉ କୀଟରୁ ବ୍ରହ୍ମେ ପୂରି । ୧୯

ଅଗ୍ନି ପାବକ ଅଙ୍ଗ ତୋ ଦହିଲ ଯେ ଅଦୋଷେ
ଅମର ଦେବ ତୋ ପ୍ରାଣ ଘେନାଇଁ ରହିଲେ ସ୍ୱର୍ଗବାସେ । ୨୦

ଅବ୍ଜାସନ ଆତ୍ମଭୂ ମାଗିଲୁରେ ନ ବରିରି
ଅପବନରେ କି ତୃଣ ନଳଇ ଉଆଣେ ଏ ତୋହରି । ୨୧

---

୧୪ । ଅହ ଅହକ —ଦିନ ଦିନକର । ବରପତି-ଶ୍ରେଷ୍ଠ ସ୍ୱାମୀ । ଶେଷ-ବାସୁକି । ତୁମ୍ଭର ଦିନ ଦିନକର ପ୍ରୀତିକଥା ବାସୁକିର ସହସ୍ର ମୁଖରେ ମଧ୍ୟ କହିହେବ ନାହିଁ । ୧୫ । ଅଙ୍ଗ ତନୁ ହେବ—ଶରୀର କ୍ଷୀଣ ହେବ । ସଦନେ—ଘରେ । ୧୬ । ଅହିନାଗ-ଅହିଶ୍ରେଷ୍ଠ । ଅଚଳ ପର୍ବତ-ଦୃଢ଼ ପର୍ବତ । ୧୭ । ଅମ୍ବୁଦ ଘନଶ୍ୟାମଳ —ମେଘ ପରି ଗାଢ଼ ନୀଳବର୍ଣ୍ଣ । ଅବ୍ଜ ପଦ୍ମ ସରି —ଚନ୍ଦ୍ର ଓ ପଦ୍ମର ବିରୋଧ ପରି । ନିକି—ସତେ କି ? ଉତ୍ପ୍ରେକ୍ଷାବ୍ୟଞ୍ଜକ ଅବ୍ୟୟ । ୧୮ । ଅରୁଣ ବାଳାର୍କ-ରକ୍ତବର୍ଣ୍ଣ ପ୍ରାତଃକାଳର ସୂର୍ଯ୍ୟ । ୨୦ । ପାବକ ଅଙ୍ଗ-ପବିତ୍ର ଶରୀର । ଅମରଦେବ -ଇନ୍ଦ୍ର ।୨୧ । ଅବଜାସନ- ବ୍ରହ୍ମା । ଆତ୍ମଭୂ ଆତ୍ମାରୁ ଜାତ,କାମ । ଅପର ପକ୍ଷରେ ପୁତ୍ର ବା କନ୍ୟା ମାଗଣ ଅତି ଅନୁଚିତ, ଏହା 'ଆତ୍ମଭୂ' ପଦ ପ୍ରୟୋଗ ଦ୍ୱାରା କଟାକ୍ଷିତ । ଅପବନରେ-ପବନ ବହୁ ନ ଥିବା ବେଳେ, ଅର୍ଥାତ୍ କାରଣ ନ ଥାଇ

ଅକ୍ଷିରେ ଅଧୀରେକ୍ଷଣ କାନ୍ତ ନାୟକ ଗୁଣ
ଅନୁସରି ହାତ କରେ ଚାଉଁଇ କାନ୍ଦଇ ପୁଣପୁଣ । ୨୨

ଅଙ୍ଗ ଚନ୍ଦ୍ରଦଶ୍ୱର ହୁଅଇ ଯେ କାତର
ଅବା ଯିବ ପବଣ ବାହାର କୁଣ୍ଠିତ କଣ୍ଠସ୍ୱର । ୨୩

ଅମ୍ବୁଜାତଜନ୍ମ ଅଗ୍ରେ ଜଣାଇଲେ ଯେ ସୁର
ଅଦେହ କାମ ତ ହୋଇଲା କେମନ୍ତେ ହୋଇବ ଏ ସଂସାର । ୨୪

ଅମର ଅମୃତବଳେ ଜୀଆଇଲେ ମଦନ
ଅୟେ ବଳଦେବ ବଳଭଦ୍ରର ମଙ୍ଗଳ କର ଦାନ । ୨୫

---

# ଦ୍ୱାଦଶ ଛାନ୍ଦ

## ପାର୍ବତୀଙ୍କ ସ୍ୱପ୍ନ

ଅସିତକଣ୍ଠେ ଉତ୍କଣ୍ଠା ବନ୍ଧ
ଅଦ୍ରିସୁତା ଦୁଃଖେ ଛନ୍ତି ଶୋଇ
ଅଚେତନବଶେ ଦେଖିଲେ ସ୍ୱପ୍ନେ ସେ
ବରଷା ସମୟ ଅଛି ହୋଇ । ୧

---

କାର୍ଯ୍ୟ ହୁଏ ନାହିଁ । ୨୨ । ଅଧୀରେକ୍ଷଣ—ଅଧୀର (ବ୍ୟସ୍ତ) ଚକ୍ଷୁ ହୋଇ । କାନ୍ତ—ଅଭିଲଷିତ । ଅମ୍ବୁଜାତ—ପଦ୍ମ । ତହିଁରୁ ଯାହାର ଜନ୍ମ—ବ୍ରହ୍ମା । ବଳଦେବ—କେନ୍ଦୁଝର ରାଜବଂଶର ଇଷ୍ଟ ଦେବତା ।

---

**ଦ୍ୱାଦଶ ଛାନ୍ଦ**

୧ । ଅସିତ କଣ୍ଠେ—ନୀଳକଣ୍ଠେ ବା ମହାଦେବଙ୍କଠାରେ । ଅଚେତନବଶେ—ବାହ୍ୟଜ୍ଞାନଶୂନ୍ୟ ହୋଇଥିବାରୁ ।

ଅମ୍ବୁଦ ଗର୍ଜନ ଗମକୁଛି
ଅବଳାଙ୍କ ଚିତ୍ତ ଚମକୁଛି
ଅସି କରକଶି — କାଶି କାମ କ ସେ
ବକୁଳ-ବିଳାସେ ଝମକୁଛି । ୨
ଅଚଳ ନୂଳେ ଚନ୍ଦ୍ରକୀ ଚଡ
ଅନ୍ତ ଉଠେ ଦେଲ କେକା ରଡ଼
ଅସ୍ଥିରେ ଏଥିରେ — ପଥରେ ପଥିକ
ମଣିବନ୍ଧୁ ଗଲ ନାଡ଼ୀ ଗୁଡ଼ । ୩
ଅହ୍ନେ ପୂର୍ଣ୍ଣ ପୂର୍ଣ୍ଣ ଅନ୍ଧକାର
ଅନୁସଙ୍ଗରେ ତସ୍କର ବାର
ଅସିତ ଭୂଷିତ— ବାସ ବେଶେ କେଉଁ
କୁନ୍ଦନାଙ୍ଗୀ କଲ ଅଭିସାର । ୪
ଅନିଳ ପ୍ରବଳେ ପ୍ରଚଳିଲ
ଅଙ୍ଗେ ବିଦେଶୀର ନ ଚଳିଲ
ଅମର୍ଷ କଣ୍ଠ ନୃ— ଦଣ୍ଡ ଧନୁ ତୋ.ଷ
ତନୁ ଅତନୁ ତରଳ କଲ । ୫
ଅଜସ୍ରେ ଖଣ୍ଡଳେ ମେଘ ମଣ୍ଡ
ଅଜଡ଼ ଦେଉଛି ଘଡଘଡ଼
ଅକ୍ଷି ବିଦ୍ୟୁଲ୍ଲତା — ଲକ୍ଷି ପାରୁ ନାହିଁ
ଦେଖି ଯା ପଲକ ଯାଏ ପଡ଼ । ୬

---

୨ । ଗମକୁଛି—ଗମଗମ ଶବ୍ଦ କରୁଛି । କାମ ବକୁଳ ଛଳରେ ଖଡ୍ଗକୁ ହାତରେ କରକଶି (ଦୃଢ଼ରୂପେ ଧରି) କାଶି (ଖଣ୍ଡିକାଶ ମାରି) ଝମକୁଛି । -ଝମଝମ କରୁଛି କି ? ଏଠାରେ ଘଡ଼ଘଡ଼ ଶବ୍ଦ ଝଙ୍କାର । ୩ । ଚନ୍ଦ୍ରକୀ-ମୟୂର-କେକା—ମୟୂରର ଧ୍ୱନି । ମଣିବନ୍ଧ—ହାତ ଗଣ୍ଠି । ୪ । ଅହ୍ନେ—ଦିନରେ । ପୂର୍ଣ୍ଣ ପୂର୍ଣ୍ଣ- ଅତିପୂର୍ଣ୍ଣ । ତସ୍କରବାର-ଚୋରମାନେ । ଦିନରେ ଅସିତ···ଅଭିସାର- କୃଷ୍ଣବର୍ଣ୍ଣ ଅଳଙ୍କାର ଲୁଗା, କସ୍ତୁରୀ ଇତ୍ୟାଦି କୃଷ୍ଣ ଦ୍ରବ୍ୟରେ ଭୂଷିତା ହୋଇ କେଉଁ ସ୍ୱର୍ଣ୍ଣବର୍ଣ୍ଣା କୃଷ୍ଣାଭିସାରିକାରୂପରେ ଅଭିସାର କଲା । ଦିନରେ ଏହି ଭ୍ରମ ହେଉଛି । ୫ ଅମର୍ଷ··· ତୋଷ-ଇନ୍ଦ୍ରଧନୁର ଉଜ୍ଜ୍ୱଳତା । ଅତନୁତରଳ-କନ୍ଦର୍ପବଶରେ ଅସ୍ଥିର ।· ୬ । ଅକ୍ଷି···ପଡ଼-ଅକ୍ଷି ବିଦ୍ୟୁଲତାକୁ ଦେଖି ପାରୁନାହିଁ, କାରଣ ପଲକ ପଡ଼ି ଯାଉଛି ।

ଅନଙ୍ଗେଶ ଡାହୁକ-ଡାକ ଭୂରି
ଅଗ୍ରେ ବଜାଉଛନ୍ତି ଭେକ ଭେରୀ
ଅତନୁ-ରାଜନ — ବିଜୟ କରେ କି
ଅଜେୟ ଶତ୍ରୁଙ୍କୁ ଜୟ କରି । ୭
ଅଚଳ-ଗିରି-ଗଡ଼ରେ ଜାଣି
ଅମ୍ବୁଦ-ତମ୍ବୁ ତା ଅଛି ଟାଣି
ଅନିଳ-ଦୂତ ସେ — ଦଶେ ଦିଶେ ପେଷି
ଖୋଜୁଛନ୍ତି ବିରହୀ ବିରହିଣୀ । ୮
ଅଟେ ପ୍ରକଟ କେତକୀ-କୁନ୍ତ
ଅମ୍ବୁଧାରକାଣ୍ଡ କାଣ୍ଡ ସତ
ଅର୍ଜୁନ-ବାଜି— ବଳାଗ୍ଳ ସାଜି
ଅବିରତେ କରେ ଗତାଗତ । ୯
ଅନ୍ଧାର ପ୍ରଚଣ୍ଡ ଗୁଣ୍ଡବାର
ଅନୁଦିନେ ରୋପିଅଛି ମାର
ଅବକଳି ହଳ— ପ୍ରିୟ-କଳୀ-ଗୁଳି
ବିଜୁଳିଜାଳ କାମୁକା ତାର । ୧୦
ଅବଶ୍ୟ ମଲେ ବିଯୋଗି-ଯୁବା
ଅଖିଳେ ତାଙ୍କୁ ରଖିବ କେ ବା
ଅଙ୍ଗନା-ପୟୋଧ— ର-ପରବତରେ
ପଶିଲେ ପ୍ରାଣ ପାଇବେ ଅବା । ୧୧

---

୭ମ ପଦ ଠାରୁ ୧୧ଶ ପଦ ପର୍ଯ୍ୟନ୍ତ କାମଙ୍କର ବିଜୟଯାତ୍ରାରୂପେ ବର୍ଷା ବର୍ଣ୍ଣନା । ୮ । ଅଚଳ...ଟାଣି—ଅଚଳ (ଅଟଳ) ସହଜରେ ଅତିକ୍ରମ କରି ନ ହେବା ଭଳି ପାହାଡ଼ ପାଖରେ ଗଡ଼ ବାନ୍ଧି ରହିଲେ ବିଜୟୀ ରାଜାର ଶତ୍ରୁ-ଆକ୍ରମଣ-ଭୟ ନ ଥାଏ । ୯ । ଧଳାବଗରୂପ ଘୋଡ଼ାରେ ଯିବା ଆସିବା କରୁଛନ୍ତି । ବର୍ଷାକାଳରେ ମେଘପାଖରେ ବକ ଉଡ଼ିବା ସ୍ୱାଭାବିକ । ୧୦ । ଗୁଣ୍ଡ-ତୋପ, ରୋପିଅଛି-ସଜାଡ଼ି ରଖିଛି । ମାର-କାମ । ଅବକଳି-ସମ୍ଭାବନା କରୁଛି । ହଳପ୍ରିୟ-କଳୀ—ବଳଦେବଙ୍କର ପ୍ରିୟ କଦମ୍ବକଢ଼ି । ଅଙ୍ଗନା ପୟୋଧର ପରବତ-କାମିନୀର କୁଚରୂପ ପର୍ବତ । ଯୁବକଙ୍କ ପ୍ରାଣରକ୍ଷା ପାଇଁ ପର୍ବତଗୁହା ଆଶ୍ରୟ କରେ । କାମୁକା-ଦେଉଁ

ଅନଙ୍ଗରଙ୍ଗେ ତରଙ୍ଗ ଢୋଇ
ଅଧ୍ୱନେ ଦାନ୍ତକୁ ବାଳା ଛୁନ୍ତି
ଅଳ୍ପବୟସେ ଘଟେ ପରବାସେ ମୋର
ବର ବରଷା ବଞ୍ଚିବେ କେହ୍ନେ । ୧୨
ଅପାର ବେଳୁ କାନ୍ତକୁ ଚୁମ୍ବି
ଅବଳା କେ ରୋଷେ ଥିଲା ବସି
ଅମିତ ନିର୍ଘାତ— ଘାତ ଉତପାତ—
ଯାତେ ଚଣ୍ଡକୋଳେ ଗଲା ପଶି । ୧୩
ଅନ୍ତର ମଣି କେ କାଢି ହାର
ଅମୃତ-କୁଚ-କଳଶ ତାର
ଅଜାଡ଼ି କାନ୍ତକୁ ଝଜାଡ଼ି ଭିଡନ୍ତେ
ଉଜାଡ଼ିଦେଲା କନ୍ଦର୍ପ ପୂର । ୧୪
ଅଙ୍ଗନା-କୁଚ-କନ୍ଦରେ କେହ୍ନେ
ଅନଙ୍ଗ-ଅନର୍ଥେ ଲୁଚ ରହ୍ନେ
ଅଶ୍ମକ ଚୁମ୍ବକେ ଜଡ଼ିଲା ପରି କେ
ଭିଡ଼ିଲା ତନୁରେ ତନୁ ଦେଇ । ୧୫
ଅଜାଗ୍ରତେ ଦେଖିଲେ ଏ ଗୀତ
ଅସତ୍ୟ କରି ନ ଘେନେ ମତ
ଅନ୍ଧକ-ଧ୍ୱନାଶୀ ଏହ୍ନିକାଳେ ଆସି
ମିଳିଲେ ତରୁଣୀ-ମଣି-କନ୍ତ । ୧୬
ଅନେକ ପ୍ରକାରେ ସ୍ତୁତି କରି
ଅଙ୍କରେ ପଙ୍କଜାକ୍ଷୀକି ଧରି
ଅଧରୁ ମଧୁର ମଧୁକୁ ଆହାର
କଲେ ତ ବନ୍ଧୁର ମନ ହରି । ୧୭

---

ବାଡ଼ ବା ଚକ୍ର ଖଣ୍ଡିକ ଅଗରେ ନିଆଁ ନେଇ ତୋପରେ ଲଗାନ୍ତି । ୧୨ । ତରଙ୍ଗ—ଅସ୍ଥିର । ଅଧ୍ୱନେ—ବାଟରେ । ବର—ସ୍ୱାମୀ । ବରଷା ବଞ୍ଚିବେ କେହ୍ନେ-ବର୍ଷା ଋତୁ କପରି କଟ ଇବେ । ୧୩। ନିର୍ଘାତ—ଗର୍ଜ୍ଜନ ।୧୪। ଅନ୍ତର—ବ୍ୟବଧାୟକ, ଯେ ଅଲଗା କରି ରଖେ । ୧୫ । ଅଶ୍ମକ-ପଥର । ୧୬। ଅଜାଗ୍ରତେ—ସ୍ୱପ୍ନରେ ।

ଅବଲମ୍ବ କର କୁଚକୁମ୍ଭ
ଅବଲମ୍ବେ କଲେ ପରିରମ୍ଭ
ଅନା ଧନ ! କହ ଅନ୍ତର୍ଦ୍ଧାନ ହୋଇ
ସଂଗେ ଗଲ କାହିଁ ନିଦ୍ରାରମ୍ଭ । ୧୮

ଅକ୍ଷି ଫିଟାଇ ହଅନ୍ତେ ଶୂନ୍ୟ
ଅନ୍ତିକେ ନାହାନ୍ତି ପ୍ରାଣସାଇଁ
ଅକାଳ-ଚଡ଼କ ସେକାଳେ ମସ୍ତକ—
ପଡ଼େ ଢେଳି କରୁଡ଼ ହୋଇ । ୧୯

ଅର୍ଦ୍ଧ ଆକାର କରଣ ଧନୁ
ଅଗ୍ରେ ପ୍ରହାରେ କୁସୁମଧନୁ
ଅହ ଚକ୍ରବାକ କାନ୍ତା ସଙ୍ଗ ପରି
ସ୍ୱପନ ଭଙ୍ଗ ନୋହିଲ ମନୁଁ । ୨୦

ଅକ୍ଷି ବୁଜନ୍ତି ଦେଖିବା ପାଇଁ
ଅନୁଭବ ଆଉ ହେବ କି ନାହିଁ
ଅନୁରାଗେ ଅନୁ— କ୍ଷଣେ କ୍ଷିଣରେ
ପ୍ରକାଶିଲେ କାଶୀପୁର-ସାଇଁ । ୨୧

ଅସମ୍ଭାଳ ଶୋକେ ଦୁଃଖୀ ହୋଇ
ଅଶରଣ ହେଲେ ଚନ୍ଦ୍ରମୁଖୀ
ଅସର ନ କର ଅସମ-ଶାୟକ
ଅସଂଖ୍ୟ ଶାୟକ ଦେଲ ଗୁନ୍ଥି । ୨୨

ଅନ୍ଧକାର ହରେ ଦଶହର
ଅନ୍ଧକାରି ଭବ ଦିଗବାସ

---

୧୮ । ପରିରମ୍ଭ—ଆଲିଙ୍ଗନ । ନିଦ୍ରାରମ୍ଭ—ନିଦ୍ରାର କାର୍ଯ୍ୟ । ୨୦ । ଅର୍ଦ୍ଧ ଆକାର ଚନ୍ଦ୍ରପରି ବୃତ୍ତାକାର । ଅହଚକ୍ରବାକ—ଦିବସର ଚକ୍ରବାକ । ଦିନରେ ଚକୁଆ-ଚକୀର ମିଳନ ଓ ରାତିରେ ବିଚ୍ଛେଦ ହୋଇଥାଏ । ୨୧ । ଆଖି ବୁଜିଲେ କେଜାଣି ବା ଆଉ ଥରେ ସ୍ୱପ୍ନ ଦେଖିବ ଏହି ଆଶାରେ । ଅନୁରାଗେ—ରକ୍ତ ଆଡ଼େ । ଅନୁକ୍ଷଣେ—ପ୍ରତି ମୁହୂର୍ତ୍ତରେ । କାଶୀପୁର ସାଇଁ—ମହାଦେବ । ୨୨ । ଅସର—ଅବସର । ଅସମଶାୟକ-ବିଷମେଷୁ, କାମ । ଦେଲ ଗୁନ୍ଥି-ଭରିଦେଲ, ସର୍ବାଙ୍ଗରେ ବିଦ୍ଧ କଲା । ୨୩ । 'ହେ ଅନ୍ଧକଶତ୍ରୋ, ହେ ଭବ, ହେ ଦିଗମ୍ବର, ହେ ଅଗତିର ଗତି

ଅଗଣିତଗଣ ଶ୍ରୀ— କ ଚୂର ଶଙ୍କରର
ନାମ ଅଧରରେ କଲେ କାଯ । ୨୩
ଅହି-ଭୂଷଣ ଅହିଂସାପର
ଅହିତ ସୁହିତ ସମ ଯାର
ଅହିମକର-ହି— ମକର ଅନଳ—
ଅକ୍ଷ ପକ୍ଷକରେ ଭଞ୍ଜପାର । ୨୪

— ——

# ତ୍ରୟୋଦଶ ଛାନ୍ଦ

## ପାର୍ବତୀ-ବିରହ

ରାଗ—ଆଷାଢ଼ଶୁକ୍ଳ

(ପ୍ରାନ୍ତ ଯମକ)

ଅଚଳ-ଦୁଲାଳୀ ଅତି ଦୁଃଖରେ
ଅର୍ଦ୍ଦିତ ହୋଇ କାମ-ବିଶିଖରେ
ଅମ୍ବୁପୂର୍ଣ୍ଣ କର ଅମ୍ବୁଜାକ୍ଷରେ
ଅପ୍ରସନ୍ନଭାବ ରଖି ମୁଖରେ
ଅଙ୍ଗ-ବିମୁଖରେ
ଅତି ଘର୍ମଶ୍ୱାସ ଚେଳନ୍ତି ଖରେ । ୧

---

ଇତ୍ୟାଦି ନାମ ଉମାଙ୍କ ଓଷ୍ଠରେ ବାସକଲା । ୨୪ । ଅହିଭୂଷଣ—ସର୍ପଭୂଷିତ । ଅହିଂସାପର—ହିଂସାଶୂନ୍ୟ । ଅହିତ—ଅମଙ୍ଗଳ । ସୁହିତ—ମଙ୍ଗଳ, ଉଭୟ ଯାହାର ସମାନ ଓ ଯାହା ପବିତ୍ର ଗଙ୍ଗା ଓ ଚିତାଭସ୍ମ ଧାରଣଦ୍ୱାରା ସୁସ୍ପଷ୍ଟ । ଅହିମକର—ସୂର୍ଯ୍ୟ । ହିମକର—ଚନ୍ଦ୍ର । ଅନଳ ଅଗ୍ନି । ଏମାନେ ଯାହାଙ୍କର ଅକ୍ଷ । ମହାଦେବଙ୍କର ଦକ୍ଷିଣ ଚକ୍ଷୁ ସୂର୍ଯ୍ୟ, ବାମ ଚକ୍ଷୁ ଚନ୍ଦ୍ର ଓ ଲଲାଟସ୍ଥ ଚକ୍ଷୁ ଅନଳ ବୋଲି ଶାସ୍ତ୍ରପ୍ରସିଦ୍ଧି ଅଛି । ପକ୍ଷ—ସହାୟ ।

**ତ୍ରୟୋଦଶ ଛାନ୍ଦ**

୧ । ଅମ୍ବୁଜାକ୍ଷ—ପଦ୍ମନେତ୍ର । ଅର୍ଦ୍ଦିତ—ପୀଡ଼ିତ । ବିଶିଖ—ବାଣ ।

ଅନ୍ତର୍ଗତରେ ଫଡ଼ନ୍ତେ ସ୍ୱପନ
ଅକ୍ଷେ ଦଶନ୍ତ ଧବଳ ଲପନ
ଅଚେତନରେ ପ୍ରକଟେ କମ୍ପନ
ଅନ୍ତରେ ଜଳେ ଖରହ ତପନ
ଅଗ୍ନି ଜ୍ୱଳନ
ଅଧିକେ କରେ ଚନ୍ଦନ-ଲେପନ । ୨
ଅନାଦର ହେଲା ନାନା ଭୋଗରେ
ଅମୃତ-ଅଶନ ମଣିଲେ ଗରେ
ଅକ୍ଷି ପଲକ ଲେଖିଲେ ଯୁଗରେ
ଅସିତଗଳ ସକଳ ଦଗରେ
ଅଗ୍ରେ ସବୁଗରେ
ଅନାଶେ ଦଶିଲେ ଦୃଗଯୁଗରେ । ୩
ଅଙ୍ଗତପତ ସଂସାର-କାହାର
ଅନାଶେ ହୃଦେ ଫୁଟିପଡ଼ ହାର,
ଅବଲୋକନ ତ ନାହିଁ ଯାହାର
ଅଧୈର୍ଯ୍ୟ ଏଥି ନୋହିବ କାହାର
ଅକ୍ଷିରୁ ତାହାର
ଅନ୍ତର ହେଲା ପଲକଦ୍ୱାର । ୪
ଅନୁମାନ କଲେ ସଖୀନିକର
ଅଟେ ଏ ପୀଡ଼ା ରତନାଥଙ୍କର
ଅନ୍ୟ ବେଦନା ନୁହଇ ନାକର
ଅତନୁ-ସାନ୍ତ୍ୱନା ଶକଥା କର
ଶୋଦଅ କର
ଅନାଅ ପୂରନ୍ତୁ ତପ୍ତି-ପ୍ରକର । ୫

---

ଅପ୍ରସନ୍ନ—ବିରସ । ଖରେ—ଶୀଘ୍ର ଶୀଘ୍ର । ୨ । ଧବଳଲପନ-ଧଳାମୁଖ, ଶିବ । ଖରହତପନ—ବଜ୍ରଦ୍ୱସୂର୍ଯ୍ୟ । ୩ । ଗରେ—ବିଷରୂପରେ । ଲେଖିଲେ—ମନେ କଲେ । ଅସିତଗଳ—ନୀଳକଣ୍ଠ, ମହାଦେବ । ଦୃଗଯୁଗରେ—ଦୁଇଆଖିରେ । ୪ । ବିରହ ତାପରେ ଦେହ ମୁକ୍ତାହାର ଫୁଟିବା କବି ପ୍ରୌଢ଼ୋକ୍ତିସିଦ୍ଧ । ପଲକଦ୍ୱାର--ଅଖିପତାର ପଡ଼ିବା ଖୋଲିବା । ୫ । ଅତନୁସାନ୍ତ୍ୱନା-କାମଭାବଶାନ୍ତି । ଅନ୍ୟ ପକ୍ଷେ ଅଧିକ ସାନ୍ତ୍ୱନା । ଅତନୁ—ଅଧିକ, ତନୁ (ଅଳ୍ପ) ନୁହେଁ ।

ଅବଜ-ପଲ୍ଲବେ ତଳ୍ପ ରଚିଲେ
ଅବଳାମଣିଙ୍କ ତନୁଁ ସଞ୍ଚିଲେ
ଅନିଳବଳେ ଉଡ଼ିବ ପାଞ୍ଚିଲେ
ଅଳପ ଧୀରେ ପଲ୍ଲବେ ବାନ୍ଧିଲେ
　　ଅଶ୍ରୁକେ ମୁଞ୍ଚିଲେ
ଅବ୍ଜ-କଳା-ତୁଳା ବାଳା ଅଞ୍ଚିଲେ । ୬
ଅପରାଜିତା ଚଣ୍ଡୀ-ବିବରଣ
ଅଭୟାଦି ସ୍ତୋତ୍ର କଲେ ବରଣ
ଅର୍ତ୍ତିନାଶନ ଆରତି-ତାରଣ
ଅଭୟ କର ନାମ ଉଚ୍ଚାରଣ
　　ଅଘ-ନିବାରଣ
ଅତି ଟେକରେ କେ କରେ ସ୍ମରଣ । ୭
ଅରିଷ୍ଟବଳି ଦିଏ କେ ସୁ-ବାରେ
ଅଭୀଷ୍ଟ ଚର୍ଚ୍ଚାରେ ଗଣକବାରେ
ଅଙ୍ଗୁଳି-ଯୋଗେ କେ ନିଶ୍ୱାସ ବାରେ
ଅବଦ୍ଧ-ଖଡ଼ିପାତଇ କେ ବାରେ
　　ଅନିଷ୍ଟ ନିବାରେ
ଅମୃତ-ଭୋଗ ଯାଚେ କେ ଦେବାରେ । ୮
ଅଙ୍ଗନା କେ ପିକ-ଡ଼ାକ ବାହୁଛି
ଅଳି-ଝଙ୍କାର ଦୂରୁଁ ନିବାରୁଛି

---

୬ । ଅବ୍ଜ ପଲ୍ଲବେ-କୋମଳ ପଦ୍ମପତ୍ରରେ । ସଞ୍ଚିଲେ-ଥୋଇଲେ, ଶୁଆଇଲେ । କାମଜନିତ କୃଶତା ଉଡ଼ିଯିବା ପ୍ରତି ହେତୁ । ଅବ୍ଜ···ବାଳା—ଚନ୍ଦ୍ରର ଏକ କଳା ପରି ଅତି କ୍ଷୀଣ । ସଞ୍ଚିଲେ—ସେବାକଲେ । ୮ । ଅରିଷ୍ଟବଳି —କାକବଳି । 'ଅରିଷ୍ଟଃ କରଟଃ କାକୋବଳିପୁଷ୍ଟଃ ସକୃତ୍ପ୍ରଜଃ' ଇତି ହଳାୟୁଧଃ । ସୁ-ବାରେ—ଉତ୍ତମ ବାରରେ (ରବିବାର ପ୍ରଭୃତି ଦିନରେ) । ଅଭୀଷ୍ଟ-ମନକଥା ! ଗଣକବାର —ଜ୍ୟୋତିଷୀମାନଙ୍କୁ । ବାରେ—ପରୀକ୍ଷା କରେ । ଅବଦ୍ଧ···ବାରେ-ଭଲହେବ କି ମନ୍ଦ ହେବ କଳ୍ପନା କରି 'ରାମ, ଲକ୍ଷ୍ମଣ, ସୀତା' ପ୍ରଭୃତି ଡ଼ାକ ଗାର କାଟୁଛି ।

ଅନିଳ-ମାର୍ଗ ନିରୁନ୍ଧ କରୁଛି
ଅବ୍ଜ-କର କେ ପିଧାନ କରୁଛି
ଅଙ୍ଗୁଳି ଠରୁଛି
ଅଗାର-ସାଙ୍ଗ-ପଠନେ ଡ଼ରୁଛି । ୯
ଅଙ୍ଗଦାହ ଗୃହୁଁ କେହ୍ନ ଖାଳଇ
ଅବ୍ଜରଜ ମଳୟଜ ଗୋଳଇ
ଅଞ୍ଜନ ମଣି-ଦନ୍ତୁରେ ବୋଳଇ
ଅଧିକେ ହୃତ ଲେପନେ ଜଳଇ
ଅଧିରେ ଚଳଇ
ଅଟବୀରୁ କେ ଉଶୀର ଖୋଳଇ । ୧୦
ଅନ୍ତ୍ରନନ୍ଦନଙ୍କୁ ଚଳି ତ୍ୱରାଏ
ଅମ୍ବୁପେଟୀ ସପୃଷ କେ ପବାଏ
ଅସିତଗ୍ରୀବ-ସେବକ କେ ଗାଏ
ଅମ୍ବୁ-ଅମ୍ବୁଜରେ ସେବା କରାଏ
ଅଧର ଥରାଏ
ଅଶ୍ରୁବନରେ ନୟନ ପୂରାଏ । ୧୧
ଅନ୍ତଶେ ବାଳା ହେବାରୁ ଆକୁଳ
ଅଧଇର୍ଯ୍ୟ ହୋଇ ସଖୀ-ସଂକୁଳ
ଅନଙ୍ଗ-ବୃଦ୍ଧିଦ ଦ୍ରବ୍ୟକୁଳ
ଅଣାଇ କଲେ ପୁନଃ ଅନୁକୂଳ
ଅଶୋକ ମୁକୁଳ
ଅମ୍ବୁଜ ମାଳତୀପୁଞ୍ଜ ବକୁଳ । ୧୨
ଅଦ୍ଭୁତେ ଆସି ଏହୁ କାଳରେ
ଅନ୍ୟକେ ବସି ବକୁଳ-ଡାଳରେ

---

୯ । ବାରୁଛି-ନିଷେଧ କରୁଛି । ଅନିଳମାର୍ଗ-ଝରକା । ଅବ୍ଜକର-ଚନ୍ଦ୍ରକିରଣ । ପିଧାନ କରୁଛି—ଘୋଡ଼ାଇ ପକାଉଛି । ଅଗାରସାଙ୍ଗ—ଘରପୋଷା ସାରି । ୧୦ । ଅବ୍ଜରଜ—କର୍ପୂରଚୂର୍ଣ୍ଣ । ମଳୟଜ—ଚନ୍ଦନ । ଉଶୀର—ବେଣାଚେର । ୧୧ । ତ୍ୱରାଏ—ଶୀଘ୍ର । ଅମ୍ବୁପେଟୀ-ପଇଡ଼ । ପବାଏ-ତୋଳାଉଛି । ଅସିତଗ୍ରୀବ-ସେବକ—ଶିବପୂଜକ । ଗାଏ—ଉଜାଳୁଛି । ଅଶ୍ରୁବନ—ଲୁହପାଣି । ୧୨ । ସଖୀ-

ଅଣ୍ଡୀର କୋକିଳ ଠେକ କୁଳରେ
ଏଥିରେ କୁହୁଡାକେ ଉତ୍ଖୁଳରେ
ଅନଳଜାଳରେ
ଅଜାଡ଼ିଲ କି ଘୃତ ପ୍ରବଳରେ । ୧୩
ଅଧୀରେ ଧୀରା ଚମକି ପଡ଼ିଲ
ଅତନୁଜ ଶରେ ତନୁ ପୀଡ଼ିଲ
ଅନାଇଁ ଅନାଇଁ ଚେତା ବୁଡ଼ିଲ
ଅନାଇଁ ସଖୀକି ନାଡ଼ୀ ଗୁଡ଼ିଲ
ଅମ୍ବୁ କେ ଲେଡ଼ିଲ
ଅଳକ ଆଳୀ କେ କର ଛାଡିଲ । ୧୪
ଅଷ୍ଟ ଘଡ଼ି ସେ ହୋଇଲେ ଅଜ୍ଞାନ
ଅନେକ ଯତନେ ଲଭିଲେ ଜ୍ଞାନ
ଅନିଳ ଧୀରେ ଏ କାଳେ ବହିଲ
ଅନଳ ପରାଏ ଦେହ ଦହିଲ
ଅଙ୍ଗନା-ବରସେ
ଅତିଦୁଃଖେ ତାକୁ କହଇ ରୋଷେ । ୧୫
ଅଟେ ମନ୍ଦବାକ ତୋହର ଗୁଣ
ଅସ୍ଥିରେ କରୁ ନିତେ ଭ୍ରମଣ
ଅହି ବିଷମୁଖୁ ଉଦ୍‌ଗାର ହୋଇ
ଅଙ୍ଗ କାହିଁପାଇଁ ଦହିବୁ ନାହିଁ ?
ଅଗ୍ନିସଖା ପୁଣି
ଅଙ୍ଗେ ଶୀତଳ ବୋଲନ୍ତି ନ ଜାଣି । ୧୬

---

ସଙ୍କୁଳ—ସଖୀଗଣ । ମୁକୁଳ-କଢ଼ୀ । ୧୩ । ଠେକକୁଳରେ—କୋକିଳମାନଙ୍କ ମଧ୍ୟରେ ଶ୍ରେଷ୍ଠ ।ଉତ୍ଖୁଳରେ—ଉଚ୍ଚତାଳରେ ବା ତାଳକୁ ଅତିକ୍ରମକରି । ଅତି ଉନ୍ମାଦନା ଏପରି ହେବାର ହେତୁ ।୧୪। ସଖୀକି-ଏଠାରେ ପାର୍ଶ୍ୱସ୍ଥଙ୍କି । ଆଳି—ସଖୀ । ୧୬ । ଅହିବିଷମୁଖୁଁ—ସର୍ପର ବିଷପୂର୍ଣ୍ଣ ମୁଖରୁ । ମଳୟ ପର୍ବତର ଚନ୍ଦନ ଗଛରେ ବହୁତ ସାପ ଅଛନ୍ତି । ସେମାନେ ପବନକୁ ଆହାର କଲାବେଳେ ସେମାନଙ୍କ ବିଷରେ ଦକ୍ଷିଣାପବନ ବିଷାକ୍ତ ହୋଇଯିବାର କବି ପ୍ରୌଢ଼ୋକ୍ତିସିଦ୍ଧ । ଅଗ୍ନିସଖା

[ ନିନ୍ଦାଗର୍ଭ ସ୍ତୁତି ]

ଅଖିଳ ପାଦପରେ ତୋ ବିଶ୍ରାମ
ଅଟେ ତ ସ୍ୱତଃ ପ୍ରଭଞ୍ଜନ ନାମ
ଅବୋଧେ ଶାଖିଗଣ ନାଶକରୁ
ଅନେକ ସୁମନଙ୍କ ବାସ ହରୁ
ଅନ୍ତରୀକ୍ଷେ ସ୍ଥିତି
ଅଟେ ମାରୁତ ବୋଲି ତେ ର ଖ୍ୟାତି । ୧୭
ଅମୃତକରକୁ ବୋଲନ୍ତି ଗିର
ଅବକଳିଲି ତୁ ତ ଦୋଷାକର
ଅର୍ଦ୍ଧଚନ୍ଦ୍ରଶେଖର ଶିରେ ବସିଲେ
ଅକାର୍ଯ୍ୟ କପାଁ ନ କରିବୁ ଭଲେ
ଅଟୁ ତ କଳଙ୍କୀ
ଅଧର୍ମକୁ ତୋର ଡର ଥିଲେ କି । ୧୮

---

—ବାୟୁ । ଅଗ୍ନିଙ୍କର ନାମ ବାୟୁସଖା । ୧୭ । ନିନ୍ଦାଗର୍ଭସ୍ତୁତି—ଲକ୍ଷଣ । ଯହିଁରେ ସ୍ତୁତି ଉକ୍ତ ହୁଏ ଓ ଗୌଣରୂପେ ନିନ୍ଦା ବୋଧପଡ଼େ । ସ୍ତୁତି-ଅଖିଳ ପାଦପରେ—ବୃକ୍ଷ ଉପରେ ତୁ ବିଶ୍ରାମ କରୁ । ତୋର ଅପର ନାମ 'ପ୍ରଭଞ୍ଜନ' । ଏଣୁ ସମସ୍ତଙ୍କୁ (ଶାଖୀ) ବୃକ୍ଷମାନଙ୍କୁ ବିନାଶ କରିଥାଉ । ଅନେକ (ସୁମନ) ଫୁଲର (ବାସ) ଗନ୍ଧ ହରଣ କରୁ (ଅନ୍ତରୀକ୍ଷରେ) ଆକାଶରେ (ସ୍ଥିତି) ଅବସ୍ଥାନ କରୁ, ତୋର ମାରୁତ ବୋଲି (ଖ୍ୟାତି) ପ୍ରସିଦ୍ଧି ଅଛି । ନିନ୍ଦା—(ଅଖିଳ) ସମସ୍ତଙ୍କର (ପାଦ) ଗୋଡ଼ଉପରେ ବିଶ୍ରାମ କରୁ । (ପ୍ରଭଞ୍ଜନ) ଘରଭଙ୍ଗା—କଳଙ୍କୀ ନାମ ଧରୁ । ବିନା ଦୋଷରେ (ଶାଖୀ) ସାକ୍ଷୀମାନଙ୍କର ପ୍ରାଣନାଶ କରୁଁ । ଅନେକ (ସୁମନ) ଉତ୍ତମ ବ୍ୟକ୍ତିଙ୍କର ବାସ (ଲୁଗା) ଉଡ଼ାଇ ନେଉ, (ଅନ୍ତରୀକ୍ଷେ) ଆକାଶରେ ତୋର (ସ୍ଥିତି) ଅବସ୍ଥାନ, ତେଣୁ ତୁ ଭୂତ, ଭୂତ ଅନ୍ତରୀକ୍ଷରେ ରହେ । କଥାରେ କହନ୍ତି ସେ 'ଅନ୍ତରୀକ୍ଷିଆ' ହୋଇ ବୁଲୁଛି ଅର୍ଥାତ୍ ତାହାର ଘରଦ୍ୱାର ନାହିଁ, ତୁ ଜଗତ୍‌କୁ ମାରୁ ତ ! ତେଣୁ ତୋ ନାମ 'ମରୁତ' । ୧୮ ଅମୃତ କର—ଚନ୍ଦ୍ର । ଅବକଳିଲି—ଜାଣିଲି । ଦୋଷାକର—ରାତ୍ରିକାରୀ, ଅପର ପକ୍ଷେ ଦୋଷର ଆକର । ଚନ୍ଦ୍ର (ଈଶ୍ୱର) ଶିବଙ୍କର ସେବକ ହେବା ହେତୁ କିନ୍ତୁ ଶିବଙ୍କ ଅନୁଗ୍ରହରୁ ତାଙ୍କ ମୁଣ୍ଡରେ ବସିଛୁ । ଅତଏବ 'ମାତଃଶ୍ଚ ସ୍ୟପଦଂ ପ୍ରାପ୍ୟ କର୍ତ୍ତାରଂ ହନ୍ତୁମିଚ୍ଛତି' ବାକ୍ୟକୁ ସାର୍ଥକ କରୁଛୁ । କୋଉଠି ମହାଦେବଙ୍କୁ ନ ଡରିଲୁ ପର କଳଙ୍କୀ (ପାପୀ) ସେ ଅଧର୍ମକୁ କାହିଁକି ଡରିବ ?

ଅଟେ ଯେ ମିତ୍ର ଉଦୟରେ ମ୍ଳାନ
ଅବଶ୍ୟ ତାମସୀ-ଯୋଗେ ପ୍ରସନ୍ନ
ଅଭୀଷ୍ଟ କରେ ଯେ ବାରୁଣୀ ସେବା
ଅସ୍ତ ଉଦୟ ତା କଥିତ ଅବା
    ଅବଳାଙ୍କୁ ମାରୁ
ଅଛି ଯେ ରହୁ ଏହା ନ ବୁଝୁରୁ । ୧୯

ଅଶାନ୍ତ ପାତ ପିକବାଣୀ ଶୁଣି
ଅତି ଦୁଃଖେ ତାଙ୍କୁ କହନ୍ତି ପୁଣି
ଅଟଇ ମୁକୁଳବକ୍ଷ ତ ସତ
ଅଶନ କରିବୁ କି ପରଭୃତ
    ଅଟିଣ ତୋ ଏ ଗିର
ଅଙ୍ଗ ତ ଜାଳି ଦେଇ ଅଛି ମୋର । ୨୦

ଅନଙ୍ଗକୁ ପୁଣି ବୋଲନ୍ତି ତନ୍ୱ
ଅଙ୍ଗାର ତ ତୋତେ ଦେଲେ ଜାଳି
ଅଇଲୁ ପୁଣି କେଉଁ ପ୍ରାଣ ପାଇ
ଅଡ଼ କି ସ ରୁଅଛୁ ମୋର ତହିଁ
    ଅତି ବଡ଼ମଣ
ଅବଳା ଜନକୁ ସମସ୍ତେ ଟାଣ । ୨୧

---

୧୯ । **ମିତ୍ର**—ସୂର୍ଯ୍ୟ ଓ ବନ୍ଧୁ ; ସୂର୍ଯ୍ୟ ଉଦୟ ହେଲେ ଚନ୍ଦ୍ର ମଳିନ ହୁଏ । ଅପର ପକ୍ଷରେ (ମିତ୍ର) ସଖାର ଉଦୟ (ଉନ୍ନତି)ରେ କଳା ପଡ଼ିଯାଏ । ତାମସୀ—ରାତ୍ରି ଓ ତମୋଗୁଣଯୁକ୍ତା ସ୍ତ୍ରୀ । ରାତ୍ରିରେ ଚନ୍ଦ୍ର ଉଜ୍ଜ୍ୱଳ ହୁଏ । ଅପରପକ୍ଷରେ ତମୋଗୁଣଯୁକ୍ତା ସ୍ତ୍ରୀ ସହିତ ମିଳିତ ହେଲେ ଆନନ୍ଦ ହୁଏ । ବାରୁଣୀ ସେବା—ପଶ୍ଚିମ ଦିଗକୁ ଗତି ଓ ମଦ୍ୟ (ସେବା) ପାନ ଯାହାର (ଅଭୀଷ୍ଟ) ବାଞ୍ଛନୀୟ ।

୨୦ । ମୁଁ (କୁଳବଧୂ) କୁଳୀନା ସ୍ତ୍ରୀ ତ ଅଟେଁ ଏହା ସତ, ତୁ ମୋତେ କଅଣ (ମୁକୁଳବକ୍ଷା) ବଉଳଯୁକ୍ତା ଚୂତଲତିକା ଭଳି (ଅନେ) ଭକ୍ଷଣ କରିବୁ କି ?

୨୧ । ଅଡ଼ଜଣିବା—ପ୍ରତିଶୋଧ ନେବା । ଅବଳା—ସ୍ତ୍ରୀ, ବଳହୀନ ।

ଅଳି ମାଳି ଗୁଣ ଫୁଲ କୋଦଣ୍ଡ
ଅଶୋକ ନିଆଳୀ କଳିତ କାଣ୍ଡ
ଅଦେହ ସ୍ୱଭାବେ ଭୁଣି ତକ୍ଷଣ ।
ଅବଳା କିପାଁ ନ କରବୁ ନାଶ

ଅଙ୍କୁଶ ଶୁଣ୍ଡାଳ

ଅନାଚି ଯାହା କଲେ ଢଗଢେଳ । ୨୨
ଅଜକଙ୍କ ଭୁଲେ ଲଗାଇ ଅଙ୍କ
ଅବ୍ଜାସନ ସୁତା-ରସେ ଉତ୍ସୁକ ।
ଅସ୍ପୃଶ୍ୟ ନାରୀ ହରେ ପରାଶର
ଅଧନ ସୀତାଯୋଗେ ଦଶଶିର

ଅଘଟ ଘଟାଇ

ଅଙ୍ଗନା-ପାଦେ ପଡ଼ିଲ ଲୋଟାଇ । ୨୩
ଅକ୍ଲିଷ୍ଟମାନ ହାଣ୍ଡି ପଗ ଭୁଞ୍ଜି
ଅମଡ଼ା ମାଡ଼ି ଯାଇ ସର୍ବ୍ବ ଚର୍ବ୍ବି
ଅଣୁ ଜୀବଠାରୁ ସ୍ଥାଣୁ ସରିକି
ଅସ୍ଥିର କରୁ ପୁରୁଷ ନାରୀଙ୍କି

ଅଗମ୍ୟା ଗମନ

ଅଧର୍ମ-କର୍ମ-କାରଣ ଭୂ ସ୍ଥାନ । ୨୪
ଅବନୀଭୂତାର ଏ ଦଶା ଦେଖି
ଅନଙ୍ଗଭ୍ରମ ନାମେ ଗ୍ରୀଷ୍ମସଖୀ

---

୨୨ । (ଅଳିମାଳି) ମାଳା ଆକାର ଭ୍ରମରଗଣ ଯେଉଁ ଧନୁର (ଧନୁର) ଗୁଣ । ଫୁଲ ତୋର (କୋଦଣ୍ଡ) ଧନୁ । ଅଶୋକ ନିଆଳୀ ଆଦି ତୋର ଶର, ତୁ ଅଦେହ ଅର୍ଥାତ୍ ତୋର ଦେହ ନାହିଁ, ଏତେ ଉପକରଣ ଘେନି ତୁ (ଅବଳା) ବଳହୀନା ସ୍ତ୍ରୀ ନ ମାରି ଆଜ କଣ ବୀରପୁରୁଷକୁ ମାରବୁ ? ଅନାଚି ବସ୍ତର ଦେଖ, ଦର୍ଶନାର୍ଥକ ଧାତୁ ଜ୍ଞାନାର୍ଥକ ହୁଏ । ୨୩ । (ଅବ୍ଜାସନ) ବ୍ରହ୍ମା (ସୁତାରସେ) କନ୍ୟା ସରସ୍ୱତୀଙ୍କଠାରେ ଆସକ୍ତ ହେବା କଥା ପୁରାଣପ୍ରସିଦ୍ଧ । ୨୪ । ଅଣୁ (ପରମାଣୁ) ଆକାର ଜୀବଠାରୁ (ସ୍ଥାଣୁ) ଶିବ (ବ୍ରହ୍ମ) ପର୍ଯ୍ୟନ୍ତ । ଅଧର୍ମକାରଣ— ଅଧର୍ମ କାର୍ଯ୍ୟର ହେତୁ ।

ଅନ୍ଧକାର-ରୂପ ପଟେ ଲେଖିଲ
ଅଗ୍ରେ ବାଳାଙ୍ଗ ନେଇ ଦେଖାଇଲ ।
ଅନର୍ଥିତା ଗ୍ରମା
ଅନେକ ସୁଖ ଲଭେ ଧର-ଜେମା । ୨୫
ଅନୁକ୍ଷଣେ ଚିତ୍ତ ହୃଦରେ ଥୋଇ
ଅନଙ୍ଗତାପ-ଶାନ୍ତ କ ଭଜଇ
ଅହି ଅମରନଦୀ ଅବ୍ଜକଳା
ଅଳକ-ଧର ଅରୁଣାବ୍ଜ-ଡୋଳା
ଅର୍ଦ୍ଧ-ଯୁଗ-କଞ୍ଜେ
ଅଳପବୟେ ଭଞ୍ଜପଣ ଭଜେ । ୨୬

---

୨୫ । ଅବନୀଭୂଷା—ପୃଥିବୀର ଅଳଙ୍କାରସ୍ୱରୂପା । ଧରଜେମା—ପର୍ବତ କନ୍ୟା, ପାର୍ବତୀ । ୨୬ । ଅହି—ସର୍ପ । ଅମରନଦୀ—ଗଙ୍ଗା । ଅବ୍ଜକଳା—ଚନ୍ଦ୍ରକଳା । ଏ ସମସ୍ତଙ୍କୁ (ଅଳକରେ) ମସ୍ତକରେ ଯେ ଧାରଣ କରନ୍ତି । (ଅରୁଣ) ସୂର୍ଯ୍ୟ (ଅବ୍ଜ) ଚନ୍ଦ୍ର, ଏ ଦୁହେଁ (ଡୋଳା) ନେତ୍ର ଯାହାଙ୍କର ।



# ଚତୁର୍ଦ୍ଦଶ ଛାନ୍ଦ

## ପାର୍ବତୀଙ୍କ ତପସ୍ୟା ଓ ବରପ୍ରାପ୍ତି

ରାଗ—ବରାଡ଼ି

ଅନ୍ତର ହେବାରୁ ହର                    ହରଣୀନୟନା ହର—
ଷହ୍ନିଁ ସେହ୍ନ ସଙ୍ଗେ ହେଲା ଦୂର,
ଅସାର ମଣିଲେ ସାର—                    ସଂସାର-ସୁଖ ତୁଷାର—
କର-ଶିର-ରୂପ ହୃଦେ କଲା ପୂର ସେ । ଅଦ୍ରିସୁତା ।
ଅନ୍ତର୍ଗତେ କରଣ ବସ୍ତୁର
ଅଭୀଷ୍ଟଦ ତପ-କରଣେ ତତ୍ପର ସେ । ୧

ଅମ୍ବୁଦ-କାଳରେ ଜଳ                    ଭିତରେ ପଶି ପ୍ରବଳ
ତପସ୍ୟା କରନ୍ତି ଅହୋରାତ୍ର,
ଅଶନ କୋମଳ ପତ୍ର                    ପିଅନ୍ତି ପବନ ମାତ୍ର
ବେଳୁଁ ବେଳୁଁ ବଡ଼ କୃଶ ହେଲା ଗାତ୍ର ସେ । ଅଦ୍ରିସୁତା ।
ଅଭିମତ କାର୍ଯ୍ୟେ ଲୋଭ ବହି
ଅପଘନ ଶୀର୍ଣ୍ଣ ହେଲା ଚିନ୍ତା ନାହିଁ ସେ । ୨

ଅଂଶୁକ ନ ରଖି ଦେହେ                    ହିମ ଶିଶିର ସମୟେ
ସମୀର-ସମ୍ମୁଖେ କ୍ଲେଶ ସହି,
ଅଭ୍ୟାସ କରନ୍ତି ତପ                    ଦିନକୁ ଦିନ ଅମାପ
ଜପ-ହୋମ ତପଣାଦିମାନଙ୍କୁହିଁ ସେ । ଅଦ୍ରିସୁତା ।
ଅର୍କତେଜେ ନିଦାଘେ ବସନ୍ତି
ଅନ୍ୟ ବିଷୟରେ ଲେଶେ ନ ରସନ୍ତି ସେ । ୩

---

### ଚତୁର୍ଦ୍ଦଶ ଛାନ୍ଦ

୧ । ତୁଷାର…ରୂପ—ଚନ୍ଦ୍ରଙ୍କୁ ମସ୍ତକରେ ଧରିଥିବା ଶିବଙ୍କର ରୂପ । ଅଭୀଷ୍ଟଦ—କାମନାପୂରକ । ୨ । ଅମ୍ବୁଦ କାଳରେ—ବର୍ଷାଦିନେ । ଅଭି…ନାହିଁ—ନିଜ ଉଦ୍ଦେଶ୍ୟ ସିଦ୍ଧି ଉପରେ ଅଧିକ ଲୋଭ ଥିବାରୁ ଦେହ କ୍ଷୀଣ ହେଲେ ସୁଦ୍ଧା ସେ ବିଷୟରେ ଚିନ୍ତା ପର୍ଯ୍ୟନ୍ତ କରୁ ନ ଥିଲେ । ୩ । ଅଂଶୁକ—ଲୁଗା । ହିମଶିଶିର ସମୟେ—କାର୍ତ୍ତିକଠାରୁ ମାଘ ଶେଷ ଯାଏ । ସମୀର-ସମ୍ମୁଖେ—ପବନ ବହୁଥିବା ଦିଗକୁ ମୁଖ କରି । ନିଦାଘେ—ଖରାଦିନେ । ଅର୍କତେଜେ—ଖରାରେ ।

ଅଳ୍ପ କେତେ ଏଣ୍ଡରୂପେ ବଞ୍ଚିଲେ କଠୋର ତପେ
ପାଇବାକୁ ପ୍ରାଣପତି ସଙ୍ଗ,
ଅନ୍ନ ପୟଃ ଫଳ ମୂଳ ପଲ୍ଲବ ଜଳ ଅନିଳ
କ୍ରମେ ପାନ କରୁ ଝଡ଼ିଗଲା ଅଙ୍ଗ ସେ । ଅଦ୍ରିସୁତା ।
ଅଭୀଷ୍ଟ ଯେ ଚେତେବେ ନ ପାଇଲେ
ଅତି ତାପେ ତପ ଗ୍ରୀଷ୍ମେ ଆରମ୍ଭିଲେ ସେ । ୪

ଅଷ୍ଟାଙ୍ଗ ଦିଗେ ଅନଳ ଜାଳିଲେ ଅତି ପ୍ରବଳ
ଶିର ଉପରେ ଆତପ-ତାପ,
ଅବନୀ ଉପରେ ତପ୍ତି କରିଅଛୁ ଅଭିବ୍ୟାପ୍ତି
ତହିଁ ପରେ ବସି ଆରମ୍ଭିଲେ ତପ ସେ । ଅଦ୍ରିସୁତା ।
ଅମ୍ବୁଜ ଆସନ ଦୃଢ଼ କଲେ
ଅଷ୍ଟଦିଗପାଳ ଆଦିଙ୍କି ନମିଲେ ସେ । ୫

ଅଙ୍ଗନ୍ୟାସ କରନ୍ୟାସ କରି ସ୍ଫଟିକ-ସଙ୍କାଶ
କଇଳାସ-ଈଶ ରୂପ ଧ୍ୟାଇ
ଅକ୍ଷିକି ନାସାଗ୍ରସ୍ଥାନେ ରଖିଣ ନିଶ୍ଚଳ ମନେ
ବସିଲେ ଇନ୍ଦ୍ରିୟ ସ୍ତମ୍ଭି ଦେଇ ସେ । ଅଦ୍ରିସୁତା ।
ଅକ୍ଷରୁଦ୍ରାକ୍ଷ ମାଳିକ ଧରି
ଅଭୀଷ୍ଟ ଯେ ମନ୍ତ୍ର ଜପିଲେ ଉଚ୍ଚାରି ସେ । ୬

ଅଧଃ ପୂରୁଁ ଊର୍ଦ୍ଧ୍ୱ ପୁର— ପରେ ରଖିଲେ ସମୀର
ଦଶଦ୍ୱାରେ ତୋଳି ଯୋଗବଳେ

---

୪ । ଅଳ୍ପ କେତେ —କତିପୟ । ପ୍ରଥମାବସ୍ଥାରେ (ଅନ୍ନ) ଘୃତ, (ପୟଃ) ଦୁଗ୍ଧ ତତ୍ପରେ ଫଳ, ତତ୍ପରେ ମୂଳ, ତତ୍ପରେ ପତ୍ର, ତତ୍ପରେ ଜଳ ଓ ତତ୍ପରେ ପବନ— ଏହିପରି କ୍ରମରେ ଖାଦ୍ୟ ନିରୋଧ କରି ତପସ୍ୟା କରିବା ଯୋଗଶାସ୍ତ୍ର ସମ୍ମତ । ୫ । ଅଷ୍ଟାଙ୍ଗ ଦିଗେ-ଚତୁର୍ଦ୍ଦିଗରେ । ଆତପତାପ—ଖରତେଜ । ଅମ୍ବୁଜ ଆସନ- ପଦ୍ମାସନ । ୬ । ସ୍ଫଟିକ ସଙ୍କାଶ—ସ୍ଫଟିକ ପରି ଧବଳବର୍ଣ୍ଣ । କଇଳାସ-ଈଶ— କୈଳାସ ପତି, ଶିବ । ଅକ୍ଷରୁଦ୍ରାକ୍ଷ ମାଳି—ପଚାଶ ଗୋଟି ରୁଦ୍ରାକ୍ଷର କରମାଳା । ୭ । ଅଧଃପୁରୁ—ମୂଳାଧାର ନାମକ ଚକ୍ରରୁ ।

ଅଇକ୍ୟ ହେବାରୁ ଜୀବ ପରମର ଇଷ୍ଟଦ୍ରବ୍ୟ
ପଦକାଶ ଆସି ହେଲା ହୃଦସ୍ଥଳେ ସେ । ଅଦ୍ଭୁତା ।
ଅନ୍ତରେ ଦେଖିଲେ ଜ୍ୟୋତିମୂର୍ତ୍ତି
ଅର୍ଦ୍ଧ-ଧଙ୍ଗେ ମନ ଯୋଗି ରଖିଛନ୍ତି ସେ । ୭

ଅନିଳବଶେ ଅନଳ ଜଳନ୍ତେ ହୋଇ ପ୍ରବଳ
ଝଙ୍କା ଅଙ୍ଗୁଁ ଗଳି ପଡେ ଝାଳ
ଅଫୁଟ କେତକୀ ଦଳ— ନିଜ କୁନ୍ଦନ-ଉଜ୍ଜ୍ୱଳ—
କାନ୍ତି ତପ୍ତବଳେ ହଶିଲା ଶ୍ୟାମଳ ସେ । ଅଦ୍ଭୁତା ।
ଅଙ୍ଗ ତେବେ ରହିଛି ନିଷ୍ଟଳେ
ଅଧରୋଷ୍ଠ ମାତ୍ର ଚଳେ ମନ୍ତ୍ରବଳେ ସେ । ୮

ଅନୁରୂପ ତପ ପୁଣି ନୋହିଲା ବୋଲି ତରୁଣୀ
ଅଗ୍ନି-ଅନ୍ତେ ଉଭା ହେଲେ ଯାଇଁ
ଅତ୍ୟନ୍ତେ ମନ ପବନ ରୁନ୍ଧି କଲେ ଅନୁଷ୍ଠାନ
ତଥାପିହିଁ ଇଷ୍ଟଫଳ ନ ଫଳଇ ସେ । ଅଦ୍ଭୁତା ।
ଅଙ୍ଗଦେଶୁଁ ଶିର ମୋଡ଼ି ନେଇ
ଅଗ୍ନି-ଆହୁତ କରିବା ବସ୍ଥିରଇ ସେ । ୯

ଅଗ୍ରେ ଏଣୁ କାଳେ ଆସି ମିଳିଲେ କରୁଣାରାଶି
ହସି ଭଣିଲେ ରେ ମୃଦୁଭାଷି,
ଅନଳ ଭିତରେ ପଶି ଦେହ ଯେ ଦେଉଛୁ ଝାସି
କହ କହ କାହିଁ ହୋଇ ଅଭିଳାଷୀ ରେ । ଅବ୍ଜବାସି !
ଅସମ ତପେ ତୋ ହେଲି ତୋଷୀ
ଅନ୍ତକକୁ ଆସ ଆସ କାଶହାସି ରେ । ୧୦

---

ଦଶଦ୍ୱାର—ଚକ୍ଷୁ ଦୁଇ, କର୍ଣ୍ଣ ଦୁଇ, ନାସିକା ଦୁଇ, ମୁଖ ଏକ, ଗୁହ୍ୟଏକ, ମୂତ୍ରଦ୍ୱାର ଏକ, ନାଭି ଏକ— ଦଶ । ଅଇକ୍ୟସ୍ଥଳେ- ଜୀବାତ୍ମା ସହିତ ପରମାତ୍ମାଙ୍କୁ ଏକ କରିବାରୁ ଇଷ୍ଟଦେବତା ହୃଦପୁରେ ପ୍ରକାଶ ପାଇଲେ । ୮ ଅନିଳବଶେ— ପବନଦ୍ୱାର । ଅଧରୋଷ୍ଠ—ତଳ ଓଠ । ଉପାଂଶୁଜପ—ଯେଉଁ ଜପରେ କେବଳ ଓଷ୍ଠ ନଳିତ ହୁଏ, ମାତ୍ର ବର୍ଣ୍ଣ ବ୍ୟକ୍ତ ହୁଏ ନାହିଁ । ଅସ୍ଫୁଟ···। ଭଲ-କରି ଫୁଟି ନ ଥିବା କେତକୀ ପାଖୁଡ଼ା ପରି ଗୌର ଓ ସୁନାଠାରୁ ଉଜ୍ଜ୍ୱଳ ପ ବର୍ଣ୍ଣଙ୍କ ଦେହକାନ୍ତି ଅଗ୍ନିତାପରେ (ଶ୍ୟାମଳ) କଳା ପଡ଼ିଗଲା । ୯। ଅନୁରୂପ— ଯୋଗ୍ୟ ଅର୍ଥାତ୍ ଇଷ୍ଟଦେବତାଙ୍କ ମନ ତରଳାଇବା ପାଇଁ ଉପଯୁକ୍ତ । ଅଗ୍ନିଅନ୍ତେ —ନିଆଁ ଭିତରେ । ଅବ୍ଜବାସୀ—ଲକ୍ଷ୍ମୀସ୍ୱରୂପିଣୀ ।

ଅମର ଈଶ୍ୱର ପଦ — କିବା କୁବେର-ସମ୍ପଦ
ଚନ୍ଦ୍ର ସୂର୍ଯ୍ୟ-କାର୍ଯ୍ୟ ନେବୁ ଅବା
ଅବ୍ଜାସନ ଅଧିକାର — ନୋହିଲେ ମୋ ପୁରସ୍କାର
ମାଗ ମାଗ ଯେଉଁଲା ତୋ ସେବାରେ । ଅଦ୍ରିଜବା ।
ଅଥବା ବଇକୁଣ୍ଠକୁ ଯିବା
ଅଭିଳାଷ ଥିଲେ ତାହିଁ ଦେଇପିବା ରେ । ୧୧

ଅଗ୍ରତେ ପ୍ରାଣବଲ୍ଲଭ — ଦୁର୍ଲ୍ଲଭ ରୂପ ସୁଲଭ
ହୋଇବାରୁ ବ୍ରହ୍ମାନନ୍ଦ ପାଇ
ଅର୍ଘ୍ୟ ଚଳେ ଦଣ୍ଡ ଜାଣି — ପଡ଼ିଲେ ତରୁଣୀମଣି
ଉଠି ପୁଣି ପାଣି ଆଣି ଶିରେ ଦେଇ ସେ । ଅଦ୍ରିସୁତା ।
ଅଖିଳ ସଂସାର ଲୋକମାତା
ଅନୁସର କୁହିଁଛନ୍ତି ଦାସୀ ଯଥା ସେ । ୧୨

ଅମିତ-ତପରେ ତନୁ — ତନୁ ହୋଇଲେହେଁ ଅତନୁ
ଶୋଭା ପ୍ରକାଶୁଛି ପ୍ରଭାବରେ
ଅକ୍ଷିଣ-ପୂର୍ଣ୍ଣ-ଚନ୍ଦ୍ରମା — ପ୍ରଫୁଲ୍ଲ ପଦ୍ମ-ସୁଷମା
ସ୍ଥିର ତାରତର ସାର ମୁଖ କରେ ସେ । ଅଦ୍ରିସୁତା ।
ଅକ୍ଷିପାତଘୂର୍ଣ୍ଣନ ପ୍ରକାର
ଅପାଙ୍ଗର ଢଙ୍ଗ ଦୂରୁ ଚମତ୍କାର ସେ । ୧୩

ଅଳସେ 'ଛିଷି' ଭାଷିବା — ସଧୀରେ ଗୃହକୁ ଆସିବା
ମୃଦୁ ମଧୁରେ ହସିବା ଭଙ୍ଗୀ
ଅଧରେ ଦନ୍ତ ବସିବା — ଭ୍ରୂରୁ-ନୃତ୍ୟ ପ୍ରକାଶିବା —
ଘାତ, ପଶୁପତି-ଧୃତି ହେଲା ଭାଙ୍ଗି ସେ । ଅଦ୍ରିସୁତା ।

---

୧୧ । ଅମର ଈଶ୍ୱର—ଇନ୍ଦ୍ର । ଅବ୍ଜାସନ—ବ୍ରହ୍ମା । ୧୨ । ପ୍ରାଣ··· ରୂପ—ପ୍ରାଣପ୍ରିୟ ଶିବଙ୍କର ଦୁର୍ଲ୍ଲଭ ରୂପ । ଦଣ୍ଡ ପାଣି--ଦଣ୍ଡ ପରି ।୧୩। ଅମିତ ତପରେ—ଅସଂଖ୍ୟ ବା କଠୋର ତପରେ । ତନୁ—ଶରୀର । ତନୁ—କୃଶ । ଅତନୁଶୋଭା—ଅଧିକ ଶୋଭା । ପ୍ରଭାବରେ—କାନ୍ତିଦ୍ୱାରା । ଅକ୍ଷିଣ ପୂର୍ଣ୍ଣଚନ୍ଦ୍ରମା—କୁଆଁରପୂର୍ଣ୍ଣିମା ଜହ୍ନ— । ପ୍ରଫୁଲ୍ଲ-ପଦ୍ମସୁଷମା—ଫୁଟିଥିବା ପଦ୍ମର ଶୋଭା । ତାରତର—ଅତି ଉଜ୍ଜ୍ୱଳ । ସାର—ଶ୍ରେଷ୍ଠ । ଅକ୍ଷିପାତ—ଆଖିପତା । ଘୂର୍ଣ୍ଣନ—ଚକ୍ଷୁକୁ ଭ୍ରମାଇବା । ଏ ସମସ୍ତ ଅନୁରାଗ ଲକ୍ଷଣ ।

ଅଳ୍ପ ଫୁଲେ ତିଳଫୁଲ ନାସା
ଅମୃତରୁ ସ୍ୱାଦୁ ଦରହସ୍ତୁଁ ଭାଷା ସେ । ୧୪

ଅଣୁହର କୃଶୋଦରୀ          ଉନ୍ନତ ଉରୋଜ-ଭାର—
ଭରେ ଭାଙ୍ଗିଯିବା ଭଳି ହୋଏ ।
ଅମ୍ବକନୟନ-ମଟକ          ଅଟକ କରେ ଝଟକ
ହାଟକ-ଘଟଣ ଗାତ୍ର କାଏ ସେ । ଅଦ୍ଭୁତା ।
ଅଭିରାମତାର ନାହିଁ ଅନ୍ତ
ଅପ୍ରକାଶ କୁନ୍ଦ ନିନ୍ଦେ ଦନ୍ତ ସେ । ୧୫

ଅପୂର୍ବ ନେତ୍ର ହରଷେ          ଚାହିଁ ଚାହୁଁ ଈଷଦ୍ଧାସେ
ବୋଇଲେ ରେ ବାଳା ମାଗ ବର
ଅଞ୍ଜଳୀଭୂତ ଶ୍ରୀକର          କରଣ କାମିନୀବର
କହିଲା ହେ କୃପାକର କୃପା କର ହେ । ଅନ୍ଧକାର ।
ଅନ୍ତର୍ଯ୍ୟାମୀ ତୁମ୍ଭେ କି ନ ଜାଣ,
ଅନ୍ୟ ବର ଛାର ମୋର କି କାରଣ ହେ । ୧୬

ଅଙ୍ଘ୍ରିତଳେ ନିଶିଦିନ          ଅର୍ପିତ କର ଏ ମନ
ଅନୁସରିଥିବ ଦାସୀ ହୋଇ
ଅନ୍ୟ ଶରଧା ମୋର ନାହିଁ          ସତ୍ୟ ସତ୍ୟ ଏ ଗୋସାଇଁ
କାହିଁ ପାଇଁ ଏତେ କହୁଛ ଭୁମାଇଁ ହେ । ଅନ୍ଧକାର ।
ଅନୁଗ୍ରହ ଏତେ ମାତ୍ର କର ।
ଅନୁଚରୀ ଆଜ କି ମାଗିବ ବର ହେ । ୧୭

---

୧୫ । ଉରୋଜ-ଭାର—କୁଚଭାର । ଭାଙ୍ଗିବା ଭଳି—ଭାଙ୍ଗିଯିବାପରି । ଅମ୍ବକନୟନ—ମହାଦେବଙ୍କର ତିନି ଆଖିର । ମଟକ—ଭଙ୍ଗୀ, ଉଜ୍ଜ୍ୱଳ ସ୍ୱର୍ଣ୍ଣପରି ଗାତ୍ର ଶରୀରକୁ ଅଟକ କରେ । ଶିବଙ୍କ ନେତ୍ରଭଙ୍ଗୀ ଦେଖି ପାର୍ବତୀଙ୍କ ଶରୀରରେ 'ସ୍ତମ୍ଭ' ସାତ୍ତ୍ୱିକ ଭାବ ଜାତ ହେଲା । ଅଭିରାମତା—ସୌନ୍ଦର୍ଯ୍ୟ । ଅପ୍ରକାଶ—ଫୁଟି ନ ଥିବା, କଢ଼ି । ୧୬ । ଅପୁରୁବନେତ୍ର-ଶିବ । ଈଷଦ୍ଧାସେ-ମୁରୁକେଇ ହସି । ଶ୍ରୀକର ଅଞ୍ଜଳୀଭୂତ କରି—ହାତଦୁଇକୁ ଅଞ୍ଜୁଳା କରି, ଯୋଡ଼ି । କୃପାକର—ଦୟାର ଖଣି । ଅନୁଚରୀ—ଦାସୀ ।

ଅନୁଲପିତ ଏତେକ କଣ୍ଠ ସଲଜ୍ଜେ ମସ୍ତକ
ପୋତିଲେ ଷିତିକି ଦୃଷ୍ଟି ଦେଇ
ଅଲକ୍ଷ୍ୟ କଟାକ୍ଷ ଖକ୍ଷ ବିଶିଖର ଲକ୍ଷ୍ୟ ତ୍ର୍ୟକ୍ଷ
ବକ୍ଷ କଲେ ସ୍ମିତ-ଜାତମୁଖୀ ହୋଇ ସେ । ଅଦ୍ରିସୁତା ।
ଅଟେ ମାରମାରଣ-ମନ୍ତ୍ର
ଅଥବା ସେ ଶିରୋଭୂଷା ଏ ରସାର ସେ । ୧୮

ଅବଲମ୍ବେ ସ୍ମର-ଶର— ବାଉେ ସ୍ମର ହରଉର
ଚିରଇ ରୁଚିରବେଣୀବଳେ
ଅନାଉଁ ଅନାଉଁ ଛନ୍ନ ହେଲେ ହରଣଲାଞ୍ଛନ—
ମଣ୍ଡନ ସେ ବାଳା ଲୋଳା ଦୋଳା ଖେଳେ ସେ । ଅନ୍ଧକାରି ।
ଅନୁଜ୍ଞା କଲେ ରେ ବାମାବର
ଅସ୍ତୁ ହେଉ ଯେଉଁ ବର ଇଷ୍ଟ ତୋର ରେ । ୧୯

ଅଳପ ବଦନେ ତ ପୁଣି ହେଉ ହେବ ରାମାମଣି
ଥାଅ ବୋଲି ହୋଇଲେ ଅନ୍ତର
ଅପର୍ଣ୍ଣା-ପୂର୍ଣ୍ଣ-ଆନନ୍ଦ— ଅର୍ଣ୍ଣବର ଅର୍ଣ୍ଣବୃନ୍ଦ
ତୂର୍ଣ୍ଣେ ଶୀର୍ଣ୍ଣ କଲେ ଅଗସ୍ତି ପ୍ରକାର ସେ । ଅଦ୍ରିସୁତା ।
ଅମୃତ ପିଉଁ ପଡ଼ିଲା ଛଳେ
ଅଳକରେ କର ମାରେ ଶୋକବଳେ ସେ । ୨୦

ଅନ୍ଧ ଦିବ୍ୟଚକ୍ଷୁ ପାଇ ଫିଟାଉଁ ଏକାଳେ ଯାଇଁ
ପଡ଼ିଲା ପବନେ ପୂର୍ଣ୍ଣ ଧୂଳି

---

୧୮ । ଅନୁଲପିତ—ଉତ୍ତର । ରସାର—ପୃଥ୍ୱୀର । ଅଲକ୍ଷ୍ୟ—ଅତୁଳମାପୂ । କଟାକ୍ଷ ରୂପ ଖକ୍ଷ୍ଣ (ବିଶିଖ) ଶରର ଲକ୍ଷ୍ୟ । ତ୍ର୍ୟକ୍ଷ—ତ୍ରିଲୋଚନ, ମହାଦେବ । ସ୍ମିତ···ହୋଇ—ମନ୍ଦେ ହସି । ୧୯ । ରୁଚିର ବେଣୀ—ସୁକେଶୀ । ପାର୍ବତୀଙ୍କ (ବଳେ) ସହାୟତାରେ (ସ୍ମର) କାମ (ଶରବାରେ) ଶରସମୂହରେ (ସ୍ମରହରଉର) ମହାଦେବଙ୍କ ବକ୍ଷକୁ ଚିରେ । ସ୍ମରହରପଦ ଏଠାରେ ଶମ୍ଭୁକୁ ସୂଚୁଅଛି । ହରଣ···ମଣ୍ଡନ—ଶିବ । ଲୋଳା—ଚଞ୍ଚଳତାଯୁକ୍ତ । ଅନୁଜ୍ଞା କଲେ—ଆଦେଶ ଦେଲେ । ଅସ୍ତୁ ହେଉ—ସିଦ୍ଧ ହେଉ । ୨୦ । ଅଗସ୍ତି ଉଦୟ ହେଲେ ଶରତ୍ କାଳରେ ଜଳ ନିର୍ମଳ ହୁଏ ଓ କମିଯାଏ । ମହାଦେବ ଅନ୍ତର୍ଦ୍ଧାନ ହୁଅନ୍ତେ, ଅପର୍ଣ୍ଣାଙ୍କର ଆନନ୍ଦସମୁଦ୍ରର ଜଳ କମି ଆସିଲା ।

ଅଭିନବ ଘନ ରୁଚି  ଲୁଚକ ଚଞ୍ଚଳ ଚିହ୍ନାଇ
ଚଳନ୍ତେ ତା ଝଞ୍ଜାବାତ ଦେଲ ଦଳ ସେ । ଅଦ୍ଭୁତା ।
ଅନୁଭବ କଲେ ଯେତେ କ୍ଲେଶ
ଅଣୁମାତ୍ର କେ ତା କରିବ ପ୍ରକାଶ ଯେ । ୨୧
ଅପୂର୍ବ ମୀନ କୂର୍ମକୋଳ  ନୃହରି ଖର୍ବ ମଞ୍ଜୁଳ
ପର୍ଶୁରାମ ରାମ ବଳରାମ
ଅନୁକମ୍ପାମୟ ବୁଦ୍ଧ  କଳ୍କି ଦେବ ଦଶବିଧ—
ରୂପ ହର ପାପ କର ପୂର୍ଣ୍ଣକାମ ହେ । ଅନ୍ଧକାର
ଅଶେଷ ସୁଖଦ ଶେଷସେବ୍ୟ
ଅବନୀଶ ବଳଭଦ୍ର ବଳ ଦେବ ହେ । ୨୨

# ପଞ୍ଚଦଶ ଛାନ୍ଦ

## ଅବନା ନିୟମ—ପ୍ରାନ୍ତ ଯମକ

ରାଗ—ମଙ୍ଗଳ

ଅତ୍ୟନ୍ତ ସଜ୍ଜନ-ଜନ ଶ୍ରବଣ କର
ଅସମରେ-ସରସ-ଗ୍ରନ୍ଥପ୍ରକର । ୧
ଅନ୍ଧକପର କନ୍ଦର୍ପଶର ଅବଶ
ଅନବରତ ମନ ତ ରତର ବଶ । ୨
ଅଚଳ ଅପତ୍ୟ-ଅଙ୍ଗ-ସଙ୍ଗ କରଣ
ଅହ ଅନହ ସକଳ କ୍ଷଣ ସ୍ମରଣ । ୩

---

୨୨ । କୋଳ-ବରାହ । ଖର୍ବ-ବାମନ । ଅନୁକମ୍ପାମୟ-ଦୟାଳୁ । ପାପହର—ପାପବିନାଶ କର । ଅବନୀଶ—ରାଜା । ବଳଦେବ—ବଳପ୍ରଦାନ କରିବ ।

---

### ପଞ୍ଚଦଶ ଛାନ୍ଦ

୧ । ଅସମଶର—କନ୍ଦର୍ପ । ୨ । କନ୍ଦର୍ପ ଶର ଅବଶ—କାମବାଣରେ କ୍ଲାନ୍ତ । ରତର ବଶ—ଅନୁରାଗ ଅଧୀନ । ୩ । ଅଚଳ ଅପତ୍ୟ—ପାର୍ବତୀ । ଅଙ୍ଗ... କରଣ—ଦେହର ମିଳନ । ଅହ—ଦିନ । ଅନହ—ଯେ ଦିନ ନୁହେଁ, ରାତି ।

ଅଶନ ଅଙ୍ଗ ବସନ ଉସ ପଟ୍ଟତ
ଅକ୍ଷପତନ କ୍ଷଣ ତ ବରଷଙ୍କତ । ୪
ଅର୍କସମ ଚନ୍ଦ୍ରକର ମନ୍ଦପବନ
ଅନଳ ବତ ସଚନ୍ଦ୍ର ଚନ୍ଦନ-ବନ । ୫

ଅବ୍ଜଜଟମ୍ପାଳ ଘନରସ ସ୍ମରଣ
ଅତ୍ୟନ୍ତ କଷ୍ଟଣିଜାଉ ଦନ୍ତଦ୍ୱରଷ୍ଟ । ୬

ଅଚଳବତ କପର୍ଦ୍ଦ ମସ୍ତକପର
ଅସମ ନୟନଦ୍ୱୟ ଘର ଅପର । ୭
ଅଙ୍ଗଥର ଚଳଦଳଦଳଦଳନ
ଅନଳ୍ପ କଷ୍ଟ ପଦର ପର ଚଳନ । ୮

ଅଗମ୍ୟ ଗହନ ବନ ସମ ସଦନ
ଅନ୍ତକବତ କଷ୍ଟଦ ନଷ୍ଟମଦନ । ୯

ଅନର୍ଥପ୍ରଦ ଭ୍ରମର-ଭ୍ରମଣ-ରଙ୍ଗ
ଅମଙ୍ଗଳତର ସ୍ମର-ଶର-ତରଙ୍ଗ । ୧୦

ଅସହ୍ୟ କଳକଣ୍ଠର କଳବଚନ
ଅସ୍ତ୍ରପତନ ରତନ-ସଜ-ରଚନ । ୧୧

---

୪ । ଅକ୍ଷପତନ କ୍ଷଣ-ଆଖି ପିଛୁଳିବା କେତେ (ନିମେଷ) । ଅଶନ—ଭୋଜନ । ବସନ—ଲୁଗା ପଟ୍ଟତ ଉଶ ଭାର ହେଲା । ବରଷ କତ—ବର୍ଷ (୧୨ ମାସ) ପରି ଚନ୍ଦ୍ରକିରଣ (ଅର୍କସମ) ସୂର୍ଯ୍ୟକିରଣ ପରି । ସଚନ୍ଦ୍ର—କର୍ପୂରଯୁକ୍ତ । ଚନ୍ଦନ ବନ—ଚନ୍ଦନ ପାଣି । ଅନଳବତ— ନିଆଁ ପରି । ଦନ୍ତଦ୍ୱନ୍ଦ୍ୱ—ଦନ୍ତଷର ବିନାଶକ । ୬ । ଅବ୍ଜ-ପଦ୍ମ । ଘନରସ-ଜଳ । ୭ କପର୍ଦ୍ଦ—ଶିବଙ୍କ ଜଟା । ଅଚଳବତ-ପର୍ବତ ପରି ଭାରି । ଅସମ···ଘର—ବିଷମ ଆଖି ତିନୋଟି । (ଅପ) ଜଳର ଘର (ସ୍ଥାନ) ହେଲା । ୮ । ଅଙ୍ଗ ଥର— ଦେହ କମ୍ପନ । ଚଳଦଳ-ଦଳ-ଦଳନ—ଅଶ୍ୱତ୍ଥ ପତ୍ରକୁ ବଳିପଡ଼େ । ଅନଳ୍ପ କଷ୍ଟ-ଅତି କଷ୍ଟ । ୯ । ସଦନ-ଘର ଗହନ ବନସମ—ଘୋର ଜଙ୍ଗଲପରି । ଅଗମ୍ୟ—ଦୁର୍ଗମ । ନଷ୍ଟ—ବିନାଶପ୍ରାପ୍ତ । ମଦନ—କାମ । ଅନ୍ତକବତ—ଯମପରି । କଷ୍ଟଦ—ଦୁଃଖଦାୟକ । ୧୦ । ଭ୍ରମରର ବୁଲିବା (ରଙ୍ଗ) ଖତି ଅନର୍ଥଦାୟକ । (ତରଙ୍ଗ) ପ୍ରବାହ ପରି ପଡ଼ୁଥିବା କାମ ଶର । ୧୧ । କଳକଣ୍ଠ—କୋକିଳ । କଳବଚନ—ଅବ୍ୟକ୍ତ ଧ୍ୱନି । ଅସହ୍ୟ—ଦୁଃସହ । ରତନ-ସଜ-ରଚନ—ରତ୍ନ ଅଳଙ୍କାର ଧାରଣ । ଅସ୍ତ୍ର-ପତନ—ଶରପାତ ହେଲା ପରି ବୋଧ ହେଉଛି ।

ଅନ୍ୟ ପରସଙ୍ଗ ରଙ୍ଗରସ ସ୍ୱପନ
ଅକ୍ଷ-ବନ-ଅପ୍ରସନ୍ନ-କଞ୍ଜ-ଲପନ । ୧୨
ଅବଜ୍ଞପଲ୍ଲିବ ଶପ୍ନନର ତଳପ
ଅଶକତ ବଚନ ଅଲପ ଜଳପ । ୧୩
ଅନନ୍ତର୍ ※ ବଡ଼ଗର୍ ସଙ୍ଗ ହୃଦର
ଅର୍ଦ୍ଧଚନ୍ଦ୍ର ମସ୍ତକର ଦଣ୍ଡପ୍ରଦର । ୧୪
ଅଚ୍ଛ-ରଜତ-ଧବଳ-ଆରମ୍ଭ-ପତ୍ର
ଅଙ୍ଗବର୍ଣ୍ଣ ଧଇର ଅରସ ଖର୍ପର । ୧୫
ଅବର୍ଣ୍ଣ ଘଟନ ଗ୍ରନ୍ଥ କଷ୍ଟପ୍ରକର
ଅବର୍ଣ୍ଣ ସର୍ବସ୍ୱ ବଚ ଅଚଳ କର । ୧୬

---

୧୨ । ଅନ୍ୟ ପ୍ରସଙ୍ଗ—ଅନ୍ୟ ବିଷୟକ କଥା । ରଙ୍ଗରସ—ହାସ୍ୟ କୌତୁକ । ସ୍ୱପନ—ଅର୍ଥାତ୍ ଆଦୌ ଦେଖାଯାଉ ନାହିଁ । ଅକ୍ଷବନ···ଅପ୍ରସନ୍ନ—ନେତ୍ରଜଳ ବା ଲୁହଦ୍ୱାରା ପଦ୍ମମୁଖ ବିରସ ହୋଇଛି । ୧୪ । ହୃଦର—ଶରୀରର । ସଙ୍ଗ—ଶଯ୍ୟାର ସହିତ ଅବସ୍ଥାନ (ଅନନ୍ତ) ବାସୁକିର ଭାରଠାରୁ ବଡ଼ (ଗର୍) ଗରୁ (ଗୁରୁତର ଭାର) । ଦଣ୍ଡ ପ୍ରଦର—ଅତି ଭୟପ୍ରଦାୟକ ହେଲା ମସ୍ତକର ଅର୍ଦ୍ଧଚନ୍ଦ୍ର । ୧୫ । ଅଚ୍ଛ—ନିର୍ମଳ । ଧବଳ ଆରମ୍ଭ—ଧବଳ ଗୁଣ; ଗୌରବ । ପତ୍ର—ଶତ୍ରୁ । ନିର୍ମଳ ରୂପାର ଧବଳ ଗୁଣକୁ ଜିଣିଥିବା ଅଙ୍ଗବର୍ଣ୍ଣ (ଆରସ) ମ୍ଳାନ (ଖର୍ପର) ପରି ଦେଖାଗଲାଣି । ୧୬ । ଅବର୍ଣ୍ଣ ଘଟନ···ଅବର୍ଣ୍ଣରେ ରଚନା କରିବା କଷ୍ଟପ୍ରକର—ଅତି କଷ୍ଟଦାୟକ ଅବନା ନିୟମରେ ଲେଖିବା । ଅବର୍ଣ୍ଣ (ସର୍ବସ୍ୱ) ସବୁ ସ୍ଥଳରେ । ବଚ – ବାକ୍ୟର (ଅଚଳକର) ବାଧାଦାୟକ । ଅଥବା (ଅବର୍ଣ୍ଣ) ଅପଶଃ ଅର୍ଥାତ୍ ଅପଶଃ ଭୟରେ ବାକ୍ୟ ପ୍ରୟୋଗ କରି ହୁଏ ନାହିଁ ।

※ ପ୍ରାଚୀନ କାଳରେ 'ର୍'ସ୍ୱରବର୍ଣ୍ଣ ହେଲେହେଁ ତାହାକୁ ବ୍ୟଞ୍ଜନବର୍ଣ୍ଣରୂପେ ଗ୍ରହଣ କରୁଥିଲେ । ତେଣୁ ଅ, ଆ, ଇ, ଈ, ଉ, ଊ, ଏ, ଐ, ଓ, ଔ—କାରମାନଙ୍କର ଯୋଗକୁ ବନା କୁହାଯାଉଥିଲା । 'ର୍'କୁ ର୍ ଫଳା ବୋଲି କୁହ ଯାଉଥିଲା । ଯ, ବ, ର ପ୍ରଭୃତି ଯୋଗ ଯେପରି ଯଫଳା, ବଫଳା, ରଫଳା ନାମରେ କଥିତ ହେଉଥିଲା; ର୍ ଯୋଗ ମଧ୍ୟ ସେହିପରି 'ର୍' ଫଳା ବୋଲି କଥିତ ହେଉଥିଲା । ଏଠାରେ ମଧ୍ୟ ସେହି ପନ୍ଥା ଅନୁସୃତ ହୋଇଛି ।

ଅଠର ପଦ ସରସ-ରସ ପ୍ରବନ୍ଧ
ଅଙ୍କ ଗଣହରମଲ ବଣଶଙ୍କବନ୍ଧ (?) । ୧୭
ଅଞ୍ଜନବରନ ଧର-ଚନ୍ଦ୍ର-ଚରଣ
ଅପବନ୍ତ ବଳଭଦ୍ର ଭଞ୍ଜ ଶରଣ । ୧୮

---

# ଷୋଡଶ ଛାନ୍ଦ

ରାଗ—ଚକ୍ରକେଳି

[ ଅକ୍ଷର କ୍ରମବୃଦ୍ଧି ନ୍ୟୂନ ଯମକ ]

ଅଥ ସୁମନେ ଶୁଣ ହେ ସୁମନ
ଅଚେତନ ନିଦ୍ରା ବଶେ ଈଶାନ । ୧
ଅନ୍ତଃପୁରେ ଦେଖିଲେ ସଂବେଶରେ
ଅଚଳଜା ବସିଛନ୍ତି ରୋଷରେ । ୨
ଅଧୀଶ୍ୱର ଥରୁଅଛି ଅଧର
ଅମ୍ବୁଜ ଷି ହୋଇଛି ଲୁଅଧର । ୩
ଅନାଇଁ ସେ ସୁବାଣୀ-ବାଣୀ-ମାନ
ଅଗ୍ରେ କହନ୍ତି କାନ୍ତବର୍ଣ୍ଣୀ-ମାନ । ୪

---

୧୮ । ଅଞ୍ଜନ—ଚନ୍ଦ୍ର । ଅଞ୍ଜନବର୍ଣ୍ଣ—ନୀଳବର୍ଣ୍ଣ (ଧର) ପର୍ବତର ଚନ୍ଦ୍ର—ଜଗନ୍ନାଥ । ଅପବନ୍ତ—ପାପୀ ।

---

## ଷୋଡଶ ଛାନ୍ଦ

୧ । ଈଶାନ—ଶିବ । ୨ । ସଂବେଶ—ନିଦ୍ରା । ୩ । ଲୁଅ—ଲୁହ, ଅଶ୍ରୁ । [ଗ୍ରନ୍ଥର ବହୁସ୍ଥଳରେ 'ଲୁଅ'ର ପ୍ରୟୋଗ ଦେଖି ତାହାକୁ ଲେଖକ ପ୍ରମାଦ ମନେକରି ମୁଁ 'ଲୁହ' କରିଥିଲି; କିନ୍ତୁ ଏ ସ୍ଥଳରେ ଯମକ ଅଳଙ୍କାରରେ 'ଲୁଅଧର' ଲେଖାଥିବାରୁ ଦେଖି 'ଲୁଅ' ବୋଲି ଲେଖିଅଛି । ]

ଅହର୍ନିଶି ମୁଁ ସହି ଆତପରେ
ଅଶ୍ମସମ କରି ହିଆ ତପରେ । ୫
ଅନୁସରଣ କଲି ତୋ ସେବାରେ
ଅନାଇଁ କି ନ କଲୁ ତୋଷେ ବାରେ । ୬
ଅଙ୍ଗନା କି ଆଗରେ ଅକ୍ଷେ ଚମୁଁ—
ଅଛୁଁ, ଦଣ୍ଡ ଆଗରେ ଅଛି ତ ମୁଁ । ୭
ଅକ୍ଷି ମାରଜ-କାଣ୍ଡ ବରଷ ତ,
ଅଙ୍ଗେ କରଜକାଣ୍ଡବର ଶତ । ୮

ଅଚ୍ଛ ଗଉରୀବରନା ସୁତରେ
ଅନା ଗଉରୀ-ବର ନାଶୁ ତରେ । ୯

ଅଶିବରେ ନବ-ସ୍ମର ଜୀବନ
ଅସିବରେ ନବ ସ୍ମର ଜୀବନ ! ୧୦

ଅନାଥରେ ନ ବହ ସରାଗରେ
ଅନା ଥରେ ନବ-ହସ-ରାଗରେ । ୧୧

---

୫ । ଆତପରେ—ଖରାକୁ । ଅଶ୍ମସମ—ପଥର ପରି । ହିଆ—ଚିତ୍ତ । ତପରେ—ତପସ୍ୟାଦ୍ୱାରା । ୬ । ମୁଁ ତୋ ସେବାରେ ଅନୁସରଣ କଲି; ଆଉ ଏପରି କଅଣ କଲି ଯେ, ଥରେ ହେଲେ ତୋଷରେ ଖୁସିରେ ଅନାଉ ନାହୁଁ । ୭ । ଅଙ୍ଗନେ ! ତୁ (ମୋର) କି (ଆଗରେ) ଅପରାଧରେ ଅ.ଖିକି (ଚମୁଅଛୁ) ଚମ ଚମ କରୁଅଛୁ । ମୁଁ ତ ଆଗରେ ସାମନାରେ ଅଛି । ମୋତେ ଦଣ୍ଡ ଦିଅ । ଏହି ପଦ 'କ୍ଷ'ର 'ଛ' ସହିତ ଉଚ୍ଚାରଣସାମ୍ୟର ଉଦାହରଣ ସ୍ଥଳ । ୮। ଆଖିରୂପ ମାରଜ—ଦେବର କାଣ୍ଡକୁ ଓ କରଜ ନଖ ରୂପ କାଣ୍ଡବର ଉତ୍କୃଷ୍ଟ ଶରକୁ ଶତ ସଂଖ୍ୟାରେ ବରଷ ବୃଷ୍ଟି କରତ । ୯ । ଅଚ୍ଛ—ନିର୍ମଳ । ଗୌରୀବରନା—ଗୌରବର୍ଣ୍ଣା ତୁ ସୁତରେ—ଅନ୍ୟର ଅଜ୍ଞାତରେ ବା ଭଙ୍ଗୀ ସହିତ ଅନା । ଗୌରୀବର—ଶିବ । ତରେ—ଉଦ୍‌ବେଗକୁ ନାଶ କରୁ ।୧୦। ହେ ଜୀବନ—ପ୍ରାଣ ତୁଲ୍ୟ ପ୍ରିୟା । ଅଶିବରେ—ଅମଙ୍ଗଳ ଭାବେ । ନବସ୍ମର—ନୂତନ କନ୍ଦର୍ପ । ଅସିବରେ—ଉତ୍କୃଷ୍ଟ ଖଡ୍‌ଗ ଦ୍ୱାରା ଜୀବନ-ପ୍ରାଣ ନେବ, ଏହା ସ୍ମରଣ କର । ୧୧ । ଅନାଥରେ—ଅରକ୍ଷ ଲୋକଠାରେ । ସରାଗରେ—କ୍ରୋଧକୁ । ନ ବହ—ଧାରଣ କର ନାହିଁ । ଥରେ ମାତ୍ର ନବହସରାଗରେ—ନୂତନ ହାସ ରାଗରେ, ଅନୁରକ୍ତ ସହିତ । ଅନା—ଚାହଁ ।।

ଅ-ପୂରୁବ-ତନୁ-ରସ-ବଶରେ
ଅପୂରୁବ-ତନୁ ରସ ବସରେ । ୧୨

[ଅନୁଲୋମ ବିଲୋମ]

ଅନା ମତେ ରସେ ରତେ ମନାଅ
ଅପାଙ୍ଗର ସରସ-ରଙ୍ଗ ପାଅ । ୧୩
ଅନିଶ ରସ, ଆସ, ର
ଅପାନକର ମାରକ ନ ଦିଅ । ୧୪
ଅପର ନାହିଁ ମୋହର ସଂସାରେ
ଅପରନା ହିଁ ମୋ ହରଷ କରେ । ୧୫
ଅମୃତ-ଆଧାରବଦନ-ମୂର୍ତ୍ତି
ଅମୃତ ଆଧାର-ଭୁ ଜୀଆଁ ଦେଇ । ୧୬

---

୧୨ । ଅପୂରୁବ ତନୁ—ଯାହାର ଶରୀର ପରି ସୁନ୍ଦର ଶରୀର ପୂର୍ବେ ଦେଖାଯାଇ ନାହିଁ ଅଥବା ହେ ଅତି କ୍ଷୀଣାଙ୍ଗି ! ଅପୂର୍ବ ତନୁର-ଅତନୁର—କନ୍ଦର୍ପର । ରସ ବଶରେ-ରସରେ ବଶ ହୋଇ ରସ କ୍ରୀଡ଼ାକରି, ମୋ ନିକଟରେ ବସ । ୧୩ । ମତେ ରସେ—ଅନୁରାଗ ସହିତ । ଅନା—ଚାହିଁ । ରତେ ।ସୁରତଦ୍ୱାରା ମନାଅ, ମନକୁ ହରଣ କର, ବଶୀଭୂତକର । ଅପାଙ୍ଗର-ନେତ୍ରପ୍ରାନ୍ତର । ସରସ ରଙ୍ଗ—ସରସ କ୍ରୀଡ଼ାକୁ ପାଅ—ଲାଭକର ଅର୍ଥାତ୍ ସକୌତୁକ କଟାକ୍ଷରେ ଚାହିଁ । ୧୪ । ଅନିଶ—ସର୍ବଦା । ରସ—ଅନୁରକ୍ତା ହୁଅ । ଆସ (ମୋ ପାଖକୁ) ରସ—ମୋର ଅନୁରାଗ (ନିଅ) ଗ୍ରହଣ କର । ମୋତେ ଅପାନକର—ଦୁଃଖିତ କର ନାହିଁ । (ମାରକ) ମୃତ୍ୟୁ (ନ ଦିଅ) ଦିଅ ନାହିଁ । 'ମାରକୁ ନ ଦିଅ' ବୋଲି ପାଠ କଲେ କନ୍ଦର୍ପକୁ ନ ଦିଅ ବୁଝାଇବ । ୧୩ଶ ଓ ୧୪ଶ ପଦଦ୍ୱୟ ଅନୁଲୋମ ବିଲୋମ ଅର୍ଥାତ୍ ବାମରୁ ଡାହାଣକୁ ପଢ଼ିଲେ ଯାହା, ଡାହାଣରୁ ବାମକୁ ପଢ଼ିଲେ ତାହା । ୧୫ । ସଂସାରେ—ସଂସାରରେ ମୋହର ଅପର (ଅନ୍ୟ) ନାହିଁ । ଅପରନା—ଅପର୍ଣ୍ଣା, ପାର୍ବତୀ ହିଁ—କେବଳ । ମୋ—ମୋହର । ହରଷ—ଆନନ୍ଦ କରେ । ୧୬ । ଅମୃତ ଆଧାର—ଚନ୍ଦ୍ର । ହେ ଚନ୍ଦ୍ରକୁ ବଳି ସୁନ୍ଦର ମୁଖବିଶିଷ୍ଟା ପାର୍ବତୀ ! ମୋତେ (ଅମୃତ ଆଧାର) ଅମୃତ ତୁଲ୍ୟ ଭୋଜନ (ବା ଅଧରାମୃତ) ଦେଇ (ଜୀଆଁ) ଜୀବନ ଦିଅ ।

ଅପଘନ-ଘନେ ଅସ୍ରୁଁ କ ମୁଞ୍ଚ
ଅପଘନ ଘନେ ମୋ ଅଙ୍କେ ମୁଞ୍ଚ । ୧୭
ଅମାନ-ନାଗରୀ-ବର ମଣ୍ଡନା
ଅମାନ ନାଗରି ! ବରେ କର ନା । ୧୮
ଅନଳପର-ଉଷମ-ଶରରେ
ଅନଳପ ରତୀଶ ପରହାରେ । ୧୯
ଅଧିକ କି କହିବ ମୋତିଦନ୍ତି !
ଅଧି-କ କି ନ କରବୁ ପୀରତି । ୨୦
ଅବଜାକ୍ଷୀକି ଦେଇ ଆନ-ବାର
ଅବଜାଙ୍ଘ୍ରି ଧଇଲେ ପୁନବାର । ୨୧
ଅନୁପମ-ପ୍ରେମ-ଗୂଢ଼ ବଚନେ
ଅନୁଗ୍ରହେ ଚାହିଁ ଖେଳ-ଲୋଚନେ । ୨୨
ଅଧରରେ ଧରି ଧୀରା ହାସକୁ
ଅକ୍ଷେ ପ୍ରକାଶିଲେ ଖେଳରସକୁ । ୨୩

---

୧୭ । ହେ ଅପଘନଘନେ—ଯାହାର ଶରୀରଟି (ଘନ) ଯଥାଯଥଭାବେ ସନ୍ନିବିଷ୍ଟ ଅର୍ଥାତ୍ ହେ ଶୋଭନାଙ୍ଗି ! (ମୋ) ଅସ୍ରୁ—ଆଖିରୁ । କ—ଜଳ (ଲୋତକ) ମୁଞ୍ଚ—ପୋଛି ପକାଅ; ମୋତେ କନ୍ଦାଅ ନାହିଁ । ଅପଘନ-ଶରୀରକୁ । ଘନେ—ନିବିଡ଼ ଭାବେ । ମୋ ଅଙ୍କେ—ମୋ କୋଡ଼ରେ (ମୁଞ୍ଚ) ସ୍ଥାପନ କର । ୧୮ । ଅମାନ – ଅସଂଖ୍ୟ; ନାଗରୀବର—ଶ୍ରେଷ୍ଠ ସ୍ତ୍ରୀ ମାନଙ୍କ ମଧ୍ୟରେ ଯେ (ମଣ୍ଡନ) ଅଳଙ୍କାରସ୍ୱରୂପ । ଯେତେ ଉତ୍ତମ ନାଗରୀ ଅଛନ୍ତି, ସେମାନଙ୍କ ମଧ୍ୟରେ ତୁ ଅଳଙ୍କାରସ୍ୱରୂପ ଅଛୁ । ହେ ନାଗରି ! ହେ ରସିକେ ! ବରେ—ପ୍ରାଣପ୍ରିୟଠାରେ (ଅମାନ) ଅସମ୍ମାନ କର ନାହିଁ । ୧୯ । ରତୀଶ—କାମ । (ଅନଳପର) ଅଗ୍ନିରୁ ଅଧିକ (ଉଷମ) ତାତିଲା ଶରରେ (ଅନଳପ) ଅତି ଅଧିକ ଭାବେ (ପରହାରେ) ପ୍ରହାର କରୁଅଛି ।୨୦। ହେ ମୋତିଦନ୍ତି ! ମୁଁ ଅଧିକ କ-କଣ କହିବ ? ତୁ (ପୀରତି) ପ୍ରୀତିକୁ ଅଧି-କ ମସ୍ତକ ଉପରେ କରିବୁ ନାହିଁ ? ଅର୍ଥାତ୍ ସର୍ବାପେକ୍ଷା ଶ୍ରେଷ୍ଠ ସ୍ଥାନ ଦେବୁ ନାହିଁ କି ? ଅଥବା-ଅ ଧିକ—ଧି କାରରହିତ, ପ୍ରଶଂସାଯୁକ୍ତ କରିବୁ ନାହିଁ କି ? ୨୧ । ଅବ୍ଜାକ୍ଷୀକି—ପଦ୍ମଲୋଚନା ଗୋରୀଙ୍କୁ (ଆନବାର) କହୁଣ ଟିକେ ଦେଇ ପୁନବାର ଅବଜାଙ୍ଘ୍ରି—ପାଦପଦ୍ମକୁ ଧଇଲେ । ୨୨ ଓ ୨୩ । ଅନୁପମ ଅତୁଳ୍ୟ । ପ୍ରେମପୂର୍ଣ୍ଣ ଗୂଢ଼ବଚନ—ପ୍ରିୟବାକ୍ୟ ଦ୍ୱାରା ପ୍ରୀତାହୋଇ ଅନୁଗ୍ରହରେ ଖେଳଲୋଚନେ - ଗୂଢ଼ କି ଛଟକଯୁକ୍ତ ଆଖିରେ ଚାହିଁ, ସେହି ଧୀରା—ପଣ୍ଡିତା ଅଧରରେ ହସକୁ ଧଇଲେ । ଅକ୍ଷେ···ରସକୁ—ଚକ୍ଷୁର କ୍ରୀଡ଼ା ଭ୍ରୂବିକ୍ଷେପ ପ୍ରଭୃତିକୁ ପ୍ରକାଶ କଲେ ।

ଅନୁରାଗରେ ଭ୍ରୂଲତା ନାଚନ୍ତି
ଅଙ୍ଗହୀନ ଧନୁ ଧରି ଆସିଲା । ୨୪
ଅନ୍ଧକ-ରିପୁର ଭାବ-ଉଦ୍ରେକେ
ଅବଳାକୁ ଧରି ଆଣନ୍ତେ ଅଙ୍କେ । ୨୫
ଅତି ଅଧୈର୍ଯ୍ୟେ ଗଲା ନିଦ୍ରା ଭାଙ୍ଗି
ଅନାଇଲେ ନାହିଁ ଲୋଳ-ଅପାଙ୍ଗୀ । ୨୬
ଅନ୍ଧକାର ଦିଶିଲା ଦଶଦିଶ
ଅନ୍ଧକାରି କାମେ ହେଲେ ଆବେଶ । ୨୭

[ ହରହର ସ୍ତୁତି ]

ଅଯ୍ୟେ ମାଳଗିରିବର ମାଧବ
ଅର୍ଦ୍ଧ ଅଙ୍ଗେ ଧରଜା ବର ଶିବ । ୨୮
ଅଙ୍ଘ୍ରି-ତଳରେ ତୁମ୍ଭର ଶରଣ
ଅଛି ପଶି ଏ ଭଞ୍ଜ ନୃପଗଣ । ୨୯

---

ଭ୍ରୂକ୍ଷେପ— ଉତ୍କ୍ଷେପଃ ପାତନଂ ଚୈବ ଭ୍ରୁକୁଟୀ ଚତୁରଂ ଭ୍ରୁବୋଃ
କୁଞ୍ଚିତଂ ରେଚିତଂ ଚେତି ସହଜଂ ଚେତି ସପ୍ତଧା—'ମିତ୍ରଦେବ'

୨୪ । ଅନୁରାଗ ହେତୁ ଭ୍ରୂଲତା ନାଚିଲା, ତାହା ଦେଖି ଜଣାଗଲା ଅଙ୍ଗହୀନ—କାମ ଧନୁ ଧରି ଆସିଲା--ଟାଣିଲା କି ? ୨୫ । ଅନ୍ଧକରିପୁ— ମହାଦେବ । ଭାବ ଉଦ୍ରେକେ—ଭାବରେ ଉଦ୍ରେକ ହୋଇ । ନିର୍ବିକାର ଚିତ୍ତରେ ପ୍ରଥମେ ଯେଉଁ ବିକାର ଜାତ ହୁଏ, ତାହାକୁ ଭାବ କହନ୍ତି । ୨୬ । ଲୋଳ ଅପାଙ୍ଗୀ— ଚଞ୍ଚଳଲୋଚନା । ୨୮—୨୯ । ହେ ମାଳଗିରି ବର—ହେ ମାଳଗିରି ସ୍ୱାମୀ ! ମାଧବ—ବିଷ୍ଣୁ । ଧରଜା—ପାର୍ବତୀ । ତାଙ୍କର ବର—ସ୍ୱାମୀ, ଶିବ ।



# ସପ୍ତଦଶ ଛାନ୍ଦ

ରାଗ—କଉଶିକ

ଅତି ଶୁଦ୍ଧମନେ ଶୁଣ ହେ ସୁମନେ ଅମ୍ବିକା-ପ୍ରତ୍ୟଙ୍ଗ-ବର୍ଣ୍ଣନା
ଅମ୍ବୁନିଧି ବାନ୍ଧିବାକୁ ମୋର ବୁଦ୍ଧି ମେରୁ କରୁଅଛି ତୁଳନା ।
ଅନନ୍ତ
ଅନ୍ତ କେମନ୍ତରେ କରିବ,
ଅଞ୍ଜଳିରେ ମୋର କେଉଁରୂପେ ସୁର-ନଦୀ-ଧାର ଧରି ପାରିବ । ୧
ଅନାଦି ଅନନ୍ତ ଅତୁଲ୍ୟ ଅଚିନ୍ତ୍ୟ ଆଶ୍ଚର୍ଯ୍ୟ ଯାହାର ମହିମା
ଅଧମାଗ୍ରଗାର ହୋଇ ମୁଁ ତାଙ୍କର ବର୍ଣ୍ଣିବି ପ୍ରତ୍ୟଙ୍ଗ-ସୁଷମା
ଅତ୍ୟନ୍ତ
ସୁନ୍ଦର ଚରଣ ଯୁଗଳ,
ଅମ୍ବୁରୁହ ସ୍ଥିର କେଉଁ ଗୁଣେ ତାର ସୁଷମାସଙ୍ଗେ ହେବ ତୁଳ । ୨
ଅରୁଣେତ୍ତୁ ପରକାଶି ଯେ ଗୋଚର ନୁହଇ ଖୋଜିଲେ ଭ୍ରମରେ
ଅହର୍ନିଶ ଫୁଟି ସୁବାସେ ଉତ୍କଟ ଅଟେ ସର୍ବ ମନୋହରରେ
ଅଳତା—
ଚିହ୍ନେ ସେ ହୋଇଲା ଚର୍ଚ୍ଚିତ,
ଅଶୋକ କୋରକ ଅଙ୍ଗୁଳି ହୀରକ-ନଖରକତରେ ବିରାଜିତ । ୩

---

ସପ୍ତଦଶ ଛାନ୍ଦ

୧ । ସୁମନେ—ପଣ୍ଡିତ ମାନେ । ଅମ୍ବିକା – ପାର୍ବତୀ । ଅମ୍ବୁନିଧି—ସମୁଦ୍ର ତୁଳନା—ଓଜନ କରିବା । ଅନନ୍ତ—ଆକାଶ । ସୁରନଦୀଧାର—ଗଙ୍ଗାଜଳ (ପ୍ରବାହ) । ପାର୍ବତୀଙ୍କର ରୂପ ବର୍ଣ୍ଣନା କରିବାକୁ ସାହସ କରିବା, ସମୁଦ୍ର ବାନ୍ଧିବା, ମେରୁ ଓଜନ କରିବା, ଆକାଶ ମାପିବା ଓ ଅଞ୍ଜୁଳାରେ ଗଙ୍ଗାସ୍ରୋତ ପୂରାଇ ରଖିବାର ଆଶା ସଙ୍ଗେ ସମାନ । ୨ । ଅଧମାଗ୍ରଗାର-ଅଧମ ଲୋକମାନଙ୍କର ନାମ ଗଣନ୍ତି ବେଳେ ପହିଲେ ଯାହା ନାମରେ ଖଡ଼ିଗାର ପଡ଼େ । ଅମ୍ବୁରୁହ—ପଦ୍ମ । ୩ । ପଦ୍ମଠାରୁ ଚରଣର ଆଧିକ୍ୟ ଦେଖାଉଅଛନ୍ତି । ସାଧାରଣ ପଦ୍ମକୁ ଅରୁଣ-ସୂର୍ଯ୍ୟ ଫୁଟାଏ କିନ୍ତୁ ଏ ଚରଣ (ଅରୁଣେତ୍ତୁ) ସୂର୍ଯ୍ୟଙ୍କୁ ବା ପଶ୍ଚାନ୍ତରେ ରକ୍ତିମାକୁ ପ୍ରକାଶ କରୁଅଛି । ଭ୍ରମରେ—ଭ୍ରମରମାନେ, ଭ୍ରାନ୍ତିଦ୍ୱାରା । ସାଧାରଣ ପଦ୍ମକୁ ଭ୍ରମରମାନେ ଅକ୍ଳେଶରେ ପାଆନ୍ତି, ମାତ୍ର ଏ ପଦ୍ମକୁ (ଭ୍ରମରେ) ବିଷୟାସକ୍ତିହେତୁ ଭ୍ରାନ୍ତ ହୋଇ

ଅଛୁ ଉରୁଶୋଭା ବିପରୀତ-ରମ୍ଭାପାଦେ କହନ୍ତି ଯା କପଟ
ଅନୁମାନେ ବାଛୁ ଏହା ଯେ ଯୋଖିଛୁ ମଣୁଛୁ ବୁଝେ ସେ ଉଲଟ

ଅଂଶକେ
କରିକରେ ଶୋଭା କାହିଁଛୁ ?

ଅନୁସରି କାହିଁ ଉପମାନ ପାଇଁ କେଉଁ କବି ବୋଲି ଦେଇଛୁ । ୪
ଅତି ଚରଚରମନା ବକଚର ଚଞ୍ଚୁକୁ ନିତମ୍ବେ ଗଣିଲ
ଅରିହୋଇ କରଗତେ ଏଣୁ ଦର-ଯୋଗେଟି ଅଛୁ ନ ଜାଣିଲ

ଅଟେ କି
ପୁଳିନ ଜଘନକୁ ସମ,

ଅନଙ୍ଗର ହେମଭ୍ରମି ସେ ଚରମ ପରି ନୁହଇ ମନୋରମ । ୫
ଅନାଇଁ ସେ କଟି-ଶୋଭା ସେବନ୍ତି ଧୂର୍ଜଟିଙ୍କ ଉରେ ଉମ୍ବରୁ
ଅନୁମାନ କର ସିଂହହିଁ ତାଙ୍କର କିଙ୍କର ହେଲି ଅସମରୁ ।

ଅଣୁକୁ
ଅଣୁ ବୃଦ୍ଧି ଗଣୁଥାଆନ୍ତି,

ଅଙ୍କ ବୋଲି ଜଣୁ ଜାଣୁ ଗୁରୁ ଅଙ୍କ ଉପମା କି ବୁଝି ହୁଅନ୍ତି ? ୬

---

ଖୋଜିଲେ ଦେଖା ହୁଏ ନାହିଁ । ପଦ୍ମ କେବଳ ଦିନରେ ଫୁଟେ କିନ୍ତୁ ଏ ପଦ୍ମ (ଅହର୍ନିଶ) ଦିନରାତି ସବୁବେଳେ ପ୍ରକାଶିତ । (ଅଶୋକ-କୋରକ) ଅଶୋକକଢ଼ି ପରି ଅଙ୍ଗୁଳିଗୁଡ଼ିକ ହୀରାପରି ଉଜ୍ଜ୍ୱଳ ନଖରେ ଶୋଭାପାଉଅଛି ।୩। ଉରୁ-ଅଣ୍ଟୁର ଉପରିଭାଗ । ବିପରୀତ ରମ୍ଭା-ଓଲଟ କଦଳୀ ଗଛ । କପଟ-ଛଳ,ମିଥ୍ୟା । ଯେ ଏହା ଅନୁମାନ ବଳରେ (ବାଛୁ ଯୋଖିଛୁ) ଉପମା ଦେଇଛି, ମୁଁ ମନେକରୁଛି ସେ ଓଲଟା ବୁଝେ, ଅର୍ଥାତ୍ ପାର୍ବତୀଙ୍କ ଉରୁପରି ଓଲଟ ରମ୍ଭା ବୋଲି କୁହାଯାଇ ପାରେ, କିନ୍ତୁ ରମ୍ଭାକୁ ଉପମାନ ଓ ପାର୍ବତୀଙ୍କ ଉରୁକୁ ଉପମେୟ କରାଯିବା ସଙ୍ଗତ ନୁହେଁ । ଉପମାନ—ଉତ୍କୃଷ୍ଟ ଦ୍ରବ୍ୟ, ଉପମେୟ—ନିକୃଷ୍ଟ ଦ୍ରବ୍ୟ । କରିକରେ—ହାତୀ ଶୁଣ୍ଢରେ । ଅଂଶକେ-ଟିକିଏ ହେଲେ । ହାତୀଶୁଣ୍ଢ ଉପମାନ ହେବାପାଇଁ କାହୁଁତ ଅନୁସରଣ କରିବାରୁ କୌଣସି କବି ଏପରି କହିଦେଇଛି । ୪ । ଅତି ଚରଚରମନା— ଅତି ଚଞ୍ଚଳମନା କୌଣସି କବି । ବକଚର—ଅତି ବଙ୍କା । ନିତମ୍ବ-ପିଚ୍ଛ । ଗଣିଲ-ସମାନକଲ, କିନ୍ତୁ ପାର୍ବତୀଙ୍କ ନିତମ୍ବ ସଙ୍ଗେ ପ୍ରତିଯୋଗିତା କରିବାରୁ ସେ (ଅରି) ଚକ୍ର ନାମ ଧାରଣ କରିଛି ଓ ବିଷ୍ଣୁଙ୍କ ହାତରେ (ଦର ଯୋଗରେ) ଭୟ ଯୋଗରେ, ଅନ୍ୟ ପକ୍ଷରେ ଶଙ୍ଖ ସହିତ ଅସ୍ଥାନ କରୁଛି । ଏହା ସେ କବି ଜାଣି ପାରିଲ ନାହିଁ । ପୁଳିନ—ନଦୀ ଜଳ ପାଖରେ ଥିବା ବାଲୁକାଶଯ୍ୟା ୬ । ଧୂର୍ଜଟି—ଶିବ । ତାଙ୍କର କିଙ୍କର—ପାର୍ବତୀଙ୍କର ସିଂହର (ବାହନ) । ଅସମରୁ—ସମାନ ନ ହେବାରୁ । ଅଣୁକୁ—ପରମାଣୁକୁ ।

ଅନୁପମ ନାଭ—ଶୋଭାସାର ଭାବ ବର୍ଣ୍ଣିଲେ ଲକ୍ଷ୍ୟ ଭ୍ରମି ବା
ଅନାଉଁ ଅନାଇଁ ଅନ୍ଧପରି ଆନ୍ଧ କାହିଁକି କୂପରେ ପଡ଼ିବା
ଅଧିକ
ହୋଇ ଦିଶୁଥିଲା ସରସୀ,
ଅଳପକେ ସର ନୋହେ ତା କି କରି ଲକ୍ଷ୍ୟ ଦେବା ଅବା ଉରସି । ୭
ଅଚ୍ଛିନ୍ନ ରୋମାଳୀ ଅଳିମାଳ କାଳୀ ବର୍ଣ୍ଣାବଳୀ ଦଳି ଶୋହୁଛି
ଅର୍କ ସୁତାଧାରା କି ସେ ହେମ ଧରାପରେ ବନ୍ଧ ହୋଇ ବହୁଛି
ଅସିତ—
ଫଣୀ ନାଭିବନ୍ଧୁ ବାହାରି
ଅତି ଉଚ୍ଚ କୁଚ ଅଚଳକୁ ସେ ଚଳୁଛି କି ଧୀର ଗତି କରି । ୮
ଅସମ ବର୍ତ୍ତୁଳ ବିଶାଳ କୋମଳ ସ୍ନିଗ୍ଧ ଶ୍ରୀଳ କରଯୁଗଳ
ଅମଳ କମଳ ଗୁରୁଚମ୍ପା ମାଳ ମଞ୍ଜୁଳ ମୃଣାଳ ଅତୁଳ

---

ଜାଲାନ୍ତରଗତେ ଭାନୌ ଯତ୍ସୂକ୍ଷ୍ମଂ ଦୃଶ୍ୟତେ ରଜଃ
ତସ୍ୟ ଷଷ୍ଠିତମୋଭାଗଃ ପରମାଣୁଃ ସ ଉଚ୍ୟତେ ।

ଅଣୁବୁଦ୍ଧି— ଅଳ୍ପ ବୁଦ୍ଧି । ପାର୍ବତୀଙ୍କ କଟିକୁ ସ୍ୱରଅଙ୍କ (୪) ସଙ୍ଗେ କେହି କେହି ତୁଳନା କରନ୍ତି । ଯାହାର ନାମ ଅଙ୍କ ଅର୍ଥାତ୍ କଳଙ୍କ, ସେ ତାଙ୍କର ନିର୍ମଳ ଅଙ୍ଗର କଟି ସଙ୍ଗେ କପରି ତୁଳିତ ହେବ ? ୭ । ଅନୁପମ-ଅତୁଳ୍ୟ (ନାଭିଶୋଭାସାର) ନାଭିର ଶ୍ରେଷ୍ଠ ଶୋଭା ବିଷୟ ଚିନ୍ତା କରି ଭାବିଲେ (ଭ୍ରମି) ଜଳଭଉଁରି ବା (ଲକ୍ଷ୍ୟ) ଉପମା ହେବ ? ଲକ୍ଷ୍ୟ ଭ୍ରମି ବା ? ବୋଲି କହିବାହାରି ସେମାନେ ଛଳରେ କହି-ଦେଲେ ଯେ 'ଲକ୍ଷ୍ୟ ଭ୍ରମିବା' ଅର୍ଥାତ୍ ଭଉଁରି ସଙ୍ଗେ ପାର୍ବତୀଙ୍କ ନାଭିକୁ ଲକ୍ଷ୍ୟ କରିବା ନାହିଁ ଯେ – ଲକ୍ଷ୍ୟଭ୍ରଷ୍ଟ ହେବା । ଏପରି ଉପମା ଦେଲେ ଆମ୍ଭେମାନେ (ଲକ୍ଷ୍ୟ) କବିଯଶଃରୁ ଭ୍ରଷ୍ଟ ହେବା । ଅନାଉଁ···ପଡ଼ିବା । ଅନ୍ଧପରି କୂଅରେ ପଡ଼ିବା ସଙ୍ଗେ ସମାନ । ଅତଏବ ତାହା କାହିଁକି କରିବା ? ସରସୀ—ପୋଖରୀ । ୮। ଅଚ୍ଛିନ୍ନ ରୋମାଳୀ-ଅଖଣ୍ଡିତ ରୋମାବଳୀ,ନାଭିଠାରୁ ସ୍ତନ ମଧ୍ୟ ପର୍ଯ୍ୟନ୍ତ ଯାଇଥିବା ସୂକ୍ଷ୍ମ ଲୋମରେଖା । (ଅଳିମାଳ କାଳୀ ବର୍ଣ୍ଣାବଳୀ) ଭଅଁରମାନଙ୍କର କଳାବର୍ଣ୍ଣକୁ (ଦଳି) ଜିଣି (ଶୋହୁଛି) ଶୋଭାପାଉଛି । ହେମ ଧରାପରେ-ସୁନା ଭୂଇଁରେ । ଅର୍କ-ସୁତାଧାରା—ଯମୁନାର ସୁଅ । ଅସିତ ଫଣୀ-କଳା ସାପ । ନାଭିବନ୍ଧୁ-ନାଭି ରୂପକ ଗର୍ତ୍ତରୁ । କୁଚଅଚଳକୁ-କୁଚ ରୂପ ପର୍ବତକୁ । ଧୀର ଗତିରେ-ଆସ୍ତେ ଆସ୍ତେ । ୯ ବର୍ତ୍ତୁଳ-ଗୋଲଗୁଲ । ସ୍ନିଗ୍ଧ—ଚିକ୍କଣ, ଲାବଣ୍ୟଯୁକ୍ତ । ଶ୍ରୀଳ—ଶୋଭାଯୁକ୍ତ ।

ଅଶେଷ—

ବ୍ରହ୍ମାଣ୍ଡରେ ନ ହିଁ ଉପମା,

ଅନ୍ୟରୂପେ ହିଁ ବହୁ ବହୁପାର ନାହିଁ ତାହାକୁହିଁ ସେହି ସୁଷମା । ୯ ।

ଅଙ୍ଗୁଳୀ ଆବଳୀ ଚମ୍ପାକଳୀବଳ ଦଳିତ ଗଳିତ ନୁହଇ

ଅତନୁ କାଞ୍ଚନ ସଞ୍ଚ ପଞ୍ଚଶର ରଚନା କରିଛି କି ବହି

ଅମଳ

ଜାତି-ଦଳରୁ ନଖ-ତୋରି

ଅବ୍ଜ ଯୋନି ଗୁହିଁ ଗଢିଥିଲେ ନୋହିଲାଟି ଏ ପରି ଶଶୀତାରି । ୧୦

ଅଛି ଯେଣୁ ବଳ ତ୍ରିପୁର ତ୍ରିବଳୀ ଏଣୁ ସେ ତ୍ରିବଳୀ ବୋଲାଇ

ଅନିରୁଦ୍ଧପୁର-କେଳି-ସରସୀର ପାବଚ୍ଛ ପରି ପ୍ରତେ ହୋଇ

ଅପରେ

ନୋହିବ ନୋହିଛି ନୋହୁଛି

ଅଧ ଊର୍ଦ୍ଧ୍ୱ ମଧ୍ୟରେ କି ଏହି ସିଦ୍ଧ ବାଧି ତିନିଗାର ଦେଇଛି । ୧୧

ଅମାନ-କଠିନ ପୀନ ଘନସ୍ତନ ଭୁବନ-ନୟନମୋହନ

ଅମ୍ବୁଜ-କୋରକ ଟେକ ସମ୍ପୁଟକ ଚକ୍ରବାକ କି ତା ସମାନ

---

ଅମଳ-ଦୋଷରହିତ । କମଳ-ପଦ୍ମ । ରୁଚୁ-ମନୋହର । ଚମ୍ପାମାଳ-ଚମ୍ପାହାର ମଞ୍ଜୁଳ ମୃଣାଳ-ସୁନ୍ଦର (ଏଠାରେ କୋମଳ) ପଦ୍ମନାଳ ଆଦି (ଅତୁଳ) ଉପମା-ଯୋଗ୍ୟ ନୁହନ୍ତି ।୧୦। ଚମ୍ପାକଢ଼ୀ ସମୟରେ (ଦଳିତ) ଦ୍ରହ୍ମ ଟିତ ଓ ତପ୍ତରେ (ଗଳିତ ହୁଏ) ଝଡ଼ିପଡ଼େ, କିନ୍ତୁ ପାର୍ବତୀଙ୍କ ଅଙ୍ଗୁଳି ସେପରି ନୁହେଁ । ଅତନୁ—କନ୍ଦର୍ପ । (କାଞ୍ଚନ-ସଞ୍ଚ ପଞ୍ଚଶର) ସୁନାରେ ସୁନ୍ଦର ପାଞ୍ଚଗୋଟି ଶର ତିଆରି କରିଛି କି ? ନଖ (ଜାତିଦଳ) ମାଳତୀ ପାଖୁଡ଼ାଠାରୁ ଆହୁରି ଉଜ୍ଜ୍ୱଳ । (ଅବ୍ଜଯୋନି) ବିଧାତା ଏହି ନଖକୁ ଗୁହିଁ ଶଶୀ ନକ୍ଷତ୍ରକୁ ତିଆରି କଲେ ଯେ, ସେ ଏପରି ହେଲେନାହିଁ ୧୧। ଶୋଭାରେ ତ୍ରିପୁରକୁ (ବଳ) ଜିଣିଥିବାରୁ ପାର୍ବତୀଙ୍କର ଉଦରର 'ତ୍ରିବଳୀ' ତ୍ରି-ବଳ ନାମକୁ ଧାରଣ କରିଛି ପରି ! ଅନିରୁଦ୍ଧ···ହୋଇ । କାମ ନଗରରେ କ୍ରୀଡ଼ା ପାଇଁ ଯେଉଁ ପୋଖରୀ ଅଛି, ତାହାର (ପାବଚ୍ଛ) ପାହାଚ ପରି ବୋଧ ହେଉଛି । ତ୍ରିବଳୀକୁ ଉତ୍ପ୍ରେକ୍ଷା କରୁଅଛନ୍ତି—ପାର୍ବତୀଙ୍କ ପରି ସ୍ତ୍ରୀ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତିନି ଲୋକରେ ଅତୀତ, ଭବିଷ୍ୟତ୍ ଓ ବର୍ତ୍ତମାନ କାଳରେ ନୋହିଥିଲା, ନୋହିବ ଓ ନାହିଁ—ଏହି ତିନି କଥାକୁ ତିନିଗାର ପକାଇ ଦୃଢ଼ କରି ଜଣାଇ-ଦେଇଛି ପରି ! ୧୨ । ଅମାନ କଠିନ— ଅତି କଠିନ । ପୀନ—ପୃଥୁଳ । ଘନ—ନିବିଡ଼, ଲଗାଲଗି । ଭୁବନ···ମୋହନ— ସଂସାରସାକ ଲୋକଙ୍କର ନେତ୍ରକୁ

ଅଚଳ
ଉପମା କେହ୍ନ ଦେବା ଅବା
•ଅସମାନ ବୀଜପୂର ତୃଣରାଜ ଘଟ ଥିଲେ କେହ୍ନ ଯୋଖିବା । ୧୨
ଅନଙ୍ଗର ଖେଳ-କନ୍ଦୁକ ଶ୍ରୀଫଳ ବୋଲିବାରୁ ଅଛି କ ଫଳ ?
ଅନୁମାନ କର କବା ସେ ତାହାର ବଜା-ବୀଣା-ତୁମ୍ବୀ-ଯୁଗଳ ।
ଅଟଇ
ଦୃଢ଼ିମ ଗୁଣେ ସେ ଅତୁଳ,
ଅଗ୍ରଭାଗେ ନୀଳଚୁଚୁକ କମଳ-କୋରକ ପରେ କି ଭ୍ରମର । ୧୩
ଅନୁମାନ କରେ କଣ୍ଠଶୋଭା ଦରେ ନ ଥିବ କି ସମ କରିବା
ଅଖିଳ ଶୋଭନ ପ୍ରସନ୍ନ-ବଦନ-ମୁକୁର-ମୁଠି ସେ କି ଅବା
ଅଟେ ସେ
ଭୁଜଯୁଗଳ-ଲତା-ମୂଳ,
ଅହର୍ନିଶି ବସି ବସ୍ତ୍ରରଲେ ଦଶିଲ କି ଉପମା ତାହା ତୁଲ । ୧୪

---

ମୋହୁଥିବା । ଅମ୍ବୁଜ କୋରକ-ପଦ୍ମକଢ଼ । ଟେକ ସଂପୁଟକ-ଉତ୍ତମରୂପେ ଓଲଟା ହୋଇଥିବା ଉଚ ଫରୁଆ । ଚକ୍ରବାକ--ଚକୁଆ ଚକ ପକ୍ଷୀ । ଅଚଳ—ପର୍ବତ । ବୀଜପୂର୍ଣ୍ଣ-ଟାଭାଲେମ୍ବୁ । ତୃଣରାଜ-ତାଳ । ଘଟ-ମାଠିଆ । ସୌବୀର-ବରକୋଳି ।

ତରପ୍ରବାସିଂସ୍ତବ ବାଟିକାସ୍ଥାଂ ବଭର୍ତ୍ତି ଚନ୍ଦ୍ରାଶ ଫଳାନି ବାରୁତ୍
ସୌବୀର-ଜମ୍ବୀରକ-ବୀଜପୂର-ତାଳାନ୍ୟସୌ ଧାସ୍ୟନ୍ତ କିଂ ନୁ ପଶ୍ଚାତ୍ ।

୧୩ । କନ୍ଦୁକ—ପେଣ୍ଡୁ । ଶ୍ରୀଫଳ—ବେଲ ବା ନଡ଼ିଆ । ତାହାର (କାମର) ବାଜା ବୀଣାତୁମ୍ବୀ ଯୁଗଳ-କାମ ଯେଉଁ ବୀଣା ବଜାଏ, ତାହାର ଲାଉ ଦୁଇଟି । ଦୃଢ଼ିମ—କଠିନତା । ନୀଳଚୁଚୁକ—ସ୍ତନର ଅଗ୍ରଭାଗ । କମଳକୋରକ —ପଦ୍ମକଢ଼ । ଭ୍ରମର—ଭଅଁର ।

ଦିନେଷୁ ଗଚ୍ଛତ୍ସୁ ନିତାନ୍ତପୀବରଂ
ତଦୀୟମାନୀଳମୁଖଂ ସ୍ତନଦ୍ୱୟଂ ।
ତିରଶ୍ଚକାର ଭ୍ରମରାଭିଲୀନୟୋଃ
ସୁଜାତୟୋଃ ପଙ୍କଜକୋଷୟୋଃ ଶ୍ରିୟଂ । (ରଘୁବଂଶ)

୧୪ । ଦରେ-କଣ୍ଠ ସହିତ; ସମକରିବା-ତୁଳିବା । ଅଖିଳ ଶୋଭନ-ସମସ୍ତ ଶୋଭାର ଆଧାର (ପ୍ରସନ୍ନବଦନ) ପ୍ରଫୁଲ୍ଲ ମୁଖ ରୂପ(ମୁକୁର) ଦର୍ପଣର (ମୁଠି) ଧରିବା ବେଣ୍ଟ କି ? ଅଥବା (ଭୁଜଯୁଗଳ ଲତା); ହାତ ରୂପ ଲତା ଦୁଇଟିର ମୂଳ

ଅତୁଳ ଅମଳ ଶ୍ୟାମଳ କମଳ ଅକ୍ଷିସଙ୍ଗେ ଲକ୍ଷି ନ ପାରି
ଅସମରୁ ଡ଼ରି ବନବାସ କରି ରହିଲେ ଖଞ୍ଜନ ଶଫରୀ ।

ଅସିତ—

ଉତ୍ପଳ କି ଗୁଣେ ଲକ୍ଷିବା,

ଅବଶ୍ୟ କଥାଏ କହି ଏହି ନ୍ୟାୟେ ହରିଣୀକି ଆଣି ଯୋଖିବା । ୧୫
ଅପାଙ୍ଗ-ତରଙ୍ଗକୁ ରଙ୍ଗ-ତରଙ୍ଗ-କୁରଙ୍ଗ ହିଁ କାହିଁ ପାଇବେ
ଅଛି ପରମ୍ପରା କର୍ଣ୍ଣପାଶ ପରି ବୋଲି ବୋଲିବା ଅବା ଏବେ

ଅଟେ ସେ

ବଦନ-ଦର୍ପଣ-କବାଟୀ

ଅବା ସେ ନଅଙ୍କ ବୋଲନ୍ତାଇ ଅଙ୍କ ଅଛି ତା କେହି ବୋଲିବାଟି । ୧୬

---

୧୫ । ଅମଳ ଶ୍ୟାମଳ କମଳ—ଦୋଷହୀନ ନୀଳପଦ୍ମକୁ । ଅସମରୁ—ସମାନ ନ ହେବାରୁ । ଖଞ୍ଜନ-କଜଳପାଖି । ଶଫରୀ-ମହୁରାଳି ମାଛ, (ଏ ଦୁହେଁ) ବନବାସ କରି—ଖଞ୍ଜନ ପକ୍ଷରେ (ବନ) ଜଙ୍ଗଲରେ ଓ ଶଫରୀ ପକ୍ଷରେ (ବନ) ଜଳରେ ଅସିତ ଉତ୍ପଳ—ସୌଗନ୍ଧିକ, ନୀଳକଇଁ । ଅବଶ୍ୟ···ଯୋଖିବା—ଲେଖିବସିଲେ ତ କିଛି ଗୋଟିଏ ଉପମା ଦେବାକୁ ପଡ଼ିବ,ତେଣୁ କର୍ତ୍ତବ୍ୟ ଅନୁରୋଧରେ 'ହରିଣୀ'କୁ ପାର୍ବତୀଙ୍କ ଚକ୍ଷୁ ସଙ୍ଗେ ସମାନ କରିବା ଯିବା; କିନ୍ତୁ ପ୍ରକୃତରେ ସେ ତଦ୍‌ଯୋଗ୍ୟ ନୁହେଁ । ୧୬ । ଅପାଙ୍ଗ ତରଙ୍ଗ—ବାରମ୍ବାର କଟାକ୍ଷ ନିକ୍ଷେପ କରିବା । ରଙ୍ଗ-ତରଙ୍ଗ-କୁରଙ୍ଗ-କ୍ରୀଡ଼ାଚଞ୍ଚଳ ମୃଗ । ପରମ୍ପରା ପୁରୁଷାନୁକ୍ରମେ ଚଳି ଆସୁଥିବା । ପାଶପରି—ଫାଶ ପରି । କବିମାନେ ପରମ୍ପରାକ୍ରମେ କର୍ଣ୍ଣକୁ ପାଶ ସଙ୍ଗେ ତୁଳନା କରିଥାନ୍ତି; ତେଣୁ ବିଧିରକ୍ଷା ପାଇଁ ତାହାହିଁ କହିଦେଉଛୁଁ ଯିବା ! ବଦନ-ଦର୍ପଣ କବାଟୀ—ମୁଖରୂପକ ଦର୍ପଣର ଘୋଡ଼ଣି । ଅଥବା ତାହାକୁ 'ନଅଙ୍କ' ୯ ବୋଲି କହନ୍ତେ, କିନ୍ତୁ ତାହା କହିବା କିପରି ? ଯେହେତୁ କଳଙ୍କବାଚକ ଅଙ୍କପଦ ତାହା ସଙ୍ଗେ ମିଶିଛି ।

ନୈଷଧ—ଅସ୍ୟା ଯଦଷ୍ଟାଦଶ ସଂବିଭଜ୍ୟ ବିଦ୍ୟାଃ ଶ୍ରୁତୀ ଦଧ୍ରତୁରର୍ଦ୍ଧମର୍ଦ୍ଧଂ
କର୍ଣ୍ଣାନ୍ତରୁତ୍କୀର୍ଣ୍ଣଗଭୀରରେଖଃ କିଂ ତସ୍ୟ ସଂଖ୍ୟୈବ ନବାନବାଙ୍କଃ । ୭।୩୬

ଅଧର ସୁରଙ୍ଗ ସଙ୍ଗେ ହେଉଁ ଯୋଗ୍ୟ ତନ୍ନୁ ଫୋଡ଼ା ହେଲେ ପ୍ରବାଳ
ଅନାଉଁ ଅନାଉଁ ଅଳ୍ପଧନେ ହେଉଅଛି ଆନବର୍ଣ୍ଣ ପ୍ରବାଳ

ଅରୁଣ

କାନ୍ତି ଏଥିରୂପେ ତେଜୁଛି,
ଅନୁରୂପ ନୋହି ପାଟଳ ବମ୍ଭ ହିଁ ଧୂସରଭାବକୁ ବହୁଛି । ୧୭
ଅଣୁମାଣ ତାର ଶୋଭା-ପଟାନ୍ତର ନୁହନ୍ତି ବଧୂଳି ମନ୍ଦାର
ଅମୃତ ଆଧାର ମଧୁରୁଁ ମଧୁର ସ୍ମିତ-କ୍ରୀଡ଼ା-ଗୃହ-ମନ୍ଦର ।

ଅମୂଲ୍ୟ

ହୀରାପରା ଚୋରା ଦଶନ
ଅପୂର୍ବ ମାଣିକ୍ୟ କୁନ୍ଦକଳୀ ପକ୍ୱ ଦାଡ଼ିମ ନୋହେ ତା ସମାନ । ୧୮
ଅଙ୍ଗୁଳି-ଯନ୍ତ୍ରଣା ଶିବଙ୍କର ଗଣ୍ଡ ନୋହେ ସେ ଗୃହ ଚିବୁକକୁ
ଅମୃତାଂଶୁ ଭୃତ କଳାକୁ ବରଷ କହଏ ବର୍ଣ୍ଣନ୍ତ ତାହାକୁ

ଅତନୁ

ତୂଣୀର ତିଳଶୁଙ୍କୁ ପ୍ରତି,
ଅପାର-ସୁଷମ-ନାସିକା ତା ସମ ବଢ଼ାଇ ସେହି ନେତ୍ରପ୍ରୀତି । ୧୯

---

୧୭ । ଅଧର ସୁରଙ୍ଗ-ଓଠର ଉତ୍ତମ ରକ୍ତ ବର୍ଣ୍ଣ । ପ୍ରବାଳ-ଯୋଗ୍ୟ । ତନ୍ନୁ ଫୋଡ଼ା—ଦେହ ଫୋଡ଼ା ହେଲା । ପ୍ରବାଳ—କଅଁଳ ପତ୍ର ଅଳ୍ପସମୟ ପରେ (ସମାନ ହୋଇ ନ ପାରିବାରୁ) ଅନ୍ୟ ରଙ୍ଗ (ଶ୍ୟାମଳ) ହେଉଛି । (ଅରୁଣ) ସୂର୍ଯ୍ୟ ମଧ୍ୟ ଅଳ୍ପକ୍ଷଣପରେ ନିଜକାନ୍ତି (ରକ୍ତକାନ୍ତି) ଛାଡୁଛି । ବମ୍ଭ—କଇଁଥକୋଳି ବା ଗୋଲୁଖିଆ ଫଳ (ଅନୁରୂପ) ରୂପର ଯୋଗ୍ୟ (ସମାନ) ନ ହୋଇ (ଧୂସରଭାବ) ପାଉଁଶିଆ ରଙ୍ଗକୁ ଧରୁଛି ।୧୮। ବଧୂଳି—ଦ୍ୱିପହରିଆ ଫୁଲ । ପଟାନ୍ତର-ଅନ୍ୟ ଉପମା । ଅମୃତ ଆଧାର-ଅମୃତର ଭାଣ୍ଡ । ମଧୁରୁ-ମହୁ ଅପେକ୍ଷା । ସ୍ମିତ-ମନ୍ଦହାସ ତାହାର କ୍ରୀଡ଼ାର ଗୃହମନ୍ଦିର—ମନୋହର କେଳିଗୃହ । ଅମୂଲ୍ୟ—ଉତ୍କୃଷ୍ଟ । ଚୋରା—ଉଜ୍ଜ୍ୱଳ । ଦଶନ—ଦନ୍ତ । କୁନ୍ଦକଳୀ—କୁନ୍ଦକଢ଼ି । ଦାଡ଼ିମ—ଡାଳିମ୍ବ ବୀଜ ।୧୯। ଅଙ୍ଗୁଳିଯନ୍ତ୍ରଣା—ଆଙ୍ଗୁଠି ଦାଗ । ଅମୃତାଂଶୁ—ଚନ୍ଦ୍ର । ଭୃତକଳା-ପୂର୍ଣ୍ଣଚନ୍ଦ୍ର ଭୃତଭାଗରୁ ଏକ ଭାଗ (ଚତୁର୍ଥୀଚନ୍ଦ୍ରାକାର) । ଅତନୁ ତୂଣୀ-କାମର ଶର ରଖିବା ଖୋଳ । ବଢ଼ାଇ ସେହି ନେତ୍ର ପ୍ରୀତି—ଆଖିର ଆନନ୍ଦ ପ୍ରଦାନ କରେ । 'ମୁଖଦର୍ପଣ ବୃନ୍ତେନାଙ୍ଗୁଳିଯନ୍ତ୍ରଣେୟା ତଥା'(ରସକଳ୍ପଦ୍ରୁମ)। ଏ ପଦରେ ଶିବଙ୍କର ଅଙ୍ଗୁଳିଯନ୍ତ୍ରଣା ବୋଲି ଯେଉଁ ଲେଖା ଅଛି, ତାହା ଆଦର୍ଶ ଲେଖକଙ୍କର ଭୁଲ ।

ଅମୃତ ଶିଖର ଶ୍ରୀମୁଖ-ସୁନ୍ଦରପଣ ଗୃହ୍ଣି ମହାଚକଟେ
ଅନୁସର ଯାଇ କ୍ଷୀଣତାକୁ ପାଇଁ ଭଜିଲ୍ ତାହାର ପୃଷ୍ଠେ ।

ଅଟନ୍ତି

ଦୟାହ୍ରଦୟ ସେ ଜନନୀ,
ଅନୁଗତ ହୋଇବାରୁ ଶିରେ ନେଇ ବହିଲେ ତା'ର ସେବା ହେଳି । ୨୦
ଅମ୍ବୁଜକୁ ଅବା କେହି ଲକ୍ଷ୍ୟ ଦେବା ହବାରେ ସିନା ସେ ରୁଚିର
ଅନଙ୍ଗ-ମୁକୁର ତାର ତ ର-ତାରତମକୁ ଗ୍ଭର ପରକାର୍

ଅଛନ୍ତି

ଏମାନଙ୍କରୁ ରୁଚିର ବା
ଅବ୍ଜ-ଭବ-ଭବେ ଉପମା ଏ ହେବେ ଏଥିର ଲକ୍ଷ୍ୟ କେହି ଦେବା । ୨୧
ଅଳକ-ଆବଳୀ-ଶୋଭା ସଙ୍ଗେ ଭଲ ଯୋଖୁଥାନ୍ତି ଶିଶୁ-ମଧୁପ
ଅର୍ଦ୍ଧଚନ୍ଦ୍ର ଭାତି ଯେ ଜାଣିଅଛନ୍ତି ଭଲେ ଯୋଖନ୍ତି ସେ କରୂପ

ଅତନୁ--

ମୁକୁର ଗାରୁଥାନ୍ତି ଗଣ୍ଡେ
ଅପୂର୍ବ-ପଣ୍ଡିତ ମଧୂକରମିତ-ଦୁ୍ୟତିକ ଲକ୍ଷ୍ୟ ଦ୍ୟନ୍ତି ତୁଣ୍ଡେ । ୨୨

---

ନୈଷଧରେ ଚିବୁକ ବର୍ଣ୍ଣନା ପ୍ରସଙ୍ଗରେ "ବିଲୋକିତାସ୍ୟା ମୁଖମୁନ୍ନମଯ୍ୟ କିଂ ବେଧ-ସେୟଂ ସୁଷମାସମାପ୍ତୌ, ଧୃତ୍ୟୁଦ୍ଭବା ଯଚ୍ଚିବୁକେ ଚକାସ୍ତି ନିମ୍ନେ ମନାଗଙ୍ଗୁଳି-ଯନ୍ତ୍ରଣେବ" ଏହି ଶ୍ଳୋକଦ୍ୱାର ଚିବୁକ-ଚିହ୍ନକୁ ବିଧାତାର ଅଙ୍ଗୁଳିଦାଗ ବୋଲି କୁହାଯାଇଅଛି । ତିଳଶୁଙ୍କୁ ପରିବର୍ତ୍ତେ ତିଳପୁଷ୍ପ ପାଠ ଠିକ୍ ବୋଲି ଜଣାଯାଏ । ୨୧ । ତାରତାରତମ-ଉତ୍କୃଷ୍ଟ ଉଜ୍ଜ୍ୱଳତାକୁ । ଅବ୍ଜଭବଭବେ-ବିଧାତାର ସଂସାରରେ । ୨୨ । ଅଳକ-ଆବଳୀ-ଚୂର୍ଣ୍ଣ କୁନ୍ତଳଗୁଡ଼ିକ (ମୁଖ ଦୁଇପାଖର ଛୋଟ ଛୋଟ କେଶ ଗୁଚ୍ଛ)। ଶିଶୁ ମଧୂପ-ଛୁଆ ଭଅଁର । ଅର୍ଦ୍ଧଚନ୍ଦ୍ର-ଅଷ୍ଟମୀ ତିଥିର ଚନ୍ଦ୍ର । ଗାରୁଥାନ୍ତି -ଲେଖୁଥାନ୍ତି, ସମାନ କରୁଥାନ୍ତି । ଗଣ୍ଡେ-ଗାଲସଙ୍ଗରେ । ଅପୂର୍ବ ପଣ୍ଡିତ-ଅପଣ୍ଡିତ ମୂର୍ଖ (ମଧୂକ) ଯଷ୍ଟିମଧୁ ପୁଷ୍ପର (ମିତ) ଅତିଅଳ୍ପ ଦୁ୍ୟତିକ (ତୁଣ୍ଡେ ଲକ୍ଷ୍ୟ ଦ୍ୟନ୍ତି) କଥାରେ କେବଳ କହୁଥାନ୍ତି । କେଶ ବର୍ଣ୍ଣନରେ କବିସମ୍ପ୍ରଦାୟ—

ତମଃ-ଶୈବାଳ-ପାଥୋଦବର୍ହି-ଭ୍ରମରବ୍ରମରୈଃ
ଯମୁନାବୀଚି-ନୀଳାଶ୍ମ-ନୀଳାମ୍ଭୋଜୈଃ ସମଃ କଚଃ
ସଦ୍ଭୂଟଃ ସୈଂହିକେୟଶ୍ଚ କୌଟିଲ୍ୟଂ ତଦ୍‌ଗୁଣଃ ସ୍ମୃତଃ ।

[ରସ କଳ୍ପଦ୍ରୁମ]

ଅତି ବନ୍ଧୁରର ଚିକ୍କଣ ଚାକୁର-ଭାର ଅଟଇ କେତେ ସୁଷମ
ଅଞ୍ଜନ ଅନ୍ଧାର ଅଳି ଅମ୍ବୁଧର ଅଂଶରେ ଅଟନ୍ତି ଅସମ ।
ଅର୍କଜା—
ତରଙ୍ଗେ ଯାକୁ ତୁଳ ନୋହି,
ଅଧୋମୁଖୀ ହୋଇ ଯାଉଛି ପଳାଇ ଏହି ଦେଖୁରୁ ଲାଜ ପାଇ । ୨୩
ଅଶ୍ମ ହେଲା ନୀଳମଣି ସେ କୁନ୍ତଳକୁଳ ଶୋଭାବଳ ଅନାଇ
ଅଦ୍ୟାପି ଶୈବାଳ ତଳେ ନୋହି ତୁଲ ଜଳରେ କେବଳ ଭାସଇ ।
ଅଟଇ
କେକିବର କେତେ ବିବେକୀ,
ଅମ୍ବାକେଶ-ଦ୍ରୋହୀ ହେବା ହେଳେ ଆଦି କୁମାର ଆଶ୍ରେ କଲାଟି କି । ୨୪
ଅନଳରେ ପୁନଃ ପୁନଃ ଅପଘନ ଦହନ କଲେ ହେଁ କାଞ୍ଚନ
ଅଙ୍ଗର ଗଉରତାରୁ ତେବେ ତା'ର ତାର ହେଲା ଅତି ନିଃଜନ
ଅପାର—
ପେଷଣ-ସ୍ନିଗ୍ଧ-ହରିତାଳ
ଅସ୍ଫୁଟ କେତକୀ ଚମ୍ପା ଗଉରୀକି କରିବା ତାହା ତୁଲେ ତୁଲ । ୨୫
ଅନନ୍ତହିଁ ଅନ୍ତ କରି ସେ ଶ୍ରୀ ଅଙ୍ଗ-ଶୋଭା ତ ବର୍ଣ୍ଣି ନ ପାରିବେ;
ଅବିବେକବର ଅଳ୍ପ ବୁଦ୍ଧି ମୋର ନର-ଜନ୍ମ ପୁଣି ଦଇବେ
ଅସ୍ପଷ୍ଟ
ହେଲେ ଏଣୁ ଧୀରେ ନ ଧର,
ଅଚଳାପତି ଭଣିବାର ନିରତେ ଶରଣେ ଅଚଳ-ସୁତାବର । ୨୬

———

୨୪ । ଅଶ୍ମ—ପଥର । କୁନ୍ତଳ—କେଶ । ଶୈବାଳ—ଶିଉଳି (ଦଳ) । କେକିବର—ମୟୂରଶ୍ରେଷ୍ଠ । ଅମ୍ବା—ମାତା (ପାର୍ବତୀ) । କେଶଦ୍ରୋହୀ—କେଶର ପ୍ରତିପକ୍ଷ । ହେଳ—ଭାବ । ଦୋଷ ଦୂର ପାଇଁ (କୁମାର) କାର୍ତ୍ତିକେୟଙ୍କୁ ଆଶ୍ରୟ କଲା । ୨୫ । ଅନଳରେ—ଅଗ୍ନିରେ । ଅପଘନ—ଦେହ । କାଞ୍ଚନ-ସୁନା । ଅଙ୍ଗ-ଗଉର...ନିଃଜନ 'ତାର' (ସୁନାର) ତେଜ ପାର୍ବତୀଙ୍କର ଦେହର ଗୌର-ବର୍ଣ୍ଣଠାରୁ ତେବେ ସୁଦ୍ଧା ରଙ୍ଗରେ କମିଗଲା । ଅପାରପେଷଣ-ଭଲକରି ଘୋଟା ହୋଇଥିବା । ସ୍ନିଗ୍ଧ—ଚିକ୍କଣ । ୨୬ । ଅନନ୍ତ—ବାସୁକି । ଅବିବେକବର—ଅବିବେକମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଅଚଳାପତି—ପୃଥ୍ୱୀପତି, ରାଜା । ନିରତେ-ସର୍ବଦା । ଅଚଳସୁତାବର—ପାର୍ବତୀଙ୍କ ସ୍ୱାମୀ, ଶିବ ।

———

# ଅଷ୍ଟାଦଶ ଛାନ୍ଦ

ରାଗ—ରସପଞ୍ଜକର ସଂକାର ବୋଲି ବୃତ୍ତେ

ଅପୂର୍ବ ରସ, ଶୁଣ ବଦୁଷ
 ଅନ୍ୟେ ନ ପାଇବ ଅନ୍ତକ କ୍ଳେଶ । ୧
ଅମ୍ବିକା ବାଳୀ ଶୋଭାରେ ଝଳି
 ଅଭିମନର ସେ ବନ୍ଦୀଶାଙ୍କୁଳୀ । ୨
ଅମ୍ବା ପିତାର ଚନ୍ତା ଅପାର
 ଅନୁରୂପେ ସେ ଲୋଡ଼ନ୍ତି ବର । ୩
ଅନେକ ଦୂରେ ଖୋଜିଲେ ଚରେ
 ଅମରପୁର ନରନାଗପୁରେ । ୪
ଅଂଶକେ ସର କୁମ ସ୍ୱ ପର
 ଅଭିରାମ ପାତ ନାହିଁ କି ପୁଣ । ୫
ଅଇଲେ ଦୂତେ ବମନମତେ
 ଅତ ଚନ୍ତା ହେଲା ଅବ୍ଧୀଶ-ଚତ୍ତେ । ୬
ଅମୃତରସ ଦେବଙ୍କ ଗ୍ରାସ
 ଅନ୍ୟ ଜାଣେ କ ତା ଭୋଗ ବିଳାସ । ୭
ଅମ୍ବୁଜାସନା ଅଚ୍ୟୁତେ ମାନ
 ଅମରବରଙ୍କୁ ଶଚୀ କାମିନୀ । ୮

---

**ଅଷ୍ଟାଦଶ ଛାନ୍ଦ**

୧ । ବଦୁଷ-ପଣ୍ଡିତ । ଅନ୍ତକକ୍ଳେଶ—ଯମଦଣ୍ଡ ।୨। ବନ୍ଦୀଶାଙ୍କୁଳୀ – ବାନ୍ଧବାର ବେଡ଼ (ଜଞ୍ଜିର) ।୩। ଅମ୍ବା—ମାତା ; ଅନୁରୂପ-ଯୋଗ୍ୟ । ୪। ଚର—ଦୂତ ।୫। ଅଭିରାମ—ସୁନ୍ଦର । ୬। ବମନମତେ—ଦୁଃଖିତ ମନରେ । ଅବ୍ଧୀଶ—ହିମାଳୟ । ୭ । ଅମୃତରୂପକ ରସ । ଗ୍ରାସ-ଆହାର । ଦେବତାଙ୍କ ବ୍ୟତୀତ ଅମୃତକୁ ଯେପରି ଅପର କେହି ଭୋଗ କରି ନ ପାରେ । ୮ । ଅମ୍ବୁଜାସନା—ଲକ୍ଷ୍ମୀ (ଅମ୍ବୁଜାସନା) ଅଚ୍ୟୁତ—ନାରାୟଣ, ବିଷ୍ଣୁ । ଅମରବର—ଇନ୍ଦ୍ର । ଶିବ (ଶକ୍ତି) ପାର୍ବତୀ ଏ ଦୁହେଁ ଏକ । ଅତଏବ ସ୍ୱୟମ୍ବର ନ କରାଇ ।

ଅଛି ପୁରାଣ ବେଦ-ପ୍ରମାଣ;
ଅଭିନ୍ନ ଶିବଙ୍କୁ ବେନି ଜଣ । ୯
ଅତଃକାରଣେ ସକଳ ଗୁଣେ,
ଅମ୍ବିକା-ଯୋଗ୍ୟ ନୃହଇ ବରଣେ । ୧୦
ଅନୁସନ୍ଧାନ କର ଈଶାନ,
ଅନ୍ତକେ ପେଷିଲେ ସେ ଶିଷ୍ଟ ଜନ । ୧୧
ଅନ୍ଧକ-ଘାତ୍ରି ଲେଖି ସମ୍ମତ;
ଅଦ୍ରୀଶଠାକୁ ପେଷିଦେଲେ ପତ୍ରୀ । ୧୨
ଅନ୍ୟୋନ୍ୟେ ଶୁଭ ଜାତକ ସର୍ବ
ଅଷ୍ଟବିମେଳକ ମେଳେ ଅପୂର୍ବ । ୧୩
ଅଂଶ ମହତ କୁଳାଦି ଗୋତ୍ର
ଅନୁରୂପ ଗୁଣଗ୍ରାମ ସମସ୍ତ । ୧୪
ଅଥ ସୌନ୍ଦର୍ଯ୍ୟ ଐଶ୍ୱର୍ଯ୍ୟ ଧୈର୍ଯ୍ୟ
ଅଚ୍ଛ ବିବେକତା ସ୍ୱଭୂର୍ଯ୍ୟ ଶୌର୍ଯ୍ୟ । ୧୫
ଅବ୍ଜସମ୍ଭବ ଇତ୍ୟାଦି ସର୍ବ
ଅବକଳ ସମ କରନ୍ତି ସର୍ବ । ୧୬
ଅଛି ପ୍ରଶସ୍ତେ ବିବାହକୃତ୍ୟ
ଅଙ୍ଗନା-ରାଶିକ ଗଣନା ଯେତେ । ୧୭
ଅର୍କ ଗୀଷ୍ପତି, ଶୁଦ୍ଧତା ଚନ୍ଦ୍ର
ଅନୁସନ୍ଧାନେ କଲେ ବିଧାତୃ । ୧୮

---

୧୧ । ଅନୁସନ୍ଧାନ କର···ଈଶାନ—ମହାଦେବଙ୍କ । ଅନ୍ତକକୁ—ନୀଳକଣ୍ଠକୁ । ଶିଷ୍ଟଜନ—ଅଙ୍ଗିରା ପ୍ରଭୃତି ଋଷିଙ୍କୁ । ୧୨ । ପତ୍ରୀ—ଚିଠି । ଅନ୍ଧକଘାତ୍ରି-ଶିବ । ୧୩ । ଅଷ୍ଟବିମେଳକ—ଦଶମେଳକ । ୧୪ । ଗୁଣଗ୍ରାମ—ଗୁଣସମୂହ । ୧୫ । ଐଶ୍ୱର୍ଯ୍ୟ-ପ୍ରଭୁତା । ଅଚ୍ଛବିବେକତା-ନିର୍ମଳ ବିବେଚନା ଶକ୍ତି ।୧୬। ଅବ୍ଜସମ୍ଭବ -ବ୍ରହ୍ମା ।୧୭। କନ୍ୟା ରାଶିକ ଯେତେ ପ୍ରକାର ଗଣନା ଉତ୍କୃଷ୍ଟ, ସେ ସମସ୍ତ ଅଛି ।

ଅଜ ଶେଷରେ ବୃଷମାସରେ
ଅର୍ଜ୍ଜୁନପକ୍ଷ ଗୁରୁ-ପଞ୍ଚମୀରେ । ୧୯
ଅଚ୍ୟୁତ ଦେବ ବ୍ରହ୍ମା ବାସବ
ଅତୁଲ୍ୟ ଏହି ତିଥିକଲେ ଠାବ । ୨୦
ଅନୁସମ୍ମତେ ସେ ପୁରୋହିତେ
ଅଇଲେ ଲଗ୍ନ-ନିର୍ଣ୍ଣୟ ନିମନ୍ତେ । ୨୧
ଅଦ୍ରି ଈଶ୍ୱର ବିଭ୍ର-ସମ୍ଭାର
ଅର୍ଥେ ଅର୍ଜନ୍ତି ଅତି ସତ୍ୱର । ୨୨
ଅତି ଅପୂର୍ବ, ଅମୂଲ୍ୟ ଦ୍ରବ୍ୟ
ଅଷ୍ଟରତ୍ନ ଶିଷ୍ଟବାସାଦି ସର୍ବ । ୨୩
ଅନିର୍ବଚନ ଅସଂଖ୍ୟ ଧନ
ଅକଳନ୍ତା ନାନା ସାମଗ୍ରୀମାନ । ୨୪
ଅପାର ଦୂର ପଠାଇ ଚର
ଅଣାଇ ପରିପୂର୍ଣ୍ଣ କଲେ ପୁର । ୨୫
ଅମୃତ ଦ୍ୟୁତି ଅଦ୍ରି-ଦୁହିତା
ଅର୍ଦ୍ଧମଣ୍ଡନ ଉଞ୍ଜୀବିନ ଗତି । ୨୬

---

୧୮। ଅର୍କ-ସୂର୍ଯ୍ୟ । ଗୀଷ୍ପତି-ବୃହସ୍ପତି । ବିବାହରେ ସୂର୍ଯ୍ୟ ଓ ବୃହସ୍ପତିଙ୍କର ଶୁଦ୍ଧି ବେଶୀ ପ୍ରୟୋଜନୀୟ । ଦେଶପ୍ରଚଳିତ 'ରବିଶୁଦ୍ଧି, ଗୁରୁଶୁଦ୍ଧି'. । ୧୯ । ଅଜ—ମେଷ । ଏଠାରେ ବୈଶାଖ । ବୃଷ ମାସ—ଜ୍ୟେଷ୍ଠ ମାସ । ଅର୍ଜୁନ ପକ୍ଷ—ଶୁକ୍ଳପକ୍ଷ । ୨୦ । ଅଚ୍ୟୁତ—ବିଷ୍ଣୁ । ବାସବ—ଇନ୍ଦ୍ର ।

୨୧ । ଅନୁସମ୍ମତେ—ଅନୁମତି ପାଇ । ୨୪ । ଅନିର୍ବଚନ—ଯାହା ନିରୂପଣ କରି ନ ହେବ । ୨୬ । ଅମୃତଦ୍ୟୁତି—ଚନ୍ଦ୍ର । ଅଦ୍ରିଦୁହିତା—ପାର୍ବତୀ । ଅର୍ଦ୍ଧଚନ୍ଦ୍ର-ଯାହାଙ୍କର ମଣ୍ଡନ ଓ ପାର୍ବତୀ ଯାହାଙ୍କ ଅର୍ଦ୍ଧାଙ୍ଗରେ ମଣ୍ଡନ । ଗତି—ଶରଣ ।



# ଊନବିଂଶ ଛାନ୍ଦ

## କାଶୀ—ବର୍ଣ୍ଣନା

ବାଗ—ଗୁର୍ଜରୀ

ଅକାଳ-କାଳ-ହାରକ　　　ଅତ୍ୟନ୍ତ ସୁଖକାରକ—
ତରତ ଗୁଣଧାରକ କର ଶ୍ରବଣ
ଅମରାବତୀ-କଟକ—　　　ଟେକ କରିଛୁ ଅଟକ
ରଚି ଯାହା କୁଘଟକ ହେଲା ଦ୍ରୁହିଣ ।
ଅମର-ସରିତ-ନିକଟେ
ଅଛୁ ଯେ ନଗରେ ନାମ କାଶୀ ପ୍ରକଟେ । ୧
ଅଧଃପୁର ମହୀପୁରେ　　　ସୁରସୁର ଯକ୍ଷପୁରେ
ରବି-ଚନ୍ଦ୍ର-ତାରାଲୋକ-ଧ୍ରୁବଲୋକରେ
ଅନୁପମ ଅଟେ ସେହି　　　ବଚନ ଚର୍ଚ୍ଚିବ ନାହିଁ
ତାକୁ ଉପମା ଘଟାଇ ନିତ୍ୟ ଲୋକରେ ।
ଅନୁରୂପ ବୁଦ୍ଧିରେ ମୋର
ଅଣୁମାତ୍ରେ କରୁଛୁ ବର୍ଣ୍ଣନା ତାହାର । ୨

---

### ଊନବିଂଶ ଛାନ୍ଦ

୧ । ଅକାଳକାଳହାରକ—ଅସମୟ ମରଣଦୂରକାରୀ । ଗୁଣଧାରକ—ଗୁଣୀ ଲୋକ, ବିଦ୍ୱାନ୍ । ଅମରାବତୀ କଟକ--ସ୍ୱର୍ଗ ନଗର । ଟେକ--ଗୌରବ । ଅଟକ କରିଛୁ—ବନ୍ଦ କରିଦେଇଛୁ । ଏହି କାଶୀପୁର ନିର୍ମିତ ନ ହେବାଯାଏ ଅମରାବତୀର ଗୌରବ ଥିଲା । ତତ୍ପରେ ତାହାକୁ କେହି ପସନ୍ଦ କଲେ ନାହିଁ । ଯାହାକୁ ରଚନା କରି ଦ୍ରୁହିଣ—ବ୍ରହ୍ମା, (କୁ-ଘଟକ) ପୃଥିବୀର ନିର୍ମାତା ବୋଲି ନାମ ପାଇଲେ । ଅମରସରିତ—ଗଙ୍ଗା ନିକଟେ ନଗରେ—ଗୋଟିଏ ନଗର ଅଛୁ । ଯାହାର ନାମ କାଶୀ ବୋଲି (ପ୍ରକଟ) ବିଖ୍ୟାତ ହୋଇଛୁ ।୨। ଅଧଃପୁର-ପାତାଳ । ମହୀପୁରେ—ମର୍ତ୍ତ୍ୟରେ । ସୁରସୁରଯକ୍ଷପୁରରେ, ସୂର୍ଯ୍ୟଲୋକ, ଚନ୍ଦ୍ରଲୋକ, ତାରାଲୋକ ଓ ଧ୍ରୁବଲୋକ ପ୍ରଭୃତିରେ ଏ ନଗରୀ (ଅନୁପମ) ଅତୁଳନୀୟ ଅଟେ । (ନିତ୍ୟଲୋକ) ବୈକୁଣ୍ଠରେ ମଧ୍ୟ ତାହାକୁ ଉପମା ଦେବା ଭଲ କଥା ନାହିଁ । ଅନୁରୂପ ବୁଦ୍ଧିରେ-ବୁଦ୍ଧି ଅନୁସାରେ । ଅଣୁମାତ୍ରେ—ସଂକ୍ଷେପରେ (ଟିକିଏ ମାତ୍ର) ।

ଅମୂଲ୍ୟତର ଅଗାର    ତୁଲେ ଗାରିବାକୁ ଗାର
ନାହିଁ ତ ତିନି ଏଗାର ଭୁବନେ କେହି
ଅଛି ଦୋପରସ୍ତି ପୁରୀ—    ଠାରୁ ସାତପୁରୀ ସରି—
ଯନ୍ତ୍ରେ, ତା ପରି ତ୍ରିପୁରୀ ଭିତରେ କାହିଁ ।
ଅତି ଉଣା ଯେଉଁ ମନ୍ଦିର
ଅମର ଅଧିପର ସେ ଅମୂଲ୍ୟତର । ୩

[ ଶ୍ଳେଷରେ ନବଗ୍ରହ ସାମ୍ୟ ]

ଅର୍କବତ ସୁପ୍ରଭର    ପଦ୍ମାନନ୍ଦବୃଦ୍ଧିକର
ଉଦୟ-ଅଚଳ-କର-ରତନ-କର

---

୩ । ସେହି କାଶୀପୁରୀ (ଅମୂଲ୍ୟତର) ଅତି ଅମୂଲ୍ୟ । ଅଗାର ତୁଲ—ଗୃହ ସଙ୍ଗେରେ । ଗାର ଗାରିବାକୁ—ସମାନ କରିବାକୁ । ତିନି ଏଗାର ଭୁବନେ—ଚଉଦ ବ୍ରହ୍ମାଣ୍ଡରେ । ଦୋପରସ୍ତି—ଦ୍ୱିତଳ; ସାତପରସ୍ତି—ସପ୍ତତଳ; ତ୍ରିପୁରୀ—ତିନିଲୋକ । ମନ୍ଦିର—ଘର । ଅତି ଉଚ୍ଚ—ଅତି ଶ୍ରେଷ୍ଠ । ଅମର ଅଧିପ—ଇନ୍ଦ୍ର । ଅମୂଲ୍ୟତର—ଅତି ଉତ୍କୃଷ୍ଟ । ୪ । ସେହି କାଶୀ ପୁରୀର କୌଣସି ଗୃହ (ଅର୍କବତ) ସୂର୍ଯ୍ୟଙ୍କ ପରି ହୋଇଛି (ଶ୍ଳେଷଦ୍ୱାରା) ତାହା ଦେଖାଉଅଛନ୍ତି । ସୁପ୍ରଭର—ଅତି ଉଜ୍ଜ୍ୱଳ । ସୂର୍ଯ୍ୟ ଓ ଗୃହ ପକ୍ଷେ ସମାନ । ପଦ୍ମାନନ୍ଦବୃଦ୍ଧିକର—(ସୂର୍ଯ୍ୟପକ୍ଷେ) ପଦ୍ମଗଣର ଆନନ୍ଦବର୍ଦ୍ଧକ (ଗୃହପକ୍ଷେ) ପଦ୍ମା—ଲକ୍ଷ୍ମୀ ଓ ଆନନ୍ଦର ବର୍ଦ୍ଧକ । (ଶୁଭଯୋଗରେ ନିର୍ମିତ ଗୃହ ଲକ୍ଷ୍ମୀ ତଥା ଆନନ୍ଦ ବୃଦ୍ଧି କରିଥାଏ) ଉଦୟ ଅଚଳକର ରତନକର (ସୂର୍ଯ୍ୟପକ୍ଷେ) ଉଦୟ ପର୍ବତରେ ଯାହାଙ୍କର କିରଣରୂପ ଶ୍ରେଷ୍ଠ ରତ୍ନମାନେ ଦେଖାଯାନ୍ତି (ସୂର୍ଯ୍ୟକିରଣକୁ ନାନା ରଙ୍ଗ ବିଶିଷ୍ଟ ରତ୍ନ ସଙ୍ଗେ ତୁଳନା କରାଯାଇଅଛି) ଗୃହପକ୍ଷେ (ଉଦୟ) ଉନ୍ନତିକୁ (ଅଚଳ) ସ୍ଥିର କରନ୍ତି, ଯେଉଁ ଶ୍ରେଷ୍ଠ ରତ୍ନମାନ ସେମାନେ ଯେଉଁଠାରେ ଅଛନ୍ତି । ଗୃହସବୁ ନାନା ଉନ୍ନତିଦାୟକ ଶ୍ରେଷ୍ଠ ରତ୍ନମାନଙ୍କରେ ଖଚିତ । ଅମୃତ-ଆଧାର ସମ—ଚନ୍ଦ୍ରପରି । କେଉଁ (ସଦନ) ଗୃହ (ସୁଷମ) ସୁନ୍ଦର । ସୁଧାମୟ—ଚନ୍ଦ୍ର ପକ୍ଷରେ ଅମୃତମୟ, ଗୃହ ପକ୍ଷରେ—ଚୂର୍ଣ୍ଣଲିପ୍ତ । ତାରବୃନ୍ଦ ଆନନ୍ଦକର—ଚନ୍ଦ୍ର ପକ୍ଷରେ ତାରାମାନଙ୍କର ଆନନ୍ଦଦାୟକ, ଗୃହ ପକ୍ଷରେ—ଲୋଚନ ତାରାର ଆନନ୍ଦ ଦାୟକ । ଅଙ୍ଗାରକ—ମଙ୍ଗଳ । ଅନନ୍ତା—ପୃଥିବୀ । ମଙ୍ଗଳ ପୃଥିବୀର ପୁତ୍ର ଥିବାରୁ ତାହାର ଆନନ୍ଦଦାୟୀ । ଗୃହପକ୍ଷେ—ଅପରିମିତ ଆନନ୍ଦ ଦାୟକ । ରଙ୍ଗବାସେ ରୁଚିର (ମଙ୍ଗଳ ପକ୍ଷେ) ରକ୍ତବର୍ଣ୍ଣ ଲୁଗାରେ ସୁନ୍ଦର

ଅମୃତ ଆଧାର ସମ	ଯେଉଁ ମଦନ ସୁଷମ
ସୁଧାମୟ ତାରବୃନ୍ଦ-ଆନନ୍ଦକର ।
ଅଙ୍ଗାରକ ପରି ଯେ ସୁରୂ
ଅନନ୍ତାନନ୍ଦ-ଭଙ୍ଗବାସେ ରୁଚିର । ୪

ଅତି ସୁନ୍ଦର-ବିଗ୍ରହ	ଦୃଷ୍ଟିପାତେ ସୁଖବ୍ୟୂହ
ଦେବାରୁ କେବଣ ଗୃହ ବୁଧ ପ୍ରକାର
ଅମରଗୁରୁ ସମାନ	ଜାତ କରେ ସୁଖମାନ
ଅପୂର୍ବ ସୁରକ୍ଷଣଦ ଭୃଗୁ-କୁମର ।
ଅର୍କି ମନ୍ଦଗତି ବିହାରେ
ଅଙ୍ଗହୀନ ବିସୁଖଦ ତମଃ ପ୍ରକାରେ । ୫

ଅବ୍ଧି ପରି ଯେଉଁ ପୁରୀ	ସୁରତରଙ୍ଗିଣୀ ବାରି
ଉଜ୍ଜ୍ୱଳ ରସରେ ମିଳି କରନ୍ତି କେଳି
ଅନନ୍ତ କ ସେ ଅଶେଷ	କାନ୍ତିଧର ରାଜହଂସ
ଗତି-ବିହାରରୁ ଶୋଭା ବଶୁଛି ବଳି
ଅଚଳ ସେ ସ୍ୱର୍ଣ୍ଣ-ଶିଳରେ
ଅଚଳା ପରାଏ ଶୋଭା ଉସକୁଳରେ । ୬

---

ଗୃହପକ୍ଷେ—(ରଙ୍ଗ) ଶ୍ୱେତ, ରକ୍ତ, ପୀତାଦି ନାନା ରଙ୍ଗ ଓ (ବାସ) ସୁଗନ୍ଧ ପ୍ରଭୃତିରେ ସୁନ୍ଦର ।୪। ଅତି ସୁନ୍ଦର ବିଗ୍ରହ-ସୁନ୍ଦର ଶରୀର । ଦୃଷ୍ଟିପାତେ-ଦେଖିଲା କ୍ଷଣି (ସୁଖବ୍ୟୂହ) ସୁଖସମୂହ ଦେବାହେତୁ କୌଣସି ଗୃହ ବୁଧଙ୍କ ପରି ଅଟେ । ବୁଧଙ୍କ ଶରୀର ସୁନ୍ଦର ଏବଂ ତାଙ୍କ ଦୃଷ୍ଟି ପଡ଼ିଲେ ଲୋକ ଶୁଭଫଳ ଲାଭକରିବା ଜ୍ୟୋତିଷପ୍ରସିଦ୍ଧ । ଅମରଗୁରୁ—ବୃହସ୍ପତି । ସମାନ-ପରି । ସୁଖମାନ-ସୁଖସମୂହ । ବୃହସ୍ପତି ସୁଖ ଓ ମାନ (ସମ୍ମାନ) ଉଭୟ ଜାତ କରନ୍ତି । କେଉଁ ଗୃହ (ଭୃଗୁକୁମର) ଶୁକ୍ରଙ୍କ ପରି ଅପୂର୍ବ ସୁରକ୍ଷଣଦ । ଅପୂର୍ବସୁର—ଅସୁର । କ୍ଷଣ—ଉତ୍ସବ । ଅପୂର୍ବସୁରକ୍ଷଣଦ—ଅସୁରମାନଙ୍କ ଆନନ୍ଦଦାୟୀ । ଗୃହପକ୍ଷେ-ଅପୂର୍ବ ଅଭିନବ (ସୁ-ରକ୍ଷଣଦ) ଉତ୍ତମ ବାସୋପଯୋଗୀ । ଅର୍କି-ଶନି । ବିହାରେ-ଭ୍ରମଣ ବିଷୟରେ । ମନ୍ଦଗତି—ଧୀରଗତି । ଜ୍ୟୋତିଷଶାସ୍ତ୍ରମତେ ଶନି ଖଞ୍ଜ ହୋଇ-ଥିବାରୁ ତାଙ୍କର ଗତି ଧୀର । ଶନିଙ୍କର ଏକ ନାମ 'ମନ୍ଦ' । ଗୃହପକ୍ଷେ-(ବିହାରେ) କ୍ରୀଡ଼ାକାଳରେ । ଯେଉଁଠାରେ ଲୋକମାନେ(ମନ୍ଦଗତି)ଧୀରେ ଧୀରେ ଚାଲନ୍ତି । ତମଃ ପ୍ରକାରେ-ରାହୁପରି । ରାହୁ ଅଙ୍ଗହୀନ(ବିସୁଖଦ)ଦୁଃଖଦାୟକ ପାପଗ୍ରହ । ଗୃହପକ୍ଷେ (ଅଙ୍ଗହୀନ)କନ୍ଦର୍ପ, ତଜ୍ଜନିତ ବିଶେଷ ସୁଖ ଦାନକାରୀ ।୫। ପୁରୀ-ଗୃହ । ଅବ୍ଧି-ସମୁଦ୍ର । ସୁରତରଙ୍ଗିଣୀ--ଗଙ୍ଗା । ଉଜ୍ଜ୍ୱଳ ରସରେ-ନିର୍ମଳ ଜଳ ସହିତ ମିଳି,

ଅଚ୍ୟୁତ ଚନ୍ଦ୍ରଶେଖର ରଚନା ପରି ସେ ପୁର
ପ୍ରତେ ହୋଏ ଶ୍ରୀନିବାସ ହୋଇଥିବାରୁ
ଅଟେ ସେ ଅବା ଚଡ଼ିତ ଅଙ୍କଧୃତ କୃଷ୍ଣଗାଢ଼
ରୁଚିରଘନ ଶୋଭା ପ୍ରକାଶତାରୁ ।
ଅଭିରାମ ବାସରେ ହୋଇ
ଅର୍କ ଅବ୍‌ଜ-ପୃଷ୍ଠ ଚନ୍ଦ୍ରାତପ ପରାଇ । ୭

---

କେଳି (କ୍ରୀଡ଼ା)କରେ । ସୁରତରଙ୍ଗିଣୀ--କାମକୁତୂହଳୀ, ରତିପ୍ରବୀଣା । (ବାଳୀ) ସ୍ତ୍ରୀମାନେ (ଉଜ୍ଜ୍ୱଳ ରସ) ଶୃଙ୍ଗାର ରସରେ (ମିଳି) ଯୁକ୍ତା ହୋଇ କ୍ରୀଡ଼ା କରନ୍ତି । ଅନନ୍ତ—ଆକାଶ । ଆକାଶ (ଅଶେଷ କାନ୍ତିଧର) ଅକଥନୀୟ ଶୋଭାକୁ ଧାରଣ କରିଥିବା (ରଜା) ଚନ୍ଦ୍ର (ହଂସ) ସୂର୍ଯ୍ୟଙ୍କ (ଗତିବିହାରରୁ) ଭ୍ରମଣ ହେତୁ (ବଳି) ଅଧିକ ଭାବେ ଶୋଭା ଦିଶୁଛି । ଏ ନଗରୀ ଅକଥନୀୟ ଶୋଭାଧାରିଣୀ ରାଜହଂସପରି ଗତିବିଶିଷ୍ଟା ସ୍ତ୍ରୀମାନଙ୍କ ବିହାରଦ୍ୱାରା ଶୋଭା ଦିଶୁଛି । ଅଥବା ରାଜହଂସ ପକ୍ଷୀମାନଙ୍କ ଗତିଦ୍ୱାରା (ଅଚଳା) ପର୍ବତରେ (ରୁଚିଶିଳ)ଶିଳାରେ ରୁଚି ବା ସୁନ୍ଦର । ନଗରର ଗୃହମାନ(ଶିଳା)ନାନା ପ୍ରକାର ପ୍ରସ୍ତରରେ ନିର୍ମିତ ହୋଇ(ରୁଚି)ସୁନ୍ଦର ଦିଶୁଛି । (ଅଚଳା) ପୃଥିବୀ ଯେପରି(ରସକୁଳରେ) ଜଳସମୂହରେ ଶୋଭା ପାଏ, ସେହିପରି (ରସକୁଳ) ଧାତୁନିର୍ମିତ ଗୃହମାନଙ୍କରେ ଶୋଭପାଉଛି । ୬ । ଅଚ୍ୟୁତ—ବିଷ୍ଣୁ । ଚନ୍ଦ୍ରଶେଖର—ମହାଦେବ । ଏ ଦୁହିଁଙ୍କର (ରଚନା) ନିର୍ମାଣ ପରି ଏ ପୁର (କାଶୀ ନଗର) ହୋଇଛି । (ଅଚ୍ୟୁତ) ଶ୍ରୀନିବାସ ବା ଲକ୍ଷ୍ମୀଙ୍କର ଆଶ୍ରୟସ୍ଥଳ । ଲକ୍ଷ୍ମୀ ବିଷ୍ଣୁଙ୍କ ବକ୍ଷରେ ବାସ କରୁଥିବା କଥା ପୁର୍ବପ୍ରସିଦ୍ଧ । (ଚନ୍ଦ୍ରଶେଖର) (ଶ୍ରୀ) ଗୌରୀନିବାସ ଓ ତାଙ୍କର ଅପର ଏକ ନାମ ଶ୍ରୀକଣ୍ଠ । ଏ ପୁର (ଶ୍ରୀ) ଶୋଭା ଓ ସମ୍ପତ୍ତିର (ନିବାସ) ଆଶ୍ରୟସ୍ଥଳ ଅଟେ । ତେଣୁ ଏ ଉଭୟ-ଶିବ ଓ ବିଷ୍ଣୁଙ୍କ ସଦୃଶ । ଚଡ଼ିତ ପକ୍ଷେ-- ଅଙ୍କଧୃତ—ଚନ୍ଦ୍ରଙ୍କର କଳଙ୍କଦ୍ୱାରା ଧୃତ ହୋଇଥିବା; (କୃଷ୍ଣ ଗାଢ଼) କୃଷ୍ଣବର୍ଣ୍ଣ ଶରୀର, ତଦ୍‌ବତ୍ (ରୁଚିର) ସୁନ୍ଦର ଘନ—ମେଘ, ତାହାର ଶୋଭା—ସୌନ୍ଦର୍ଯ୍ୟର ପ୍ରକାଶ ହେତୁ । ଅର୍ଥାତ୍ ଚନ୍ଦ୍ରଙ୍କର କଳଙ୍କ ପରି କୃଷ୍ଣବର୍ଣ୍ଣ ସୁନ୍ଦର ମେଘର ଶୋଭାକୁ ପରିବର୍ଦ୍ଧିତ କରୁଥିବାରୁ । ନଗରପକ୍ଷେ— ଅଙ୍କରେ—କୋଡ଼ରେ (ଶରୀରରେ) ଧୃତ – ଧୃତ, କୃଷ୍ଣ—ଆକର୍ଷଣକାରୀ । ଗାଢ଼ର — ଶରୀରର । ରୁଚିର—ଅତି ସୁନ୍ଦର ଓ ଘନ ପ୍ରଚୁର । ଶୋଭା— ସୌନ୍ଦର୍ଯ୍ୟର ପ୍ରକାଶ ହେତୁ । ଅର୍କ—ସୂର୍ଯ୍ୟ । ଅବ୍‌ଜପୃଷ୍ଠ—ପଦ୍ମ । ଚନ୍ଦ୍ରାତପ- ଚାନ୍ଦୁଆ । ପରାଇ—ପ୍ରାପ୍ତ । ଅଭିରାମ—ସୁନ୍ଦର । ବାସରେ (ଅର୍କପକ୍ଷେ)— ଦିବସରେ । (ଅବ୍‌ଜ ପକ୍ଷେ) ବାଃ (ବାର୍) ସରେ—ଜଳମୟ ପୁଷ୍କରିଣୀରେ (ଚନ୍ଦ୍ରାତପ ପକ୍ଷେ)—ବାସରେ—ଲୁଗାହାରା ।

ଅନ୍ଧକାର ଅଧିକାର ନାହିଁ ଯହିଁରେ ପ୍ରକାର—
ପରିନଦ୍ଧ ମଣିଗଣ-ପରିଚିତରେ
ଅନବଚ୍ଛିନ୍ନ ଆଲୋକ ଆଲୋକନରୁ ସେ ଲୋକ
ନ ଜାଣନ୍ତି ସିତାସିତ ପକ୍ଷ-ସନ୍ଧିରେ ।
ଅର୍କ ଉଦୟାସ୍ତ ଅନାଇଁ
ଅହର୍ନିଶି ପରିମାଣ ଜାଣନ୍ତି ଯାହିଁ । ୮
ଅଧନ ହୋଇ ନିସ୍ପୃହୀ କେବଳ ଅଛନ୍ତି ଯହିଁ
ଅଛି ଚଳଦଳ ତହିଁ ଚଞ୍ଚଳ ହୋଇ
ଅକ୍ଷିହୀନ କରି ପକ୍ଷୀ ଶିଶୁ ସମୟରେ ଦେଖି
ପକ୍ଷହୀନ ଥିବା ହୋଇ ସେକାଳେ ସେହି ।
ଅଛି ବାଦ ଶାସ୍ତ୍ରବାଦେ
ଅଧୁର୍ଯ୍ୟ ପରଦୋଷ କଥନ ବାଦେ । ୯

---

୮ । ଯହିଁରେ—ଯେଉଁ କାଶୀ ନଗରରେ । ପ୍ରକାର— ପ୍ରାଚୀର ବା ପାଚିରି । ପରିନଦ୍ଧ—ଖଚିତ । ମଣିଗଣପରିଚିତରେ—ମଣିସମୂହରେ ଯୁକ୍ତ ହୋଇଥିବାରୁ ସେଠାରେ ଅନ୍ଧକାରର ପ୍ରବେଶାଧିକାର ନାହିଁ । ଅନବଚ୍ଛିନ୍ନ-ନିରନ୍ତର । ଆଲୋକ ଆଲୋକନରୁ-ଆଲୋକ ଦେଖୁଥିବାରୁ । (ସିତାସିତ ପକ୍ଷରେ) ଶୁକ୍ଳ ଓ କୃଷ୍ଣପକ୍ଷରେ (ସନ୍ଧି) ସନ୍ଧି ବିଷୟରେ ଜାଣନ୍ତି ନାହିଁ । ସବୁବେଳେ ଆଲୋକ ପାଉଥିବାରୁ ଶୁକ୍ଳ ଓ କୃଷ୍ଣ ପକ୍ଷର ଭେଦ ସେମାନେ ଜାଣନ୍ତି ନାହିଁ । ସୂର୍ଯ୍ୟଙ୍କ ଉଦୟ ଓ ଅସ୍ତରେ ଦିନ-ରାତିର ପରିମାଣ ନିର୍ଣ୍ଣୟ କରନ୍ତି ଅର୍ଥାତ୍ ଆକାଶରେ ସୂର୍ଯ୍ୟଙ୍କୁ ଦେଖିଲେ ଦିନ ଓ ନ ଦେଖିଲେ ରାତି ହେଲା ବୋଲି ଜାଣନ୍ତି, ନଚେତ୍ ସର୍ବଦା ସେ ପୁରୀ ଆଲୋକିତ ।

୯ । ଯେଉଁ କାଶୀରେ କେବଳ (ନିସ୍ପୃହ) ବା ବୈରାଗୀ, ଯେଉଁମାନେ (ଧନ) ଇଚ୍ଛାବିରହିତ, ସେମାନେ ହିଁ (ଅଧନ) ଧନହୀନ ହୋଇ ରହିଅଛନ୍ତି । କେବଳ (ଚଳଦଳ) ଅଶ୍ୱତ୍ଥପତ୍ର ସେଠାରେ (ଚଞ୍ଚଳ) ଅସ୍ଥିର ଅଟେ, ଅର୍ଥାତ୍ ଅପର କୌଣସି ଲୋକ ଚପଳତାଦୋଷଦୁଷ୍ଟ ନୁହନ୍ତି । ସେଠାରେ (ଶିଶୁସମୟରେ) ପିଲାବେଳେ ପକ୍ଷୀମାନେ ହିଁ (ଅକ୍ଷିହୀନ) ଚକ୍ଷୁହୀନରୂପେ ଦେଖାଯାନ୍ତି । ଅନ୍ୟ କେହି ଅନ୍ଧ ହୋଇ ନାହିଁ । ପୁଣି ସେତେବେଳେ ସେହି ପକ୍ଷିଶାବକମାନେ (ପକ୍ଷହୀନ) ଡେଣାଶୂନ୍ୟ ହୋଇଥାନ୍ତି; କିନ୍ତୁ ଅନ୍ୟ କେହି (ପକ୍ଷହୀନ) ସହାୟଶୂନ୍ୟ ହୋଇ ନ ଥାନ୍ତି । (ବାଦ) କଳିବା ଶବ୍ଦଟା କେବଳ (ଶାସ୍ତ୍ର ବିବାଦ କାଳରେ) ଶାସ୍ତ୍ର-ଆଲୋଚନା ବେଳେ ଥାଏ, କିନ୍ତୁ ଜମିବାଡ଼ି ବା ଟଙ୍କା କଉଡ଼ି ଯୋଗୁ ବାଦ ନାହିଁ । କେବଳ ପରଦୋଷ କହିବା ବିଷୟରେ ସମସ୍ତଙ୍କର ଅପଟୁତା ଅଛି, ଅନ୍ୟ କୌଣସି ବିଷୟରେ ନାହିଁ । ଏଠାରେ ପର···ବାଦେ ଇତ୍ୟାଦି ପଦରେ 'କଥନ'ଟି ଅଧିକ ପଦ ।

ଅଛନ୍ତି ମଣ୍ଡନ ଦଣ୍ଡ ଦୁଇ, ଦଣ୍ଡିମାନେ ଦଣ୍ଡ
ଘେନନ୍ତି ଯେତ୍ତ ସେ ମୁଣ୍ଡନରେ ଘେନନ୍ତି
ଅମୁଗର୍ଭରେ ଗଣ୍ଡ ମାରତଣ୍ଡ ଖର ଚଣ୍ଡ—
ନର ମାଝିମାନ ଭଣ୍ଡ ବୋଲି ଜାଣନ୍ତି ।
ଅଙ୍ଗହୀନ ବର-ବଇଶ
ଅଛନ୍ତି କେବଳ କାଳୀ ହୋଇ ଗଉଷ । ୧୦
ଅଙ୍ଗନା-ଅଧର ରସ— ପାନେ ନିର୍ଘୃଣ ପୁରୁଷ—
ମାନେ କହନ୍ତି ବିଶେଷ ବିନୟବାଦ
ଅମରଗୁରୁ-ଅର୍ଚ୍ଚନା— ଲଗ୍ନ-ଅବସର ବିନା
ଅନ୍ୟଥା ବେଳେ ଅବନୀ ନ ଛୁଏଁ ପାଦ ।
ଅଧମ ସେ ଜୀବ ମାରଣେ।
ଅତୃପ୍ତ ଅଟନ୍ତି ମାତ୍ର ଧର୍ମକରଣେ । ୧୧

---

୧୦ । ସେଠାରେ 'ମୁଣ୍ଡନ' ଓ 'ଦଣ୍ଡ' ଏ ଦୁଇଟି କଥା ଅଛି, କିନ୍ତୁ (ଦଣ୍ଡୀ) ସନ୍ନ୍ୟାସୀ 'ମୁଣ୍ଡନ' ଓ 'ଦଣ୍ଡ' ଯଷ୍ଟିକୁ [ନିଜ ଧର୍ମ ବୋଲି] ଘେନନ୍ତି ବା ଗ୍ରହଣ କରନ୍ତି । ଅପର କେହି ଦଣ୍ଡିତ ହୋଇ ମୁଣ୍ଡିତ ହୁଏ ନାହିଁ । 'ଗଣ୍ଡ' ପଦ ସେଠାରେ [ଅମ୍ବୁଗର୍ଭରେ] ପାଣିଭିତରେ ଥାଇ ଜଳର ଗଣ୍ଡଉଚ୍ଚତା ସୂଚାଏ, ଅନ୍ୟଥା କୌଣସି ଲୋକ ସେଠାରେ [ଗଣ୍ଡ] ବୁଦ୍ଧିହୀନ ନୁହେଁ । ସେହିପରି 'ଚଣ୍ଡକର' କେବଳ [ମାର୍ତ୍ତଣ୍ଡ] ସୂର୍ଯ୍ୟଙ୍କର ପ୍ରତିଶବ୍ଦରୂପେ ବ୍ୟବହୃତ ହୁଏ, କିନ୍ତୁ [ଚଣ୍ଡକର] ଉଗ୍ର କାର୍ଯ୍ୟକାରୀ ଲୋକ ନ ଥିବାରୁ ସେ ଅର୍ଥରେ ତାହା ବ୍ୟବହୃତ ହୁଏ ନାହିଁ । ଗଉରୀ [ପାର୍ବତୀ] କାଳୀ ନାମ ଧାରଣ କରିଅଛନ୍ତି, କିନ୍ତୁ ଅପର କେହି କାଳୀ କୃଷ୍ଣବର୍ଣ୍ଣା ନୁହନ୍ତି । ୧୧ । ସେଠାକାର ପୁରୁଷ ମାନେ [ଅଙ୍ଗନା] ସ୍ତ୍ରୀର ଅଧରକୁ ପାନ କଲାବେଳେ [ନିର୍ଘୃଣ] ଘୃଣାଶୂନ୍ୟ ହୋଇଥାନ୍ତି, କିନ୍ତୁ ଅନ୍ୟ ବେଳେ [ନିର୍ଘୃଣ] ଦୟାଶୂନ୍ୟ ହୁଅନ୍ତି ନାହିଁ । ସେମାନେ ସେତିକବେଳେ [ବିନୟବାଦ] ଧୃଷ୍ଟକଥା କହନ୍ତି, କିନ୍ତୁ ଅନ୍ୟ ବେଳେ [ବିନୟବାଦ] ନୀତିବହିର୍ଭୂତ କଥା କହନ୍ତି ନାହିଁ । ଅମରଗୁରୁ—ଦେବଶ୍ରେଷ୍ଠ । ଶିବଙ୍କର [କାଶୀର ଅଧିଷ୍ଠାତ୍ରୀ ଦେବତା ଶିବ] ପୂଜା ଅବସର ବା ପୂଜାବେଳ ଛଡ଼ା ଅନ୍ୟ ସମୟରେ ସେମାନଙ୍କର ପାଦ ଭୂମି ସ୍ପର୍ଶ କରେ ନାହିଁ, ଅର୍ଥାତ୍ ଅନ୍ୟବେଳେ ବାହନ ପ୍ରଭୃତିରେ ଯାତାୟାତ କରନ୍ତି । ଜୀବମାରଣେ—ପ୍ରାଣୀହିଂସା କରିବା ବିଷୟରେ ସେମାନେ ଅପାରଗ । ଅନ୍ୟ କାର୍ଯ୍ୟରେ ନୁହନ୍ତି । ସେମାନେ ଧର୍ମ କରିବା ବିଷୟରେ [ଅତୃପ୍ତ] ସନ୍ତୁଷ୍ଟ ନୁହନ୍ତି, ଅନ୍ୟ ସବୁଥିରେ ସନ୍ତୁଷ୍ଟ । ୯-୧୧ । ପଦମାନଙ୍କରେ ପରିସଂଖ୍ୟା ଅଳଙ୍କାର । ତାହା ଶ୍ଳେଷାନୁପ୍ରାଣିତ ହୋଇଥିବାରୁ ଅତି ଚମତ୍କାର ।

ଅଣୁମାତ୍ରକ ହିଁ ପର— ଗୁଣକୁ ଘେନନ୍ତି ପର—
ପରବତ ପରକାର ସେ ପୁରନର
ଅବ୍ଧି-ସଦୃଶରେ ଦୋଷ ଥିଲେ କୁଶ-ଅଗ୍ର-ରସ
ପରି ଧରିବା ସହଜ-ସ୍ୱତ ତାଙ୍କର ।
ଅହୋ ! ଏହି ପରୋପକାର—
ଅର୍ଥେ ତନୁ ତନୁ ହୋଇଅଛି ଯାହାର । ୧୨

[ ବିରୋଧାଭାସ ]

ପ୍ରତ୍ୟର୍ଥେ ଜରି କରଜ ଗୋଜା ଲେଖନ୍ତି ଉରୁଜ
ପ୍ରଜା ଅତନୁ ରାଜ ଅନ୍ୟାୟୁଭରେ
ଅଶନ-ଆଶାରେ ଭୋଗୀ ନିରନ୍ତେ ବୁଲନ୍ତି ଯୋଗୀ
ବସି ନାନାରସ ଭୁଞ୍ଜୁଛନ୍ତି ନିର୍ଭରେ ।
ଅସିବରେ ପୃଥ୍ୱୀ ମାରନ୍ତି
ଅନୁକୂଳ ଲଗ୍ନ ହେଲେ ଯାଇଁ କରନ୍ତି । ୧୩

---

୧୨ । ଅଣୁମାତ୍ରକହିଁ-ଅତି ଅଳ୍ପ । ପରଗୁଣକୁ—ଅନ୍ୟ ଲୋକର ଦୟା ଦାକ୍ଷିଣ୍ୟାଦି ଗୁଣକୁ (ପର) ବଡ଼ । ପରବତ ପରକାର-ପର୍ବତ ପରି । ଅବ୍ଧି-ସମୁଦ୍ର । କୁଶ-ଅଗ୍ର ରସ—କୁଶ ଅଗ୍ରର ଜଳପରି । ଧରିବା—ମନେକରିବା । ସ୍ୱତ—ସ୍ୱଭାବ । ତନୁ—ଶରୀର । ତନୁ—କ୍ଷୀଣ ।୧୩। ବିରୋଧ ପକ୍ଷ: (ଉରୁଜ)-ବୈଶ୍ୟଜାତୀୟ ପ୍ରଜାମାନେ ଅତନୁରାଜ ଅନ୍ୟାୟୁଭରେ-ରାଜାଙ୍କ ପ୍ରବଳ ଅନ୍ୟାୟ ହେତୁ (ଅତ୍ୟର୍ଥେ)ଅଧିକ ଧନ ଥିଲେହେଁ ସୁଦ୍ଧା (କରଜ କରି) ଧାର କରି (ଗୋଜା)ଦଲିଲ ଲେଖନ୍ତି । ବୈଶ୍ୟଜାତିର ଲୋକ ଧନ ଥାଇ କରଜ କରିବା ଅସମ୍ଭବ । ଏଣୁ ବିରୋଧ । ପରିହାର—(ଅତନୁରାଜ ଅନ୍ୟାୟୁଭରେ)—କନ୍ଦର୍ପ ରାଜାଙ୍କର ଅନ୍ୟାୟ ହେତୁ, ପ୍ରଜାମାନେ (କରଜ) ନଖ (ଅତ୍ୟର୍ଥେ) ଅତିଶୟ (ଗୋଜା) ମୁନିଆ କରି (ଉରୁଜରେ) ନାୟିକା ମାନଙ୍କର ସ୍ତନରେ ଲେଖନ୍ତି । ଓକାରକୁ ଉକାରରୂପେ ଉଚ୍ଚାରଣ କରିବା ରୀତି କେନ୍ଦୁଝରରେ ଆଜିକାଲି ମଧ୍ୟ ପ୍ରଚଳିତ । ତେଣୁ କବି ଉରୋଜ ସ୍ଥାନରେ ଶ୍ଳେଷନୁରୋଧରେ ଉରୁଜ ବ୍ୟବହାର କରିଅଛନ୍ତି । ଅଶନ···ନିର୍ଭରେ—ବିରୋଧ-ଭୋଗୀ ବିଳାସୀ ଲୋକ ଅଶନ-ଖାଇବା ଆଶାରେ ସର୍ବଦା ବୁଲନ୍ତି । ଯୋଗୀମାନେ ବସି ରହି ନାନାରସ—ମଧୁରାଦି ଷଡ଼ରସ ଭୁଞ୍ଜୁଛନ୍ତି । ବିଳାସୀର ଖାଇବାପାଇଁ ବୁଲିବା ଓ ଯୋଗୀର ବସି ଖାଇବା ଅସମ୍ଭବ । ପରିହାର—ଭୋଗୀ-ସର୍ପମାନେ । ଯୋଗୀ—ସଂଯୋଗୀ ପୁରୁଷମାନେ, ସ୍ତ୍ରୀ ସହ ବାସ କରୁଥିବା ବ୍ୟକ୍ତି । ଅସିବରେ ··· ମାରନ୍ତି—ବିରୋଧପକ୍ଷେ—ଅଶିବରେ—ଅମଙ୍ଗଳରେ ପୃଥ୍ୱୀକୁ ମାରନ୍ତି । ପରିହାର—ଅଶିବରେ—ଶିବଭକ୍ତ ନୋହିଥିବା ବ୍ୟକ୍ତିଙ୍କୁ ପୃଥ୍ୱୀରେ ନାଶ କରନ୍ତି । ଅଥବା ଅସିବରେ—ଖଡ଼୍ଗଦ୍ୱାରା ପୃଥ୍ୱୀ ମାରନ୍ତି ।

[ଶ୍ଳେଷରେ ଦଶାବତାର ସାମ୍ୟ]

ଅଣ୍ଡଜ-ରୂପ ଏ ପୁର ସିନ୍ଧୁରେ ସୁନ୍ଦରତର
ଅନିମିଷ କରଣ ଯା ଜଣିବୁ ଖ୍ୟାତ
ଅଟେ ବହୁପଦ ଯେଣୁ କୂର୍ମ-ଅବତାର ତେଣୁ
ଦ୍ୱିଜ-ଗୃହୀତ-ଭୂଭାଗ ବରାହବତ ।
ଅଛି ବର୍ତ୍ତି କରଜଶିରୀ
ଅରି-ଦର-କର ଯେଣୁ ନୃସିଂହ ସରି । ୧୪
ଅପୂର୍ବ ଖର୍ବ ବିଦିତ ବଳିରାଜା ଦାନରତ
ବାମନ ଏ ପରଶୁ କରରେ ଶୋଭନ

---

୧୪ । ଏ ପଦ ଓ ପରବର୍ତ୍ତୀ ପଦରେ ନଗରକୁ ଦଶାବତାର ସଙ୍ଗେ ସମାନ-ବିଶେଷଣ ଦ୍ୱାରା ସମାନ କରାଯାଇଛି । ନଗର (ଅଣ୍ଡଜରୂପ) ମତ୍ସ୍ୟପରି ମତ୍ସ୍ୟ— (ସିନ୍ଧୁ) ସମୁଦ୍ରରେ ସୁନ୍ଦରତର ଓ (ଅନିମିଷ କରଣ) ପଲକରହିତ ଚକ୍ଷୁ ବୋଲି ପ୍ରସିଦ୍ଧ ଅଛି । ଏ ନଗର (ସିନ୍ଧୁର) ହସ୍ତୀଦ୍ୱାରା ଅତି ସୁନ୍ଦର ଓ (ଅନିମେଷକରଣ) ଯେ ଏହାର ଶୋଭା ଦେଖେ, ସେ ଆଖିପତା ପକାଇ ପାରେ ନାହିଁ ଅର୍ଥାତ୍ ନିର୍ନିମେଷ ନୟନରେ ରହିଁ ରହେ । (ବହୁପଦ) କୂର୍ମପକ୍ଷେ ବହୁତ ପଦଯୁକ୍ତ ଓ ନଗର ପକ୍ଷେ ବହୁତ ସ୍ଥାନବିଶିଷ୍ଟ । (ଦ୍ୱିଜଗୃହୀତଭୂଭାଗ) ବରାହ ଅବତାରରେ ଭଗବାନ୍ (ଦ୍ୱିଜ) ଦନ୍ତରେ ପୃଥିବୀ ଧାରଣ କରିଥିଲେ । (ନଗର ପକ୍ଷରେ) ଯହିଁରେ (ଦ୍ୱିଜ) ବ୍ରାହ୍ମଣମାନେ ବହୁତ ଜମି ଦାନରୂପେ ଗ୍ରହଣ କରିଛନ୍ତି । କରଜଶିରୀ—(ନୃସିଂହ ଅବତାର ପକ୍ଷେ) ନଖ ଶୋଭା ଓ ନଗର ପକ୍ଷେ (କରଜ) ଖଜଣାରୁ ଜାତ ସମ୍ପତ୍ତି । ଅରିଦରକର-ନୃସିଂହ ପକ୍ଷେ—ଚକ୍ର ଓ ଶଙ୍ଖ କରରେ (ହସ୍ତରେ) ଯାହାଙ୍କର । (ନଗର ପକ୍ଷେ) ଅରି—ଶତ୍ରୁ । ଦରକର—ଭୟ-ଉତ୍ପାଦକ । ୧୫ । (ବାମନ) ଅପୂର୍ବ ବା ବିଚିତ୍ର ରକମ (ଖର୍ବ) ଖର୍ବାକାର । (ନଗର) ଅପୂର୍ବ ଖର୍ବ ବା ଅଖର୍ବ ଅର୍ଥାତ୍ ଖର୍ବକାୟ ନୁହେଁ । ଅତି ଉନ୍ନତ ବା ସମୃଦ୍ଧ । (ବଳିରାଜା ଦାନରତ) ବାମନାବତାରରେ ପ୍ରଭୁ ବଳିରାଜାଠାରୁ ଦାନ ନେବାରେ ଆସକ୍ତ ଥିଲେ । (ନଗର) ଏଠାକାର ବଳବାନ୍ ନରପତି ସର୍ବଦା ଦାନରେ ରତ ଥାନ୍ତି । (ପରଶୁରାମ) ପରଶୁ—ଅସ୍ତ୍ରବିଶେଷ । କରରେ-ହସ୍ତରେ । ଶୋଭନ—ସୁନ୍ଦର । (ନଗର) ଏଠାରେ (ପର) ଉତ୍କୃଷ୍ଟ । ଶୂକରରେ—ଘୁଷୁରି ଦ୍ୱାରା । (ରାମ)(ସଲକ୍ଷଣ) ଲକ୍ଷ୍ମଣଙ୍କ ସହ ବର୍ତ୍ତମାନ ସୀତାଙ୍କର (ରାମ) ମନୋହର, ଲକ୍ଷ୍ମଣ ଓ ସୀତାଙ୍କର ମନୋହର । (ନଗର) ସଲକ୍ଷଣ (ଲକ୍ଷ୍ମଣା) ମାଈହଂସଦ୍ୱାରା ଯୁକ୍ତ, ଅତଏବ (ସିତ) ଧବଳ (ଆରାମ)ଉପବନ, ବଗିଚାର ପୁଷ୍କରଣୀମାନଙ୍କରେ ବହୁତ ହଂସୀ ସନ୍ତରଣ କରୁଥିବାରୁ ତାହା ଧବଳବର୍ଣ୍ଣ ହୋଇଛି ।

ଅଟଇ ପରଶୁରାମ ସଲକ୍ଷଣ-ସୀତା-ରାମ
ବାଳ-ବିରସ କାରଣୁଁ ରଘୁନନ୍ଦନ ।
ଅଚ୍ଛମଳାଂଶୁକେ ସୁନ୍ଦର
ଅପ୍ରମିତ ବଳ ଯେଣୁ ଲାଙ୍ଗଳ ଧର । ୧୫

ଅକଳିତ ଯଜ୍ଞବିଧି ଶ୍ରୁତିରହିତ ଯା ସିଦ୍ଧି
ସାନୁକମ୍ପନରେ ଏଣୁ ବୁଦ୍ଧାବତାର
ଅଚ୍ଛ ଚନ୍ଦ୍ରହାସ କରେ ଦିବ୍ୟରାମାଶ୍ୱଗତିରେ
ଶୋଭା କରୁଣା ଲୋକରେ ଏ କଲ୍କି ବୀର ।
ଅର୍ଥ ଶ୍ଳେଷ-ରୀତିରେ ହୋଇ
ଅ ତାରଦଶକୁ ଏ ପୁର ବୁଝାଇ । ୧୬

---

ବାଳବିରସକାରଣୁ (ରାମ) ବାଳିନାମକ ବାନରର (ବିରସ) ଦୁଃଖର କାରଣ ହୋଇଥିବାରୁ । ନଗର (ବାଳୀ) ସ୍ତ୍ରୀମାନଙ୍କ (ବିରସ) ବିଶେଷ ଅନୁରାଗର କାରଣ ହୋଇଥିବାରୁ । (ବଳରାମ) ଅଚ୍ଛ—ନିର୍ମଳ । ମଳାଂଶୁକ—ମଳ ବସନ । ବଳରାମ, ମଳ ନିର୍ମଳ ବସ୍ତ୍ରପରିଧାନ କରିଥାନ୍ତି ଓ (ଅପ୍ରମିତ) ଅକଳନ୍ତ ବଳରେ ଯୁକ୍ତ । ନଗର ଉଜ୍ଜ୍ୱଳ ନୀଳବର୍ଣ୍ଣ ମଣିମାନଙ୍କ ତେଜରେ ସୁନ୍ଦର ଓ (ଅପ୍ରମିତବଳ) ଅସଂଖ୍ୟ ସୈନ୍ୟରେ ଯୁକ୍ତ ।୧୬। ବୁଦ୍ଧାବତାର (ବୁଦ୍ଧପକ୍ଷେ) ଅକଳିତ-ଅସ୍ୱୀକୃତ । ବୁଦ୍ଧ ଯଜ୍ଞବିଧିକୁ ସ୍ୱୀକାର କରନ୍ତି ନାହିଁ । ଯାହାଙ୍କର ସିଦ୍ଧି ବା କାର୍ଯ୍ୟର ଫଳ (ଶ୍ରୁତିରହିତ) ବେଦ ରହିତ । ନରେ—ନରମାନଙ୍କଠାରେ । ସାନୁକମ୍ପ—ଦୟାଳୁ । (ନଗର) ଅସଂଖ୍ୟ ଯଜ୍ଞ ଅନୁଷ୍ଠାନଦ୍ୱାରା ଯେ ଜଗତରେ ଖ୍ୟାତ ସିଦ୍ଧି-ଖ୍ୟାତି । ଶ୍ରୁତିରହିତ—ଯାହା ପୂର୍ବରୁ କର୍ଣ୍ଣରେ ଶୁଣାଯାଇ ନାହିଁ । ଯେଉଁଠାରେ (ନରେ) ଲୋକମାନେ (ସାନୁକମ୍ପ) ଦୟାଳୁ । (କଲ୍କି) ଅଚ୍ଛ—ନିର୍ମଳ । ଚନ୍ଦ୍ରହାସ-ଖଡ୍ଗ । କରେ-ହସ୍ତରେ । (ଦିବ୍ୟରାମ) ଦିବ୍ୟସୁନ୍ଦର । ଅଶ୍ୱଗତିରେ-ଅଶ୍ୱାରୋହଣ କରି ଗତି କରିବାରେ ଓ (କରୁଣାଲୋକରେ) କରୁଣାପୂର୍ଣ୍ଣ ଦୃଷ୍ଟିପାତରେ ଶୋଭା ସୁନ୍ଦର । (ନଗର) ଦିବ୍ୟରାମା—ମନୋହାରିଣୀ ରମଣୀ । ଅଚ୍ଛଚନ୍ଦ୍ରହାସକରେ—ନିର୍ମଳଚନ୍ଦ୍ରସଦୃଶ ନିଜର ହାସର କିରଣରେ । (ସ୍ୱଗତିରେ) ନିଜ ଗମନଦ୍ୱାରା । (ଲୋକରେ) ପ୍ରଣୟୀଜନଠାରେ କରୁଣାକରି ଶୋଭା ପାନ୍ତି । ସେଠାକାର ସ୍ତ୍ରୀମାନଙ୍କର ହାସ ଚନ୍ଦ୍ରଠାରୁ ଉଜ୍ଜ୍ୱଳ ଓ ସେମାନେ ଅନ୍ଧାର ମାର୍ଗରେ ସୁଦ୍ଧା ନିଜର ସେହି ହାସର କିରଣରେ ଗମନ କରି ନିଜର ପ୍ରଣୟୀମାନଙ୍କୁ ଦୟା କରିଥାନ୍ତି ।

[ ଶ୍ଳେଷରେ ଦିକ୍‌ପାଳସାମ୍ୟ ]

ଅନେକ ନେତ୍ରେ ରୁଚିର ତେଜୋବନ୍ତ ଦଣ୍ଡଧର
ପୁଣ୍ୟଜନାଶ୍ରୟ ଖ୍ୟାତ ଯେ ଭୁବନରେ
ଅନିଶେ ସୁମନାମୋଦ ପ୍ରବର୍ତ୍ତକ ଧନଦ
ରାଜରାଜ ଯାର ପଦ ରଜତ-ଧରେ
ଅଚଳେ ବିଭୂତିମଣ୍ଡନ
ଅଷ୍ଟଦିଗପତି ପରି ଏହୁ ରାଜନ । ୧୭

[ ବିରୋଧାଭାସ ]

ଅନୁରାଗୀ ରସାକର ରାଜା ହାସେ ଶୋଭାଧର
ତାକୁ ମଧୁ ପିଇ ବର ହିକେ ଖଣ୍ଡନ୍ତି

---

୧୭ । କାଶୀନଗର ରାଜାଙ୍କ ବର୍ଣ୍ଣନା, ଦିକ୍‌ପାଳସାମ୍ୟ ।

ରାଜାପକ୍ଷେ—ଅନେକ (ନେତ୍ରେ) ବସ୍ତ୍ର ବା ରଥରେ (ରୁଚିର) ସୁନ୍ଦର । ତେଜୋବନ୍ତ—ତେଜସ୍ୱୀ । ଦଣ୍ଡଧର—ଦୁଷ୍ଟ ପ୍ରଜାମାନଙ୍କର ଦଣ୍ଡବିଧାତା । ପୁଣ୍ୟ-ଜନାଶ୍ରୟ--ସାଧୁଜନଙ୍କ ଶରଣ । ଯେ ଭୁବନରେ ଖ୍ୟାତ--ପୃଥିବୀରେ ବିଖ୍ୟାତ । ଅନିଶେ—ସର୍ବଦା । ସୁମନାମୋଦ-ପ୍ରବର୍ତ୍ତକ—ଦେବତା ଓ ପଣ୍ଡିତମାନଙ୍କର ଆନନ୍ଦଦାୟୀ । ଧନଦ—ଧନ ଦାନକାରୀ । ଯାହାଙ୍କର ରାଜରାଜବୋଲି (ପଦ) ଉପାଧି ବା ପଦବୀ । ଯେ, (ରଜତ) ରୂପା (ଧରେ) ଧାରଣ କରେ । (ଅଚଳେ) ସ୍ଥିରଭାବରେ । ବିଭୂତିମଣ୍ଡନ—ସମ୍ପତ୍ତିଶାଳୀ । ଲକ୍ଷ୍ମୀ ଚଞ୍ଚଳା ହେଲେ ମଧ୍ୟ ତାଙ୍କ ନିକଟରେ ସ୍ଥିର । ଅଷ୍ଟଦିକ୍‌ପତି ପକ୍ଷେ-(ଅନେକ ନେତ୍ରେ ରୁଚିର)— ସହସ୍ରାକ୍ଷ ବା ଇନ୍ଦ୍ର-ପୂର୍ବଦିକ୍‌ପତି । ତେଜୋବନ୍ତ-ଅଗ୍ନି, ଦକ୍ଷିଣପୂର୍ବଦିକ୍‌ପତି । (ଦଣ୍ଡଧର) ଦକ୍ଷିଣଦିଗାଧିପତି । ପୁଣ୍ୟଜନାଶ୍ରୟ—ଅସୁରମାନଙ୍କର ଆଶ୍ରୟୀ, ନୈଋତ ବା ଦକ୍ଷିଣପଶ୍ଚିମଦିକ୍‌ପତି । ଯେ(ଭୁବନରେ) ଜଳରେ ଖ୍ୟାତ-ବରୁଣ,ପଶ୍ଚିମାଧିପତି । (ଅନିଶେ) ସର୍ବଦା (ସୁମନାମୋଦ) ପୁଷ୍ପାମୋଦ (ପ୍ରବର୍ତ୍ତକ) ପ୍ରବର୍ତ୍ତକାରୀ—ଗନ୍ଧ-ବହ, ବାୟୁ ବା ଉତ୍ତର ପଶ୍ଚିମଦିକ୍‌ପତି । (ଧନଦ) କୁବେର ବା ଉତ୍ତର ଦିକ୍‌ପତି (ଯାର ପଦ ରଜତ ଧରେ) କୈଳାସରେ ଯାହାଙ୍କର ବାସସ୍ଥାନ ଅର୍ଥାତ୍ ଈଶାନ, ମହାଦେବ ବା ଉତ୍ତର-ପୂର୍ବଦିକ୍‌ପତି ଓ (ଅଚଳେ ବିଭୂତିମଣ୍ଡନ) ସର୍ବଦା ଭସ୍ମ-ଭୂଷିତ ।୧୮। ବିରୋଧ ପକ୍ଷେ—ସେ ରାଜ୍ୟରେ ରାଜା (ଅନୁରାଗୀ) ପ୍ରଜାମାନଙ୍କର ଅନୁରକ୍ତ । ରସାକର—ରସର ଆକର ବା ରସିକ । ହାସରେ ଶୋଭାଧର (ଶୋଭାଅଧର) ଯାହାଙ୍କର ଅଧର ସର୍ବଦା ହାସରେ ଶୋଭିତ । (ଏଠାରେ

ଅତନୁଶାସ୍ତ୍ର-ପଣ୍ଡିତ ବରେ ଶ୍ରୁତି ଅନ୍ତର୍ଗତ
ରସଜ୍ଞା ହୋଇ ଅତ୍ୟନ୍ତ ଚଞ୍ଚଳ ହୋନ୍ତି ।
ଅଚ୍ଛ ସ୍ନେହ ଲଗାଇ କରି
ଅପୂର୍ବ କାଳକବରୀ ବାନ୍ଧନ୍ତି ନାରୀ । ୧୮
ଅତି ସୁବୃତ୍ତ ଉରୁଜ କରପୀଡ଼ା ପାଇ ନିଜ
ବାସରୁ ଅନ୍ତର ହୋଇ ଲୁଚନ୍ତି ପାଣିରେ ।

---

ସ୍ୱରୂପା ସନ୍ଧି ଶ୍ଳେଷାନୁରୋଧରେ କୃତ) ତାକୁ (ଦ୍ୱିଜେ) ବ୍ରାହ୍ମଣମାନେ (ମଧୁ) ମଦ୍ୟ (ପିଇ) ପାନ କରି (ଖଣ୍ଡନ୍ତି) ମାରନ୍ତି । ଅନୁରାଗୀ ରସିକ ରାଜାଙ୍କୁ ବ୍ରାହ୍ମଣ ମଦ୍ୟ ପାନ କରି ମାରିବା ଅତି ଅସଙ୍ଗତ । ପରିହାର ପକ୍ଷେ—(ଅନୁରାଗୀ ରସାକର) ଅନୁରାଗୀ ରସିକମାନେ (ରାଜା) ଚନ୍ଦ୍ର ବା ଚନ୍ଦ୍ର ପରି ନିର୍ମଳ ହାସରେ (ଶୋଣାଧର ବା ଶୋଣ+ଅଧର) ସୁନ୍ଦର ଅଧରକୁ (ମଧୁ) ଅଧର ମଧୁ ପିଇ (ଦ୍ୱିଜେ) ଦନ୍ତଦ୍ୱାରା (ଖଣ୍ଡନ୍ତି) ଖଣ୍ଡିତ କରନ୍ତି । ରାଜା ମୃଗାଙ୍କେ କ୍ଷତ୍ରିୟେ ନୃପେ— ଇତ୍ୟମରଃ— ଅତନୁ...ହୋନ୍ତି । ବିରୋଧ ପକ୍ଷେ – ଅତନୁ—ତନୁ ନୁହେଁ ବା ଅସଂଖ୍ୟ । ଅତନୁ ଶାସ୍ତ୍ର ପଣ୍ଡିତ ବରେ—ଅସଂଖ୍ୟ ଶାସ୍ତ୍ରରେ ପଣ୍ଡିତବରମାନେ (ଶ୍ରୁତି ଅନ୍ତର୍ଗତ ରସଜ୍ଞା) ବେଦମଧ୍ୟରେ ଥିବା (ରସ) ତତ୍ତ୍ୱକୁ ଜାଣି (ଅତ୍ୟନ୍ତ ଚଞ୍ଚଳ ହୋନ୍ତି) ଅତ୍ୟଧିକ ଚଞ୍ଚଳ ହୁଅନ୍ତି । ବେଦାନୁଶୀଳନରେ ବୁଦ୍ଧି ସ୍ଥିର ହେବା ପରିବର୍ତ୍ତେ ଚଞ୍ଚଳ ହେବା ବିରୋଧ । ପରିହାର ପକ୍ଷେ—ଅତନୁଶାସ୍ତ୍ରପଣ୍ଡିତବରେ —କାମଶାସ୍ତ୍ରରେ ଅଭିଜ୍ଞ ବ୍ୟକ୍ତିମାନେ । (ଶ୍ରୁତି ଅନ୍ତର୍ଗତ ରସଜ୍ଞା ହୋଇ)(ନାୟିକାମାନଙ୍କର) କାନମଧ୍ୟରେ ଜିହ୍ୱା ପ୍ରବେଶ କରାଇ (ଚଞ୍ଚଳ) ଅଧୀର ହୁଅନ୍ତି । ଅଚ୍ଛସ୍ନେହ...ନାରୀ — ବିରୋଧ ପକ୍ଷେ (ଅଚ୍ଛସ୍ନେହ) ବିଶୁଦ୍ଧ—ଚିକ୍କଣ ଦ୍ରବ୍ୟ (ତୈଳାଦି) ଲଗାଇ କରି ନାରୀମାନେ (ଅପୂର୍ବକାଳ) ଅକାଳ ବା କୃଷ୍ଣବର୍ଣ୍ଣ ନୋହିଥିବା (କବରୀ) ଜୁଡ଼ା ବାନ୍ଧନ୍ତି । ଏଠାରେ କବରୀ କୃଷ୍ଣବର୍ଣ୍ଣ ନୋହିବାରୁ ଅସଙ୍ଗତ ପ୍ରକାଶ ହେଲା । ପରିହାର ପକ୍ଷେ-(ଅଚ୍ଛସ୍ନେହ) ଉତ୍ତମ ସ୍ନେହ ବା ପ୍ରୀତି ଲଗାଇ (ଅପୂର୍ବ) ଅଭିନବ ଭାବରେ (କାଳକ) ଚିରକାଳପାଇଁ (ବରି) ବରଣ କରି ନାୟକମାନଙ୍କୁ (ବାନ୍ଧନ୍ତି) ବାନ୍ଧିରଖନ୍ତି ।୧୮। ବିରୋଧ ପକ୍ଷେ—(ଅତିସୁବୃତ୍ତ) ଅତି ସଦ୍‌ସ୍ୱଭାବ (ଉରୁଜ) ବୈଶ୍ୟ (କରପୀଡ଼ା ପାଇ) ରାଜସ୍ୱ ପୀଡ଼ାରେ (ନିଜ-ବାସରୁ) ନିଜଘରୁ (ଅନ୍ତରହୋଇ) ବାହାରି (ପାଣି) ଜଳରେ ଲୁଚେ । ପରିହାର ପକ୍ଷେ—(ଅତି ସୁବୃତ୍ତ) ବର୍ତ୍ତୁଳ (ଉରୁଜ) ସ୍ତନ (କରପୀଡ଼ା) ହସ୍ତମର୍ଦ୍ଦନଜନ୍ୟ କଷ୍ଟ ଭୋଗ କରି (ବାସରୁ) ଲୁଗାରୁ ବାହାରି (ପାଣି) ହସ୍ତମଧ୍ୟରେ ଲୁଚେ ।

ଅଶ୍ୱପର ଯେ ନିତମ୍ବ                    କର ତାଙ୍କୁ ଅବଲମ୍ବ,
ଅତନୁ ଯୁଦ୍ଧ କରୁଛୁ ସୁରମଣିରେ ।
ଅଶ୍ୱାରେ ମୁଖର ରସନା
ଅବଶ୍ୟ ଗଞ୍ଜିଲେ ବାମା ହୋଏ ପ୍ରସନ୍ନା । ୧୯

ଅଚ୍ଛତର ମରକତ—                    ପୁର ବେନି ପଶେ ଘଟିତ
ହୋଇଛୁ ହେମ ରଜତ ବେଶ୍ମମନ୍ଦର
ଅନ୍ୟୋନ୍ୟରେ ପ୍ରତିବିମ୍ବ,                    ବହୁବାରୁ ସେ ଆଡମ୍ବ,
ଦର୍ଶି ଦେଉଅଛୁ ଦମ୍ଭ ଦିଶି ସୁନ୍ଦର ।
ଅର୍ଦ୍ଧନାରୀଶ୍ୱର-ସଦୃଶ
ଅଧ୍ୟାହାରି ହୋଏ ମଧ୍ୟ ମର୍କତ-ବାସ । ୨୦

---

ଅଶ୍ୱପର…ସୁରମଣିରେ-ବିରୋଧପକ୍ଷେ-ଅଶ୍ୱପର--ଶତ୍ରୁପର (ଅତନୁ) ଶରୀରହୀନ ବ୍ୟକ୍ତି (ଶୂରମଣିରେ) ବୀରଶ୍ରେଷ୍ଠ ସହିତ ଯୁଦ୍ଧ କରୁଛୁ ଶରୀରହୀନ ବ୍ୟକ୍ତିର ଯୁଦ୍ଧ କରିବା ଅସମ୍ଭବ । ପରିହାରପକ୍ଷ ଅଶ୍ୱପରି-ଘୋଡ଼ାପରି । ଅତନୁଯୁଦ୍ଧ-କାମଯୁଦ୍ଧ ସୁରମଣିରେ—ଉତ୍ତମ ସ୍ତ୍ରୀସହିତରେ । ଅଶ୍ୱାରେ…ରସନା—ବିରୋଧପକ୍ଷେ—ଅଶ୍ୱାରେ (ମୁଖର) ମୁଖର (ରସନା) ଜିହ୍ୱା ଅବସ୍ଥିତି, ବିରୁଦ୍ଧ । ପରିହାର ପକ୍ଷ—ଅଶ୍ୱାରେ (ମୁଖର) ଶବ୍ଦାୟମାନ (ରସନା) କ୍ଷୁଦ୍ର ଘାଗୁଡ଼ିମାଳ ଅଛୁ । ଅବଶ୍ୟ… ପ୍ରସନ୍ନା-ବିରୋଧପକ୍ଷ--(ଗଞ୍ଜିଲେ) ପୀଡ଼ାଦେଲେ (ବାମା) ପ୍ରତିକୂଳା ବା ମାନିନୀ (ପ୍ରସନ୍ନା) ଅବଶ୍ୟ ଅନୁକୂଳା ହୁଏ, ଏହା ଅସଙ୍ଗତ । ପରିହାର-(କାମପ୍ରଭାବରୁ) ସ୍ତନାଦି ମର୍ଦ୍ଦନରେ ପୀଡ଼ାଦେଲେ ମାନିନୀର ମନ ତୁଟିଯାଏ । ୨୦ । ଅତିସ୍ୱଚ୍ଛ ମର୍କତମଣିନିର୍ମିତ (ପୁର) ଗୃହର (ବେନି ପାଶେ) ଦୁଇପାଖରେ (ହେମ) ସୁନା (ରଜତ) ରୂପା (ନିର୍ମିତ ଛଅର ହୋଇଥିବା ଦୁଇଟି (ମନ୍ଦର) ଗୃହ ଅଛୁ । ଅନ୍ୟୋନ୍ୟରେ—ପରସ୍ପର । ପ୍ରତିବିମ୍ବ—ଛାଇ । ଅର୍ଦ୍ଧନାରୀଶ୍ୱର—ହରଗୌରୀ ମୂର୍ତ୍ତି । ଅଧ୍ୟାହାର-ତର୍କ, ଅନୁମାନ କରିବା । ଭାବାର୍ଥ-ସେହି ନଗରର ଏକସ୍ଥାନରେ ଗୋଟିଏ ତର୍କମଣିର ଗୃହ ଅଛୁ । ସେହି ଗୃହର ଦୁଇପାଖରେ ସୁନା ଓ ରୂପାର ଦୁଇଟି ଘର ଅଛୁ । ସେମାନେ ପରସ୍ପର ତେଜକୁ ବଦଳାଇ ଗ୍ରହଣ କରିଅଛନ୍ତି ଅର୍ଥାତ୍ ମର୍କତ ଗୃହର ଏକପାଖରେ ସୁନ ଗୃହର ତେଜ ପଡ଼ି ହଳଦୀବର୍ଣ୍ଣ ଓ ଅନ୍ୟ ପାଖରେ ରୂପାଗୃହର ତେଜପଡ଼ି ଧଳାବର୍ଣ୍ଣ ଦିଶୁଛି; ଅତଏବ ସେ ମର୍କତ-ଗୃହଟି ଅର୍ଦ୍ଧନାରୀଶ୍ୱର ମୂର୍ତ୍ତିପରି ଦିଶୁଛି । ଗୌରୀ ସ୍ୱର୍ଣ୍ଣବର୍ଣ୍ଣା ଓ ହର ରଜତବର୍ଣ୍ଣଧାରୀ ।

ଅନ୍ଧକାର-ହର-ପର    ରାଜତ ରଜତ ପୁରୀ
ସୂର୍ଯ୍ୟସୁତା ସୁରସରିତ କି ମିଶିଛି ।
ଅପର ସ୍ୱର୍ଣ୍ଣସଦନ    ରାଧାମୋହନ-ସଦନ —
ଆଲିଙ୍ଗନ ଅପଘନ ଶୋଭା ବହୁଛି ।
ଅମ୍ବୁଦରେ ପୁଲକିତ ହୋଇ
ଅବକଳି କି ବିଜୁଳି କେଳି କରଇ । ୨୧

ଅର୍କ ଅଶ୍ୱଗତିଚିତ୍ତ    ଅଟକାନ୍ତି କେ ଜଗତି
ଅଟନ୍ତି ସେ ଅକ୍ଷିମନ-ବନ୍ଦୀ-ସଦନ ।
ଅଟାଳୀ ଅନେକ ଅତି—    ଅନ୍ତଦ୍ୟୁତି ଛନ୍ତି ଘେନି
ଅନାୟାସେ ନିଷେଧନ୍ତି ଅକ୍ଷିପତନ ।
ଅଗ୍ରଭାଗ ଉଦରମାନ
ଅମାନରେ ମାନିଛନ୍ତି ହୋଇ ସମାନ । ୨୨

ଅଛି ଯେଉଁ ପୁରୀ * ଏକ    ଉଦରେ ପୁରୀ ମାଣିକ୍ୟ—
ଭୂମି ମଧ୍ୟପୁର ଟେକ ସ୍ଫଟିକ-ସ୍ଥଳୀ

---

୨୧ । ଯେଉଁପରି ରୂପାଗୃହଟି ଏକପାଖରେ ମର୍କତ ତେଜ ଧରିଥିବାରୁ ପାଖେ ନୀଳ, ପାଖେ ଧଳା ହୋଇ ହରିହର ମୂର୍ତ୍ତି ପରି ଦିଶୁଛି ଅଥବା ସୂର୍ଯ୍ୟସୁତା—ଯମୁନା ଓ (ସୁରସରିତ) ଗଙ୍ଗାଙ୍କର ମିଳନ ପରି ଦିଶୁଛି । ଆହୁରି ମଧ୍ୟ(ସୁନାସଦନ) ସୁନା ଗୃହଟି ଏକ ପାଖରେ ମର୍କତ ତେଜ ଧରିଥିବାରୁ ପାଖେ ନୀଳ ଓ ଆରପାଖ ହଳଦୀ ବର୍ଣ୍ଣ ହୋଇ ରାଧା ଓ (ମୋହନ) କୃଷ୍ଣଙ୍କ (ଅପଘନ) ଶରୀରର (ସଦନ) ନିବିଡ଼ ଆଲିଙ୍ଗନ ପରି ଶୋଭା ଧରିଛି । ତାହା ଦେଖି ଅମ୍ବୁଦ ମେଘରେ ବିଜୁଳି (ପୁଲକିତ ହୋଇ) ସ୍ଥିର ହୋଇ କ୍ରୀଡ଼ା କରୁଛି କି ବୋଲି (ଅବକଳି) ସ୍ଥିର କରୁଛୁଁ । ୨୨ । ଅର୍କ ଅଶ୍ୱଗତିଚିତ୍ତ—ସୂର୍ଯ୍ୟଙ୍କ ଘୋଡ଼ାମାନଙ୍କର (ଗତି) ଗମନ ବେଗକୁ (କେ ଜଗତି) କୌଣସି କୌଣସି ଚନ୍ଦ୍ରଶାଳା ଅଟକାଉଛନ୍ତି । ଅକ୍ଷି... ସଦନ—ଆଖି ଓ ମନ ବନ୍ଦୀକରି ରଖିବାର ଗୃହ । ଅତିଅନ୍ତ ଦ୍ୟୁତି—ଅଧିକ ତେଜ । ଅକ୍ଷି ପତନ—ଆଖିପଡ଼ିବା ଅର୍ଥାତ୍ ତାହାକୁ ଚାହିଁବା । ଅତି ତେଜ ହୋଇଥିବାରୁ ତାକୁ ଚାହିଁ ହୁଏ ନାହିଁ । ଅଗ୍ର...ସମାନ—ସେ ଗୃହଗୁଡ଼ିକ ଭିତର ଉପର ସବୁ ଯେ ଯାହାକୁ ଚାହିଁ ତିଆରି ହୋଇଥିବାରୁ ସବୁ ଅଂଶ ପରସ୍ପର ବଡ଼ ମନାଉଅଛି ।

ଅଧଃପୁର ନୀଳାସ୍ଥଳୀ ସ୍ୱଚ୍ଛତାରୁ ତାଙ୍କ ଝଳ
କାନ୍ତି ପରସ୍ପରେ ମିଳି ନୋହେ ଆକଳ
ଅନୁମାନ ତହିଁ ନ ରହେ
ଅଛନ୍ତି ସେ କେଉଁ ଦ୍ରବ୍ୟ ସନ୍ଦେହ ହୋଏ । ୨୩
ଅମୂଲ୍ୟ ବନ୍ଧଣି ବୁଝି ଉପର ମାଣିକ୍ୟ ମଣ୍ଡି
ବୋଲନ୍ତି ଏ ତମ୍ବା, ନୋହିଥିଲେ ପ୍ରବାଳ
ଅମର ସରିତ ବନେ ରକ୍ତପଦ୍ମ ଏ ସଘନେ
ଫୁଟିବାର କବିମାନେ କରନ୍ତି ଭୂଲ
ଅବଳାଏ ବୋଲନ୍ତି ଭାଳ
ଅଛନ୍ତି ଚୂନମଧ୍ୟରେ ହିଙ୍ଗୁଳ ଗୋଳି । ୨୪
ଅରୁଣ ଅତି ବତ୍ସଳ— ଉଦୟରେ ସୁତାକୁ କୋଳ
କରିବା ସ୍ଫଟିକ ସ୍ଥଳ ପରକାଶଇ
ଅବ୍ଜକର କି ତମାଳ ଲତାରେ ପଡ଼ିଛି ତଳ —
ନୀଳା ସ୍ଫଟିକ ଶୃଙ୍ଖଳବନ୍ତୁ ଦିଶଇ ।

---

※ ଯେ ଷ ପୁର [ଗ]

୨୩ । ସେଠି ଗୋଟିଏ ତିନି-ମହଲା ଘର ଅଛି । ସେଥିରେ ଉପର ମହଲା ଚଟାଣ ମାଣିକ୍ୟରେ ତିଆରି, ମଝିମହଲା (ଠେକ) ଜ ତିଆ ସ୍ଫଟିକରେ ତିଆରି, ତଳ ମହଲା ଚଟାଣ ନୀଳାରେ ତିଆରି ସେ ସମସ୍ତ ଅତି ସ୍ୱଚ୍ଛ ହୋଇଥିବାରୁ (ଝଳ) ଯୁକ୍ତ ହୋଇ ସେମାନଙ୍କର କାନ୍ତି ପରସ୍ପର ସହିତ ମିଶିଯାଇଥିବାରୁ କେଉଁ କାନ୍ଥିରେ ତିଆରି (ଆକଳ) ନିର୍ଣ୍ଣୟ କରି ହେଉନାହିଁ ।
୨୪ । କେହି (ଅମୂଲ୍ୟ) ପାରଦର୍ଶୀ ବନ୍ଧାଣି ଉପର ମହଲକୁ ବୁଝି ଏ ତମ୍ବା ନୋହିଲେ (ପ୍ରବାଳ) ପୋହଳା ହେବ ବୋଲି କହନ୍ତି । କବିମାନେ କହନ୍ତି (ଅମରସରିତ ବନେ) ଗଙ୍ଗାଜଳରେ ଏ ରକ୍ତପଦ୍ମ (ସଘନେ) ଅତି ଲଗାଲଗି ହୋଇ ଫୁଟିଛି । ଧଳାସ୍ଫଟିକ ମହଲ ଉପରେ ନାଲି ମାଣିକ୍ୟ ମହଲ ଥିବାରୁ ଏ କଳ୍ପନା, ସ୍ତ୍ରୀମାନେ ( ଅଳ୍ପଜ୍ଞାନ ହେତୁ ) ଚୂନ ଦିଆ ଭୂଇଁରେ ହିଙ୍ଗୁଳ ବୋଳା ହୋଇଛି ବୋଲି ବହୁତ ଭାବ ଭାବି କହନ୍ତି ।
୨୫ । ଏହାପରି ଧଳା ସ୍ଫଟିକର ମଝିମହଲା ଉପରେ ରକ୍ତବର୍ଣ୍ଣ ମାଣିକ୍ୟ ନିର୍ମିତ ଉପର ମହଲର ତେଜ ଓ ନୀଳାନିର୍ମିତ ତଳମହଲାର ନୀଳତେଜ ପଡ଼ିଥିବାରୁ (ଅରୁଣ) ସ୍ୱକାନ୍ତ ସୂର୍ଯ୍ୟ (ଅତିବତ୍ସଳଭାବରେ ଅପତ୍ୟ ସ୍ନେହରେ) ନିଜ ସୁତା ଯମୁନାକୁ କୋଳ କଲାପରି ଜଣାଯାଉଛି । ନୀଳାନିର୍ମିତ ତଳମହଲା ଉପରେ

ଅଛେ ବୁଦ୍ଧି ଯାହାର ଯେତେ
ଅନୁସନ୍ଧାନେ ଉପମା ଦିଏ ସେ ତେତେ । ୨୫

ଅତି ପ୍ରୀତିଭାବ ଧରି ଅଧୋର୍ଦ୍ଧ୍ୱ ସ୍ଥିତିରୁ ନଗ୍ରୀ
ହେବା ବୋଲି ଏକାପରି ଅବା ମେ ପୁରୀ
ଅହର୍ନିଶି ଭେଟ ହୋଇ— ବାରୁ ପୁଣି ଲଜ ପାଇ
ମିଥେ ତନୁ ପାଲଟାଇଲେ କ ବସ୍ତୁରି ।
ଅନ୍ତରତା ଘେନି ଅପାର
ଅଇକ୍ୟ ନୋହିଲ ତଳ ଉପର ପୁରୁ । ୨୬

ଅଛନ୍ତି କେଉଁ ପ୍ରଦେଶେ ଜଳାଧାର କରି ମିଷେ
ପଥିକ ଭୁଲିବା ରସେ ଦେଖିବା ପାଇଁ
ଅତିଘଟନ ପାବଛ୍ଛ ଜଳସ୍ଥାନ ତାର ସ୍ୱଚ୍ଛ
ସ୍ଫଟିକ ଏଣୁ ସେ ସ୍ଥଳୁଁ ସ୍ଥଳୁଁ ଭ୍ରମାଇ

---

ମଣି ସ୍ଫଟିକ ମହଲର ଧଳାତେଜ ପଡ଼ିଥିବାରୁ ତମାଳ ଉପରେ ଚନ୍ଦ୍ରକିରଣ ପଡ଼ିଲ ପରି ଦିଶୁଛି । ଯାହାର ଯେଉଁ ପରିମାଣରେ ବୁଦ୍ଧି, ସେ ସେହି ପରିମାଣରେ ଅନୁସନ୍ଧାନ କରି ଉପମା ଦେଉଛି । ୨୫ । ସେହି ପୁରୀ—କାଶୀ ନଗରୀ । (ଅଧ) ତଳ (ଊର୍ଦ୍ଧ୍ୱ) ଉପରସ୍ଥିତ ହେତୁ—ଭୂମିତଳକୁ ଓ ଆକାଶ ଆଡ଼କୁ ଗୃହମାନ ଥିବାରୁ ସ୍ୱର୍ଗ ଓ ପାତାଳ ଏ ଦୁହେଁ 'ଏହା ସଙ୍ଗେ ଏକାପରି ହେବା'—ଏହା ସଦୃଶ ହୋଇ ପାରିବା ଏହା ଭାବି ଏହି ନଗରୀ କାଶୀ ସଙ୍ଗେ ଅହର୍ନିଶ ସର୍ବଦା ଭେଟ ହୋଇବାରୁ ଲଜପାଇ (କି ବସ୍ତୁରି) କ'ଣ ଭାବି । ପରସ୍ପର ତନୁ—ନିଜ ନିଜ ଶରୀରକୁ । ପାଲଟାଇଲେ—ଲେଉଟାଇ ନେଲେ । ପ୍ରଥମ ଦର୍ଶନରେ ସ୍ୱର୍ଗ ଓ ପାତାଳ ଏହି ପୁରୀ ସଙ୍ଗେ ଏକ ହୋଇ ପାରିବେ ବୋଲି ଭାବିଥିଲେ; କିନ୍ତୁ ଏ ନଗରୀ ସ୍ୱର୍ଗ ଓ ପାତାଳ ଉଭୟଙ୍କ ସଙ୍ଗେ ସମାନ ଅଛେ । ମାତ୍ର ସ୍ୱର୍ଗ, ପାତାଳ ପରି ନୁହେଁ ବା ପାତାଳ ସ୍ୱର୍ଗ ପରି ନୁହେଁ, ଅତଏବ ଏହା ସଙ୍ଗେ ସମାନ ହୋଇ ନ ପାରି ସେ ଦୁହେଁ ଦୂରକୁ ଖସିଗଲେ । ତେଣୁ ସେମାନଙ୍କ ମଧ୍ୟରେ ଏତେ ଦୂରତା ବର୍ତ୍ତମାନ । ୨୬ । ସେହି ନଗରବାସିଗଣ କେଉଁ (ପ୍ରଦେଶ) ଅଂଶରେ (ମିଷେ) ଛଳରେ ପଥିକ ଭୁଲିବା ରସେ—ବାଟୋଇମାନଙ୍କ ଭୁଲ ଦେଖି ଆନନ୍ଦ ଲାଭକରିବା ପାଇଁ, ଜଳାଧାର—କୃତ୍ରିମ ପୋଖରୀ କରିଅଛନ୍ତି । ଅତିଘଟନ—ଅତିସୁନ୍ଦର । ପାବଛ୍ଛ—ପାହାଚ । ଜଳସ୍ଥାନ—ଜଳ ରହିବା ଜାଗା ବା ଶଯ୍ୟା । ସ୍ୱଚ୍ଛ—ନିର୍ମଳ ସ୍ଫଟିକରେ ସେ ତିଆରି କରିଛନ୍ତି । ସେ ପଥିକ ସ୍ଥଳୁଁ ସ୍ଥଳୁଁ ପ୍ରତ୍ୟେକ୍ଷ କରୁଥିଲେ ସୁଦ୍ଧା (ଭ୍ରମାଇ) ଭ୍ରାନ୍ତ ହୁଏ ଅବା ଭୁଲିଯାଏ ।

ଅନୁରୂପ ଦ୍ରବ୍ୟରେ ଯାଞ୍ଚ
ଅବ୍ଜ-କୁମୁଦାଦି ଚର୍ଯ୍ୟେ ଅନନ୍ତ ଭଟ । ୨୭
ଅବଗାହ କରିବାକୁ କେ ସେ ତଟ-ନିକଟକୁ
ଯାଇ ଗର୍ବେ ଚେଷ୍ଟକୁ ପାଇ ରହଇ
ଅମ୍ବୁ ଆଣିବାକୁ କେହି କୁମ୍ଭାଦ ବୁଡାନ୍ତେ ନେଇ
ବାଜ ଚର୍ଯ୍ୟେ ଗଞ୍ଜି ଯାଇ କରୁଁ ପଡ଼ଇ ।
ଅତି ଶ୍ରମେ ପିଇବା ପାଇଁ
ଅଞ୍ଜଳି ବୁଡ଼ାଇ କେହି ଛନ୍ନ ହୁଅଇ । ୨୮
ଅରବିନ୍ଦ ଶୋଭା ଗର୍ବେ ଅଳି * ମାଳ ମାଳ ହୋଇ
ଭଡି ସୁବାସ ନ ପାଇ ଘୂଡ଼ି ଯାଆନ୍ତି,
ଅନାଇ ମିଥ୍ୟା-ମରାଳୀ ମରାଳେ ମିଳନ୍ତି କେଳି—
ଆଶେ ପୁଣି ଭ୍ରାନ୍ତ ଭ୍ରାନ୍ତ ଚକ ହୁଅନ୍ତି ।
ଅହର୍ନିଶି ଏହି ଆଶରେ
ଅପ୍ରମିତ କଉତୁକ ହୋଏ ସେ ସରେ । ୨୯
[ ଛଳଶ୍ଳେଷ ]
ଅସମଶରେ କେ ନର ପ୍ରାଣଧନକୁ ତଜରି—
ମଣ୍ଡଳେ ଗତି ହରନ୍ତି ସ୍ୱଚ୍ଛ ଗତିରେ

---

ଆଦ୍ଭର ମଧ୍ୟ ଅନୁରୂପ ଦ୍ରବ୍ୟରେ ଯେ ଯେଉଁଥିକ ଉପଯୁକ୍ତ, ସେହିପରି ଭଦ୍ୟାଦରେ (ଅବ୍‌ଜ) ପଦ୍ମ (କୁମୁଦ) କରିଁ ପ୍ରଭୃତି ଚର୍ଯ୍ୟେ ତିଆରିଅଛନ୍ତି । ମାଣିକ୍ୟରେ ପଦ୍ମ; ହୀରାରେ କୁମୁଦ ଓ ଇନ୍ଦ୍ରନୀଳରେ ନୀଳୋତ୍ପଳ ଇତ୍ୟାଦି । ୨୮ । ଅବଗାହ—ସ୍ନାନ । ତଟ—(କୃତ୍ରିମ ପୋଖରୀର) କୂଳକୁ । ଚେଷ୍ଟକୁ···ରହଇ—ଅବାକ୍ ହୋଇ ରହିଯାଏ । କୁମ୍ଭାଦ—ମାଠିଆ ପ୍ରଭୃତି ମାଟିପାତ୍ର । ଅତି ଶ୍ରମେ—ଅତି ପରିଶ୍ରାନ୍ତ ହୋଇଁ । ଛନ୍ନ—ଚକିତ । ୨୯ । ସୁବାସ—ସୁଗନ୍ଧ । ମିଥ୍ୟାମରାଳୀ—କୃତ୍ରିମରେ ତିଆରି ହୋଇଥିବା ହଂସୀ । କେଳିଆଶେ ରତିକ୍ରୀଡ଼ା ଆଶାରେ । ଚକ—ଆଶ୍ଚର୍ଯ୍ୟ । ଅହର୍ନିଶି—ନିରନ୍ତର । ଏହି ଆଶାରେ—ଏହିପ୍ରକାରେ । କବି 'ଆଶ' ଶବ୍ଦକୁ ବହୁସ୍ଥଳରେ 'ପରି' (ବତ) ଅର୍ଥରେ ବ୍ୟବହାର କରିଛନ୍ତି । ଅପ୍ରମିତ—ଅପାର । ୩୦ । ଛଳଶ୍ଳେଷ—ଏଥିରେ ଶ୍ଳେଷାର୍ଥଦ୍ୱାରା ଉଭୟ ନିନ୍ଦା ଓ ସ୍ତୁତିର ବର୍ଣ୍ଣନା ପ୍ରକାଶ ପାଇବ । (ନିନ୍ଦା) ତଜରମଣ୍ଡଳେ—ଚୋରମାନେ । ଅସମ ଶରେ—

* ମାଳ ମାଳ [ଖ]

ଅବଳାଏ ପରବର ରତରେ କରି ଆଦର
କାନ୍ତ ବଚନ ଘେନନ୍ତି ରାଗମନ୍ତରେ ।
ଅନୁଲକ୍ଷି ପୁଷ୍ପ ସ୍ତବ ସେ
ଅଛନ୍ତି ଧୀରେ ଭ୍ରମରେ ବଟପି-ପାଶେ । ୩୦

ଅଣୁମାତ୍ରକ ହିଁ ପର— ଗୁଣକୁ ଘେନନ୍ତି ପର—
ପରବତ-ପରକାର ସେ ପୁରନର,
ଅବ୍ଧି ସଦୃଶରେ ଦୋଷ ଥିଲେ କୁଶ-ଅଗ୍ରସମ
ପର ଧରିବା ସହଜ ଗୁଣ ତାଙ୍କର ।
ଅହୋରାତ୍ର ପରୋପକାର—
ଅର୍ଥେ ତନୁ ତନୁ ହେଉଅଛୁ ଯାହାର । ୩୧

ଅଣ୍ଡୀର କୋକିଳ ପୋଷି— ଛନ୍ତି କେତେ ବାରମାସୀ—
ମୁକୁଳ ଖୁଆଇ ଭାଷିବାକୁ ସେ ବାଣୀ
ଅଜାଗେ ପ୍ରେୟସୀ ରୁଷି ବସିଲେ ତାକୁ ଆଶ୍ବାସି
କୁହୁ କୁହାନ୍ତି ଯେ ହସି ଉଠେ ରମଣୀ

---

ଅତି ଉତ୍କୃଷ୍ଟ ଶରହାର (କେ ନର) କୌଣସି ନରର (ପ୍ରାଣଧନକୁ) ଜୀବନ ଓ ଧନକୁ (ସ୍ୱଚ୍ଛନ୍ଦତରେ) ନିର୍ବିବାଦରେ ହରନ୍ତି । ସ୍ୱଭାବ ବର୍ଣ୍ଣନା, ଅସମଶରେ—କାମବାଣ ପ୍ରଭାବରେ । ପ୍ରାଣଧନ—ପ୍ରିୟା । କୁଚ ଉରମଣ୍ଡଳେ—କୁଚ ଓ ବକ୍ଷଦେଶରେ (ସ୍ୱଚ୍ଛନ୍ଦତରେ) ସ୍ୱଚ୍ଛନ୍ଦରେ, (ରାତ୍ରି ହରନ୍ତି) ରାତ୍ରି ଯାପନ କରନ୍ତି । ଅବଳାଏ···ମନ୍ତରେ । (ନିନ୍ଦା) ଅବଳାଏ—ସ୍ତ୍ରୀମାନେ (ପରବର) ଅନ୍ୟ ସ୍ତ୍ରୀର ସ୍ୱାମୀ ସହ (ରତି) କାମକ୍ରୀଡ଼ାରେ,(ଆଦର କରି) ଲିପ୍ତ ହୋଇ (କାନ୍ତବଚନ)ସ୍ୱାମୀ ବାକ୍ୟକୁ (ରାଗମନ୍ତରେ) ରୋଷାନ୍ୱିତ ହୋଇ ଶୁଣନ୍ତି ନାହିଁ । ସ୍ୱଭାବ ବର୍ଣ୍ଣନା—ଅବଳାଏ ପରବର—ଉତ୍କୃଷ୍ଟ ସ୍ୱାମୀ ରତରେ ଆଦର କରି (ରାଗମନ୍ତ) ଅନୁରାଗପୂର୍ଣ୍ଣ ମନରେ (କାନ୍ତବଚନ) ମନୋହର ବଚନକୁ ଗ୍ରହଣ କରନ୍ତି । ୩୧ । ପରର ଅଣୁମାତ୍ର ଗୁଣ ଦେଖିଲେ ତାକୁ ପର୍ବତ ପ୍ରମାଣ ଓ ସମୁଦ୍ର ସଦୃଶ ଦୋଷକୁ କୁଶାଗ୍ରସ୍ଥିତ ଜଳପରି ଗ୍ରହଣ କରନ୍ତି । ଦିବାନିଶି ପରୋପକାର କରି କରି ସେ ନଗରର ଲୋକମାନଙ୍କର ଦେହ କ୍ଷୀଣ ହୋଇ ଯାଇଛୁ । ୩୨ । ଅଣ୍ଡୀର କୋକିଳ—ଅଣ୍ଡୀରା କୋଇଲି । ବାରମାସୀ—ଯେଉଁ ଆମ୍ବଗଛରେ କେବେ ଫଳ ଛାଡ଼ ହୁଏ ନାହିଁ । ମୁକୁଳ—ବଉଳ । ଆଶ୍ୱାସି—ସାନ୍ତ୍ୱନା ବାକ୍ୟ କହି । ଅଳିମାଳ—ଭ୍ରମରସମୂହ । ପାଳିବା—ପୋଷିବା ।

ଅଳିମାଳ ପାଳି ଥାଆନ୍ତି
ଅସାଧ-ମାନିନୀ ଆଗେ ଛୁଟିବାଅନ୍ତି । ୩୨

ଅଚ୍ୟୁତ ଅନନ୍ତ ହରି କେଶବ କୃଷ୍ଣ କଂସାରି
ପଢ଼ି କେତେ ଶୁକ ଶାରୀ ଅଛନ୍ତି ରହିଁ
ଅଳପ ଫୁଟିକି ମାରି ପଢ଼ ବୋଲି ଦେଲେ ଠାରି
ଦିଅନ୍ତି ସେ କର୍ଣ୍ଣ-ମନୋହର କରାଇ ।
ଅନେକ ଅଛନ୍ତି ମରାଳ
ଅକ୍ଷି-ଅଗୋଚର ଖେଳ-ପାରୁଆ-ଖେଳ । ୩୩

ଅର୍ଦ୍ଧକ୍ରୋଶ ପ୍ରତି କହି ରାଜଦାଣ୍ଡ ଅଛି ରହିଁ
ଦୁଇ ପାର୍ଶ୍ୱରେ ଶୋଭୁଅଛି ମନ୍ଦିର
ଅଣୁମାତ୍ର ନାହିଁ କଳି ବିଶ୍ୱକର୍ମା ଆପେ ମିଳି
ସୂତା ଧରି ଅଛି ତୋଳି କରି ସୁନ୍ଦର ।
ଅକ୍ଷି ଦେଖି ନ ପାରେ ଦୂରୁ
ଅପରିମିତ କିରଣ ରତନ-ଭରୁଁ । ୩୪

ଅଗ୍ରଭାଗରେ ଟେକିଣ ପିତୁଳା ସଜୀବ ପଣ
କେତେ ଛନ୍ତି କେତେ ତୋରା ଭଙ୍ଗୀକି କହି
ଅଳପ ହସିଲି ହୋଇ ରହିଁ ଅଛି କେ ଘୁମାଇଁ
ରହିଁଲା ଲୋକର ହୃଦ ଦେଉଛି ଦହି
ଅଧର କେ ଦଶନେ ଭିଡ଼ି
ଅଳସାଇ ସରୁକଟି ଦେଉଛି ମୋଡ଼ି । ୩୫

---

ଅସାଧ ମାନିନୀ—ଯାହାର ମାନ ସହଜରେ ଭୁଟେ ନାହିଁ ଅର୍ଥାତ୍ ଦୁର୍ଜ୍ଜୟମାନବତୀ । ୩୩ । କର୍ଣ୍ଣମନୋହର କରାଇ ଦିଅନ୍ତି—କାନର ସୁଖ ଜାତ କରନ୍ତି । ଖେଳପାରୁଆ—ଲୋଟଣି ପାରା । ୩୪ । ଅର୍ଦ୍ଧକ୍ରୋଶ ପ୍ରତି—ଅଧକୋଶ ଚଉଡ଼ା । ପ୍ରତି—'ପାଘ'—ଖେଳ ବାନ୍ଧଗତ । ରତନଭରୁ—ଅଧିକ ରତ୍ନ ଥିବାରୁ ।୩୫। ଭଙ୍ଗୀ-ଅଙ୍ଗପ୍ରଭୃତିର ଠାଣି । ସଜୀବ ପଣ—ପିତୁଳା ଯେପରି ଜୀବନ୍ତ ପରି ହୋଇଛି ଅର୍ଥାତ୍ ସତ୍ୟ ବୋଲି ଭ୍ରମ ହେଉଛି ।

ଅମ୍ବୁଜ-ଚରଣ ନନ୍ଦ ଜାସା ଚୋଳ କେଉଁ ଇନ୍ଦୀ—
ବରାକ୍ଷୀ ଅନାଇଁ ବନ୍ଦୀ କରୁଛି ମନ
ଅସାବଧାନ ପରାଇ ଗୃହ୍ଣି ନ ଗୃହୁଁଛି କେହି
ସ୍ତନମୂଳୁ ଖସିଯାଇଅଛି ବସନ
ଅଣ୍ଟାରୁ ବି କାଞ୍ଚି ଖସୁଛି
ଅଳପ ଠେକିଲା କର ଧରି ଖୋସୁଛି । ୩୬

ଅଛନ୍ତି ଯେତେ ସାମାନ୍ୟା ସୌନ୍ଦର୍ଯ୍ୟାଦି-ଗୁଣେ ଧନ୍ୟା
ତୁଳେ ତାଙ୍କୁ ସୁରକନ୍ୟା ସରି ନୁହନ୍ତି
ଅପାଙ୍ଗ-ଗତି ଗତିରେ କେଳିକ୍ଷପିତ-ରତିରେ
ମହାଯତି-ତତି-ମତି ମନ୍ଥି ଦିଅନ୍ତି ।
ଅଟନ୍ତି ସେ ମୋହମନ୍ତ୍ର
ଅକ୍ଷି-ବନ୍ଦୀ-ମନ୍ଦିର ମାଦକ ଗିତର । ୩୭

ଅନ୍ତିକରେ କେବ-ହାଟ ବସଇ ଅତି ଉଚ୍ଚାଟ
ଯହିଁ ନାନା ରତ୍ନ-ହାଟକାଦି ସୁଲଭ
ଅଖିଳ ପଦାର୍ଥ ତହିଁ ଯାହା ଯେ ଲୋଡ଼େ ମିଳଇ
ଜନକ ଜନନୀ ଦୁଇ ଏକା ଦୁର୍ଲ୍ଲଭ
ଅନୁରୂପ ତା'ପରି ସେହି
ଅମର-ନରଭୁବନେ ସମାନ ନାହିଁ । ୩୮

ଅଳକାପୁର ସମାନ ସର୍ବଧନ-ନିକେତନ
କପର୍ଦ୍ଦୀ ଆଚଯାତରୁ କୈଳାସ ନ ସେ

---

୩୬ । ଇନ୍ଦୀବରାକ୍ଷୀ—ଯାହାର ଆଖି ନୀଳକଇଁ ପରି । ପରାଇ-ପ୍ରାପ୍ତ । ବି-ମଧ୍ୟ ।
୩୭ । ସାମାନ୍ୟା—ବେଶ୍ୟା । ଧନ୍ୟା—ପ୍ରଶଂସାଯୋଗ୍ୟା । ଅପାଙ୍ଗଗତି-ଗତିରେ —ଆଡ଼େଇଁ ଚାହିଁବା ଠାଣିରେ । ମହାଯତିତତିମତି-ମହାଯୋଗୀମାନଙ୍କର ମନକୁ ।
୩୮ । ଅନ୍ତିକରେ—ନିକଟରେ । ଅମର ଓ ନର ଭୁବନେ—ସ୍ୱର୍ଗ ଓ ମର୍ତ୍ତ୍ୟରେ ।
୩୯ । ସେ ହାଟ ଅଳକାପୁର (ସମାନ) ପରି । ସମାନ ବିଶେଷଣ ଦ୍ୱାରା ସାମ୍ୟ ଦେଖାଉଅଛନ୍ତି । ଅଳକା—ସର୍ବଧନ ନିକେତନ ବା ସମସ୍ତ ପ୍ରକାର ଧନର ଗୃହ । କାରଣ ସମସ୍ତ ଧନର ଅଧିପତି କୁବେରଙ୍କର ସେଠାରେ ବାସଗୃହ ଅଛି ।

ଅମରାବତୀ ସେ ପୁଣ ବାସବ-ସୁରେ ଭୂଷଣ
ରମ୍ଭା ଐରାବତ ଆଦି ଥାନ୍ତି ଅନିଶେ ।
ଅବଧି ନାନା ରତ୍ନ ବସନ୍ତି
ଅମ୍ବୁଦ ଚଞ୍ଚଳା ଯହିଁ ଶୋଭନ ଅତି । ୩୯
ଅପସରା-ନାରୀ ପରି ଚତୁରତର ପସରେ
ସୁଗନ୍ଧ ସୁବାସ ଭୂଷଣରେ ସୁନ୍ଦର
ଅଧର ବିଦ୍ରୁମ ମୋତି— ମାଳା ଶୁଭ୍ର ଦନ୍ତପନ୍ତି
ହୀରା ନଖ ସୁଭ୍ରମର କୁନ୍ତଳଭାର ।
ଅଛି ଦିବ୍ୟ ଦର୍ପଣ ମୁଖ
ଅଟେ ଗଣ୍ଡ ତାଙ୍କ ନେତ୍ର ତୀକ୍ଷ୍ଣ-ବିଶିଖ । ୪୦
ଅନାଇ ନେ ରଙ୍ଗିଣିକ କହଇ ଛଳ ବାଣୀକି
ତୁମ୍ଭେ ଏ ହାଟେ ଆଣି କି ବିକ ପଟମ

---

ହାଟ ମଧ୍ୟ ସମସ୍ତ ଧନର ଭଣ୍ଡାର ପରି । କୈଳାସରେ (ଜଟାର୍ଦ୍ଧୀ) ମହାଦେବଙ୍କର ଆତଯାତ ହେଉଥାଏ । ହାଟରେ ମଧ୍ୟ (ଜଟାର୍ଦ୍ଧୀ) ଯେଉଁମାନଙ୍କର ଟଙ୍କା କଉଡି ଅଛି, ସେମାନଙ୍କର ଯିବା ଆସିବା ଲାଗିଥାଏ । ଅମରାବତୀ—ଇନ୍ଦ୍ରଙ୍କର ନଗର । ବାସବ—ଇନ୍ଦ୍ର । ସୁର—ଦେବତା । ଭୂଷଣ—ଭୂଷିତ । ରମ୍ଭା—ସେହି ନାମ ଧାରିଣୀ ଅପ୍‌ସରା । ଐରାବତ-ଇନ୍ଦ୍ରଙ୍କ ହସ୍ତୀ । ଅନିଶେ-ସର୍ବଦା । ହାଟପକ୍ଷରେ ବାସ—ବସ୍ତ୍ର । ବସୁ—ରତ୍ନ । ରମ୍ଭା—କଦଳୀ । ଐରାବତ—ନାରଙ୍ଗ ବା କେଉଁଠ ଫଳ । ନାନା ରତ୍ନ ଥିବାରୁ ହାଟ ସମୁଦ୍ର ତୁଲ୍ୟ । ଏ ହାଟ (ଅମ୍ବୁଦ) ମେଘପରି । ମେଘରେ, (ଚଞ୍ଚଳା) ବିଜୁଳି (ଶୋଭନ) ସୁନ୍ଦର ଦିଶେ; ଏହା (ଚଞ୍ଚଳା) ଲକ୍ଷ୍ମୀ ଅର୍ଥାତ୍ ଧନରେ ମଣ୍ଡିତ । ୪୦ । (ପସରା) ଦୋକାନ ଅପସରା ନାରୀ ପରି । ସୁଗନ୍ଧ—କସ୍ତୁରୀ ପ୍ରଭୃତି । ସୁବାସ—ଉତ୍ତମ ବସ୍ତ୍ର । ଭୂଷଣ—ଅଳଙ୍କାରରେ ମଣ୍ଡିତ । ବିଦ୍ରୁମ—ପୋହଳା । ମୋତିମାଳା ତାହାର (ଦନ୍ତପନ୍ତି) ଦାନ୍ତପାଟି, ହୀରା ତାହାର ନଖ । ଉତ୍ତମ ଭ୍ରମର—ଚଅଁର ତାହାର କୁନ୍ତଳଭାର ବା କେଶଗୁଚ୍ଛ । ଦର୍ପଣ—ଆରସି । ତାଳକୁ ଗଣ୍ଡ ସଙ୍ଗେ, ମୁଖକୁ ଦର୍ପଣ ସଙ୍ଗେ ତୁଳନା କରାଯାଇଅଛି । ତୀକ୍ଷ୍ଣ ବିଶିଖ—ଶାଣଦିଆ ଶର । ୪୧ । ରଙ୍ଗିଣୀ—ଏକ ଶ୍ରେଣୀର ନାରୀ । ଛଳବାଣୀ—ଦୁଇପ୍ରକାର ଅର୍ଥଯୁକ୍ତ କଥା । ପଟମ—ଲୁଗା । ଶ୍ଳେଷାର୍ଥ—ନାରୀ । ସୁନାରୀ—ବଣିଆ, ଶ୍ଳେଷ—ଦିବ୍ୟ ସ୍ତ୍ରୀ ।

ଅଳ୍ପଦାମେ ସେ ଜାଣଇ — ସୁନାର ଦୋକାନୀ ଭଣି
ସୁରୂପାସୁତାଙ୍କି ଦେଖୁ ପସରା ବେଳା ।
ଅଛି ସତ୍ରୁକଟିକ ଜାଣି
ଅଧିକ ମୂଲ ଦେବ ତୁ ଦେଖୁକ ଆଣି ? ।୪୧

ଅନ୍ତରେ କଂସାରୀ ନାରୀ — କ ଦେ ଜଣେ ଭଙ୍ଗୀ କରି
ଏ ନୂଆ ପାତଳୀଟିକ ନିଅନ୍ତୁ ମୁହିଁ
ଅବଳା ବୋଲେ ପାତଳୀ — ପ୍ରମାଣ ଏ ମାନ ଭାରି
ହୃଦ ତା ହାତେ ଆଣିଲେ ଜାଣିମ ଯାଇଁ ।
ଅନୁରାଗେ କହେ ସେ ଘର
ଅବଶ୍ୟ ମୁଁ ଚାଲିଥାଇ କାହିଁକୁ ନେବ । ୪୨

ଅନାଇ କେତେ ସୁନାରୀ — ସୁନାରୀ ପାଖେ ପଶୁଛି
ଦେଖୁ କ ସୁରୂପା ରତି ସାତ ନିଅନ୍ତୁ
ଅଙ୍ଗନା ବୋଲଇ ଯେତେ — ନେଇ ଆସ ଦେବା ଗେଲେ
ଚୂଳୀ-ଉପରେ ପକାଇ ସରସେ ରତି ।
ଅନ୍ୟାରେ ନାହିଁ ମୋ ବଳିଭ
ଅଇଲେ ସେ ଲେଉଟିଲେ ରତନ ମିଳବ । ୪୩
ଅନ୍ୟେ ବାଳାର କେ ବୋଲେ — ଫରୁଠକ ବଠା ଥିଲେ
ଦୁଇଗୋଟି ଦିଅ ଅଛୁ ଆମ୍ଭର କାମ

ସୁରୂପା ସୁତା — ଖାଣ୍ଟି ରୂପାରେ ତିଆରି ଅଙ୍ଗୋପସୂତା (ଶ୍ଳେଷ—ସୁନ୍ଦରୀ କନ୍ୟା) କଟିକ ଜାଣି—କଟିମାପରେ ( ଶ୍ଳେ—ସରୁକଟି କନ୍ୟା ବୋଲି ବୁଝି ) ୪୨ । ପାତଳୀ—ତସଲା, ପାତ୍ରବିଶେଷ ( ଶ୍ଳେ—ମୁଗ୍ଧା, କ୍ଷୀଣାଙ୍ଗୀ ) ୪୩ । ସୁନାରୀ-ସୁନାରୀ—ବଣିଆଜାତୀୟା ସୁନ୍ଦରୀ ସ୍ତ୍ରୀ । ସୁରୂପା—ଖାଣ୍ଟି ଶୁଦ୍ଧ ରୂପା । ରତି ସାତ—ସାତ ରତି ପରିମାଣ । (ଶ୍ଳେଷରେ—ସୁରୂପା—ସୁନ୍ଦରୀ) (ସମ୍ବୋଧନ) ରତି—କାମକ୍ରୀଡ଼ା । ତଜ୍ଜନିତ (ସାତ) ଶାତ-ସୁଖ । ଉତ୍ତର--ଚୂଳୀ —ନିକଟ । ଶ୍ଳେଷରେ ଚୂଳାପୁଞ୍ଜି ଶେଯ । ସରସେ ରତି—ଦୋଷହୀନ କାଇଞ୍ଚ (ଗୁଞ୍ଜ) ଅନ୍ୟ ପକ୍ଷେ—ସାଗ୍ରହ କାମକ୍ରୀଡା । ଲେଉଟିଲେ—ଖୋଜିଲେ (ରତନ) ବହୁମୂଲ୍ୟ ପଥର ମିଳବ । ଅନ୍ୟ ପକ୍ଷେ-ରତି-କାମକ୍ରୀଡା । ନ ମିଳବ — ମିଳବ ନାହିଁ ।୪୪। ଫରୁଠକ—ଫରୁଆ । ଅନ୍ୟତ୍ର ତଡାକାର ସ୍ତନହିଁ ଲକ୍ଷ୍ୟ । ବଠାବଠୀ —ପାନ ଛେଚିତ ରଖିବାର ପାତ୍ର । ଅନ୍ୟପକ୍ଷେ—ଦେହ୍ଯ ଧନ । ଉଜ୍ଜ୍ୱଳପାତ୍ର—

ଅନାଇଁ ସେ କଟେ ନାହିଁ ବନ୍ଧାବନ୍ଧୀ ଅ.ନ୍ସ ବହିଁ
ଦେବା ପେ ଦେଖି ଉଜ୍ଜ୍ୱଳ ପାହ ଉତ୍ତମ
ଅନାଇ ସେ କୁନ୍ଦନ ଧାନ୍ଧି
ଅଛୁ ସବୁ ଗିନା-ଗଣ୍ଡ ନେଲେ ହିଅନ୍ତୁ । ୪୪
ଅଗ୍ରେ ବଣିକ ନାଗର କେ କଟେ ଆଗୋ ନାଗର
ନାଗେଶ୍ୱର କାରବାର ଅଛୁ ତୁମ୍ଭଠାରେ
ଅନୁବଚନେ ସେ କହୁ ଏ ବ୍ୟାପାର ଯେବେ ନାହିଁ
ଉରୁଜ ଟେକ କେମନ୍ତେ ହେଲା ଆମ୍ଭର ।
ଅନୁରୂପ ଗ୍ରାହକ ପାଇ
ଅତନୁ ରସରୁ ଦେବ ଜୁଆଣୀ ମୂର୍ତ୍ତି । ୪୫
ଅଛୁ କ ଗୋ ଗୋପାଳୁଣୀ ତୁମ୍ଭ ଏ ଦୁଧରେ ପାଣି
ମିଶି ବଣୁଅଛୁ ଅଳ୍ପ ଦଉଲ ହୋଇ
ଅଧୀରେ ସେହୁ ବୋଇଲା କ ଗୋରସ ନ ରୁଚିଲା
ମଣ୍ଡି ପଡ଼ା ଛୁଡ଼ା ଦୁଧ ଖୋଜ ହେ ଯାଇ ।

---

ପାଲିସ ହୋଇଥିବା ବାସନ । ଅନ୍ୟପକ୍ଷେ—ଶୃଙ୍ଗାରୀ ନାୟକ । କୁନ୍ଦନ କାନ୍ତ—କୁନ୍ଦରେ ବସାଯାଇ ମଜା ହୋଇଥିବାରୁ ଝଟକ । ଅନ୍ୟପକ୍ଷେ—ସୁନାପରି ଦେହର ବର୍ଣ୍ଣ । ଶଣ୍ଡ, ଗିନା, ଗଣ୍ଡ—ସ୍ୱନାମଖ୍ୟାତ ପାତ୍ରମାନ । ଅନ୍ୟନ୍ତ—ସରାଗୀ ନାଗର—ଅନୁରାଗୀ ନାଗର । ୪୫ । ବଣିକ ନାଗର—ପୋଟଳି ବଣିଆଜାତୀୟା ସ୍ତ୍ରୀ । ନାଗର—ଶୁଣ୍ଠି । ନାଗେଶ୍ୱର—ଔଷଧାର୍ଥେ ବ୍ୟବହୃତ ପୁଷ୍ପବିଶେଷ । ଅନ୍ୟପକ୍ଷେ—ନାଗର ନାଗେଶ୍ୱର—ରସିକଶ୍ରେଷ୍ଠ । ଉରୁଜଟେକ—ବୈଶ୍ୟବୋଲି ବଡ଼ପଣ । ଅନ୍ୟପକ୍ଷେ, ଉରୋଜ—ସ୍ତନ । ଟେକ—ବୃଦ୍ଧି । ଅନୁରୂପ—ଯୋଗ୍ୟ । ଅତନୁ ରସରୁ—ବଡ଼ ବଡ଼ ଅର୍ଥାତ୍ ବହୁମୂଲ୍ୟ ରସରୁ (ପାରଦ ପ୍ରଭୃତି ଧାତୁଦ୍ରବ୍ୟଠାରୁ ଆରମ୍ଭ କରି ଜୁଆଣୀ ପର୍ଯ୍ୟନ୍ତ ସମସ୍ତ ଦ୍ରବ୍ୟ ଦେଇ ପାରିବି) । ଅନ୍ୟପକ୍ଷ—କନ୍ଦର୍ପ ରସ ଦେବୁ (ଜୁ)—ବଳ ଓ (ଆଣୀ) ଠାଣି, ତେଜଃ ଦେବି । କାମଶାସ୍ତ୍ରମତେ ମୁଗ୍ଧା ସଙ୍ଗମ ବଳ-କାନ୍ତି ଆୟୁ ବୃଦ୍ଧି କର । ନିଜର ମୁଗ୍ଧାତ୍ୱ ଏହାଦ୍ୱାରା ବ୍ୟକ୍ତ କଲା । ୪୬ । ପାଣି—ହସ୍ତ ଓ ଜଳ । ଗୋରସ—ଦୁଗ୍ଧ । ଅନ୍ୟପକ୍ଷେ—ଗୋ' (କୋମଳ ସମ୍ବୋଧନ) ରସ—ଶୃଙ୍ଗାର ରସ । ମଣ୍ଡିପଡ଼ା-ଜୁଆ ହିଆଯାଇଥିବା ।

ଅମୃତରୁ ସ୍ୱାଦୁ ଏ ଜାଣ
ଅବଶ୍ୟ ନ ନେଲେ ଦଣ୍ଡି ହେବ ଯେ ପୁଣ । ୪୬

ଅଙ୍ଗେ ପଣଅର ନାସ୍ତି—    କି କେ କହେ ଭଙ୍ଗୀକରି
ଏ ତୁମ୍ବୀ କି ଦରେ ଧରି ବିକ ତୁମ୍ଭର
ଅବଳା ବୋଲଇ ଦୁଇ    ସାଁଉକାରେ ଦୁଇ ଦେଇ
ଭୋଗୀ ଲୋକ ଜାଣଇ ଏହାର ମଧୁର ।
ଅଛୁ ଯାର କପର୍ଦ୍ଦୀ-ସେବା
ଅବା ନେବ ଆସି ହିଁ ତ ଯାଉଛି ଦିବା । ୪୭

ଅଙ୍ଗନାକୁ କୁମ୍ଭକାର    କହେ କି ଗୋ ତୁମ୍ଭେ ମୋର
ଘଟ ନେବାକୁ ବିଚାର କର କି ଚିତ୍ତେ
ଅବନତମୁଖୀ ବୋଲେ ହାସେ    ବେନିକୁମ୍ଭ ମୋର ବାସେ
ଅଛି ତା' ଦେଖି ଏ ଘଟ ଛାଡ଼ିବୁ ତୁମ୍ଭି
ଅହର୍ନିଶି ରସ ପୂରୁଛି
ଏଣୁ ଏ ତା' ଠାଣ ଶୋଭା ଊଣା ନୋହୁଛି । ୪୮

ଅନ୍ୟ କେ ପାଟବଣୀର    ବୋଲଇ କେଉଁ ନାଗର
ଭିଡ଼ାଟାଏ ଦେବୁ କି ଗୋ ଆମ୍ଭଙ୍କୁ କହ

---

ଅନ୍ୟପକ୍ଷେ ଭୂମିସ୍ପର୍ଶୀ । ଦଣ୍ଡି-ଦୁଗ୍ଧ ବିକାଳି । ଅନ୍ୟତ୍ର ଦଣ୍ଡହେବ-ସନ୍ତପ୍ତ ହେବ ୪୬ । ପଣଅର ନାସ୍ତି—ପରିବା ବିକ୍ରୟ କରୁଥିବା ସ୍ତ୍ରୀ । ତୁମ୍ବୀ—ଲାଉ । ଅନ୍ୟତ୍ର ସ୍ତନ ଲକ୍ଷ୍ୟ । ଦରେ—ମୂଲ୍ୟରେ । ଦୁଇ ସାଁଉକାରେ—ଦୁଇ ସୁକରେ ଅର୍ଥାତ୍ ଆଠଅଣାରେ । ଅନ୍ୟପକ୍ଷେ—(ଦୁଇ) ନାୟକ ଓ ନାୟିକା ଉଭୟଙ୍କର (ସାଁଉକାରେ—ସ୍ୱୀକାରେ) ପରସ୍ପର ରାଜିରେ । ଭୋଗୀ—ଉପଭୋଗ କରିଥିବା ଲୋକ ଓ ବିଳାସୀ । କପର୍ଦ୍ଦୀ ସେବା—କଉଡ଼ିଆ ଲୋକ ନିକଟରେ ଚାକିରି କରୁଥିବା ଅନ୍ୟତ୍ର ଶିବ-ସେବା । ଆସିହିଁ ତ···ଦିବା—ନିତି ନିତି ଆସି (ଗୃହକୁ) ଫେରି ଯାଉଛି । ଅନ୍ୟତ୍ର—ଯୌବନ ଦିନକୁ ଦିନ ଚାଲିଯାଉଛି । ୪୮ । ଘଟ—ମାଠିଆ ଓ ପ୍ରାଣ । ବାସେ—ଗୃହରେ ଓ ଲୁଗାମଧ୍ୟରେ । ରସ—ଜଳ ଓ ଶୃଙ୍ଗାର ଭାବ । ୪୯ । ଭିଡ଼ା—ପାଟଫୁଲ (ଅନ୍ୟତ୍ର ଆଲିଙ୍ଗନ) । ଅଛିଣ୍ଡା—ଛିଣ୍ଡି ନ ଥିବା (କଉଚ) ବ୍ରତ ନେବକି ? ଅନ୍ୟତ୍ର ଅଛି, ନବରତ୍ନ ନେବ କି ? ଅଷ୍ଟ ଅଷ୍ଟଗୁଣ—ଚଉଷଠି । ସୂତରେ ମଧ୍ୟ ଚଉଦ, ଚଉଷଠି ଗ୍ରନ୍ଥି ପକାଯାଏ

ଅନାଇ ସେ ବୋଲେ ଭଣ୍ଡା— ଭଣ୍ଡ ଯେବେ ଅଛୁ ଲେଣ୍ଡା
ଆଚ୍ଛାରଙ୍କ କରି ଦେବା ସଇର ନୋହ
ଅଚ୍ଛିନ-ବଚନ କି ନେବ
ଅଷ୍ଟ ଅଷ୍ଟ ଗୁଣ ବନ୍ଧନରେ ଅପୂର୍ବ । ୪୯

ଅଖିଳ କୁଳ ଏ ପୁର— ବର୍ଣ୍ଣନା-ଶ୍ରମ ବହୁଳ
ସ୍ଖଳନ ଥିଲେ ଏ ଦୋଷାଦୋଷ ନ ଧର
ଅଧୀରେ ଶୁଣି ଦଇବେ ବଧିର ପରିଏ ହେବେ
ବିମୁଦିତ ହେବ ଯେଣୁ କର୍ଣ୍ଣକୁହର
ଅୟେ ଜନେ ! ସିତ ଦବତ—
ଅଙ୍ଗ-ଚନ୍ଦ୍ର ଟଣ୍ଡ଼ି ଭଞ୍ଜରାଜ ଦୁରିତ । ୫୦

---

# ବଂଶ ଛାନ୍ଦ

## ଶିବଙ୍କର ବିବାହଯାତ୍ରା

ରାଗ—ମାଳଶ୍ରୀ

ଅପୂର୍ବ ରସ ଶୁଣ ଧୀର ନର
ଅମୃତରୁଁ ଅପାର ମଧୁରତର ।
ଅନ୍ତକ-ଛେଦ-ଖଣ୍ଡନ-ଖଡ଼୍ଗ
ଅରିଷ୍ଟ-ଦୁଷ୍ଟ-ମୂଷିକ-ଉରଗ
ଅଭୀଷ୍ଟ ଦେବାକୁ ସୁରତରୁ ତାକୁ
ସୋଚିଷକେ ନୋହେ ସରି
ଅଜ୍ଞାନ-ଅନ୍ଧାର-ହରଣେ ହରି । ୧

---

୫୦ । ଅଖିଳ କୁଳ— ଅସଂଖ୍ୟ ଗୃହବିଶିଷ୍ଟ । ଏ ପୁର—କାଶୀ ନଗର । ଅଧୀରେ—ଅପଣ୍ଡିତ ଅର୍ଥାତ୍ ମୂର୍ଖମାନେ । ସିତ…ଚନ୍ଦ୍ର—କୈଳାସର ଚନ୍ଦ୍ର ସଦୃଶ । ଦୁରିତ—ପାପ ।

### ବଂଶ ଛାନ୍ଦ

ଅନ୍ତକ…ଖଡ଼୍ଗ—ଯମଯନ୍ତ୍ରଣା ଛଡ଼ାଇବାକୁ ଖଣ୍ଡାପରି । ଅରିଷ୍ଟ…ଉରଗ—ଦୁର୍ଦ୍ଦଶାରୂପ ମୂଷାର ବିନାଶ ପାଇଁ (ଉରଗ) ସର୍ପସଦୃଶ । ଅଭୀଷ୍ଟ ଦେବାକୁ-ମନଃକାମନା ପୂର୍ଣ୍ଣ କରିବାକୁ । ସୁରତରୁ-କଳ୍ପବୃକ୍ଷ । ହରି-ସୂର୍ଯ୍ୟ ।

ଅନୁଜ୍ଞା କଲେ ତ୍ରିଦିବ-ଲୋକସାଇଁ
ଅନୁଚର ଗୁରୁ ବାହକୁଁ ଚାହିଁ
ଅମ୍ବିକା-ବନ୍ଧୁ-ବଚନ ହେବ ଆଜ
ଅନୁରୂପେ ସୈନ୍ୟ ଧରୁର ସାଜ
ଅମର କିନ୍ନର— ଯକ୍ଷ ବିଦ୍ୟାଧର
ଋଷି ଅପସରାଗଣ
ଅଷ୍ଟଦିଗପାଳ ସଙ୍ଗତେ ଆଣ । ୨
ଅବିଳମ୍ବେ କଲେ ଗୁରୁ ସଞ୍ଚାର
ଅନାଦେଶ ବାଜିଲା ବାଜଣା ବାର ।
ଆଇଲେ ବଳ ଦଶଦିଗୁଁ ବାହି
ଅବନୀ-ତଳ ହୋଇଗଲା ଗୁହି ।
ଅଧମ ମଧ୍ୟମ ଉତ୍ତମ ତ୍ରିବିଧେ
ତ୍ରିପୁରଲୋକ ଆଇଲେ
ଋଣୁଏ ସରବ ସେ କ କହିଲେ । ୩
ଅପରିଚ୍ଛିନ୍ନ-ମାନ ବସ୍ତୁଗଣ
ଅତ୍ୟନ୍ତ ଯୋଗ୍ୟ ଅଇଲେ ଆପଣ
ଅଭିନବ-ନୀଳ-ଜଳଦ-କାନ୍ତି
ଅସିତ ରତନରେ ଶୋଭା ପାନ୍ତି
ଅରି-ଦର ଅରି— ବନ-ଗଦା କର—
ଚତୁରରେ ଶୋଭାପାଏ
ଅନ୍ତେ ସର୍ବେ କମଦେବ-ପ୍ରାଏ । ୪
ଅମ୍ବୁଜ-ଆସନ ମରାଳ ଚଢ଼ି
ଅଗ୍ରେ ଭେଟିଲେ ବେଦସୂକ୍ତ ପଢ଼ି ।

---

୨ । ତ୍ରିଦିବଲୋକସାଇଁ—ତିନି ଭୁବନର ସ୍ୱାମୀ । ୩ । ସଞ୍ଚର—ଗମନ । ବାଜଣାବାର—ବାଜଣାସମୂହ । ବଳ—ସୈନ୍ୟ । ୪ । ଅପରିଚ୍ଛିନ୍ନ ମାନ—ଯାହାର (ମାନ) ପରିମାଣ (ଅପରିଚ୍ଛିନ୍ନ) ନିର୍ଦ୍ଦିଷ୍ଟ ନୁହେଁ, ଅକଳନ୍ତ । ଅଭିନବ···କାନ୍ତି—ନୂଆ ମେଘ ପରି ନୀଳବର୍ଣ୍ଣ । ଅସିତରତନ—ନୀଳମଣି । ଅରି—ଚକ୍ର । ଦର—ଶଙ୍ଖ । ଅରବିନ୍ଦ-ପଦ୍ମ । ୫। ଅାମ୍ବୁଜ ଆସନ-ବ୍ରହ୍ମା

ଅମର-ଈଶ୍ୱର ପ୍ରଣମେ ଆସି
ଅଭିଷବତ କଲେ ଅଷ୍ଟ ବସି
ଅରୁଣ ରଥରେ ଭେଟିଲା ମାଥରେ
ହାତ ଯୋଡି ଯୋଡ଼ି କରି
ଅବ୍ଜ ଦରଶନ କଲା ଏପରି । ୫
ଅଷ୍ଟେଶ ମୂର୍ତ୍ତିଧର ଚନ୍ଦନ
ଅଗ୍ରେ ବନ୍ଦନ କଲା ଦରଶନ
ଅନଳ ମହୀରେ ମୁଣ୍ଡ ମାଡିଲେ
ଅନନ୍ତ ଚରଣେ ଯାଇଁ ପଡ଼ିଲେ
ଅମ୍ବୁନିଧିବାସୀ କୁବେର ହିଁ ଆସି
ଜୟ ଜୟ ସ୍ତୁତି ଭଣି
ଅଞ୍ଜଳି କରେ ଓଳଗିଲେ ପୁଣି । ୬
ଅନେକ ବସିଛନ୍ତି କାଖାକାଖି
ଅମରଗଣଙ୍କୁ ସଙ୍ଗତେ ଦେଖି
ଅଙ୍ଗରେ ସ୍ୱର୍ଣ୍ଣବର୍ଣ୍ଣ ମିଶାଇ
ଅଳ୍ପ ଅଳ୍ପ ହସୁଛନ୍ତି ଗୋସାଇଁ
ଅନୁରୂପ ସ୍ଥାନ— ମାନଙ୍କେ ସୁମନ
ଭେଟି ହେଉଛନ୍ତି ଜଣ
ଅକଥନ ଶୋଭା ଦିଶେ ସେ ସଭା । ୭
ଅତ୍ରି ଆଦି ସପ୍ତ-ଋଷି ଆସିଲେ
ଅଦ୍ୱୈତ ସୂକ୍ତ ସ୍ତବ ପ୍ରକାଶିଲେ
ଅଗସ୍ତି ନାରଦ ଶୁକ ଗୌତମ
ଅଥର୍ବ ବ୍ୟାସାଦି କଲେ ପ୍ରଣାମ

---

ମରାଳ—ହଂସ । ଅମରଈଶ୍ୱର—ଇନ୍ଦ୍ର । ଅରୁଣ—ସୂର୍ଯ୍ୟ । ମାଥରେ—ମୁଣ୍ଡରେ । ଅବ୍ଜ-ଚନ୍ଦ୍ର । ୬ । ଅନନ୍ତ—ବାସୁକି । ଅମ୍ବୁନିଧିବାସୀ—ବରୁଣ । ୭ । ସଙ୍ଗତେ—ସୈନ୍ୟ ସହିତ । ଅଦ୍ୱୈତ-"ସର୍ବଂ ଖଲ୍ୱିଦଂ ବ୍ରହ୍ମ ନେହ ନାନାସ୍ତି କିଂଚନ' ଇତ୍ୟାଦି ଈଶ୍ୱରଙ୍କର ଏକତ୍ୱ ପ୍ରତିପାଦକ ସୂକ୍ତ । ଏହାଦ୍ୱାରା

ଅକ୍ଷର ଅନ୍ତର          ଲଭି ପ୍ରକାଶିତ—
ବର୍ଣ୍ଣପୁଷ୍ପମାନ ଝଲେ
ଅଙ୍ଗୁଳି ଛନ୍ଦ ମୁଦ୍ରା ଦେଖାଇଲେ । ୮
ଅଧରେ ବଂ ବଂ ବାଦ୍ୟ କେ ବଜାଇ
ଅତି ଉଚ୍ଚେ ହର ହର ବୋଲଇ
ଅଙ୍ଗନ୍ୟାସାଦି କରି ଧ୍ୟାନଭରେ
ଅନୁଷ୍ଠାନ-ବିଧିମାନ କେ କରେ ଯେ
ଅନଳକୁ ଅଧା—          ମାର୍ଗୁ ତୋଳି ଊର୍ଦ୍ଧ୍ୱ—
ରନ୍ଧ୍ରେ ରଖି ଯୋଗ-ବଳେ
ଅନାଇଛି ଜ୍ୟୋତିକି କେ ନିଶ୍ଚଳେ ! ୯

ଅଚଳେ ଆନନ୍ଦାଦି ସରସ୍ୱତୀ
ଅପରେ ଭାରତୀ ବୈଷ୍ଣବ ଯତି
ଅପର ଦୂରୁଁ ଶିବ ଶିବ ଭଣି
ଅନୁସରି ଯୋଡ଼ି ଆସନ୍ତି ପାଣି
ଅଷ୍ଟକମାନଙ୍କୁ          ସ୍ପଷ୍ଟ କରି ଏକ—
ନିଷ୍ଠାରେ ଦେଉନ୍ତି ନେକି
ଅକାର ଉକାର ମକାର ଦେଇ । ୧୦

ଅଧିପୂଜ କରନ୍ତି କେ ନିପୁଣ
ଅଙ୍ଗରେ ଜାତ ହୋଏ ରୋମୋଦ୍‌ଗମ
ଅର୍ଥ ଦେଉନୁ ଦେଉନୁ ଅଙ୍ଗିର-ରନ୍ଧ୍ରେ
ଅଶ୍ରୁ ଚଳି ପଡ଼ୁଅଛି ନୟନୁ
ଅଗ୍ନି ଦୁଇ ତୋଳି          ଦେଇ କରତାଳୀ—
ନାଚଇ କେ ଉଚ୍ଚ କରେ
ଅଭିଷେକ ମାନସିକେ କେ କରେ । ୧୧

---

ଅତ୍ରି ଆଦିଙ୍କୁ ଜ୍ଞାନଯୋଗୀ ବୁଝାଉଛି । ନାରଦାଦି କର୍ମଯୋଗୀ । ଅକ୍ଷର—ଅବିନାଶୀ । ୧୦ । ଆନନ୍ଦାଦି—ଆନନ୍ଦ, ପ୍ରକାଶ, ଭାରତୀ—'ପୁରି', 'ଗିରି', 'ବନ' ଇତ୍ୟାଦି ପଦଧାରୀ । ଅକାର···ଦେଇ—( ଅ+ଉ+ମ୍=ଓଁ ) ଓଁକାରକୁ ଉଚ୍ଚାରଣ କରି ସାରି ।

ଅଙ୍ଗ ବଙ୍ଗଦେଶ କଳିଙ୍ଗପାଳ
ଅଯୋଧ୍ୟା ନେପାଳ କାଶ୍ମୀ ଭୂପାଳ
ଅବନ୍ତୀ ଦ୍ୱାରକା ଦ୍ୱରାଠଭୂପ
ଅବ୍ଜକୋଣା ଅର୍କକୋଣା ମହୀପ
ଅଦ୍ଭିମାଳ ଗୁଜ— ରାଠ ମହାରାଷ୍ଟ୍ର
ଓଡ୍ରରାଷ୍ଟ୍ର ତୈଲଙ୍ଗିକ
ଆଇଲେ ଗାନ୍ଧାର ଗୋପନାସ୍ତକ । ୧୨
ଅଶ୍ୱପତି ଗଜପତି ନୃପତି
ଅନ୍ତ୍ୟଜପତି ପୁଣି ଛତ୍ରପତି
ଅର୍କବଂଶୀ ସୋମବଂଶୀ ଚୌହାଣ
ଅପରେ ଗଙ୍ଗବଂଶୀ କ୍ଷତ୍ରିଗଣ
ଅଶ୍ୱ ଗଜ ରଥ ସୁଖାସନ ଚଢ଼ି
ଆଇଲେ ସନ୍ନଦ୍ଧ ହୋଇ
ଅମରପତି-ସମ୍ପତ୍ତି ମଚ୍ଛଇ । ୧୩
ଆଇଲେ ବିଭୀଷଣ ହିରଣ୍ୟାକ୍ଷ
ଅଘା ଆତାପି ଯେ ଶୁମ୍ଭ ତାରକ୍ଷ
ଅର୍ଜିତାସୁର ବାଣାସୁର ଯେତେ
ଅତି ଉଗ୍ର ହେ ଆଇଲେ ଦଇତେ
ଅଧଃପୁରୁ ବଳି— ରାଜା ନାଗାବଳି
ଯେନ ଶେଷ ପରବେଶ
ଅପାର ଆଇଲେ ମୁଖ୍ୟ ରକ୍ଷସ । ୧୪
ଅନୁକୂଳ କାଳ ଆସି ହୋଇଲା
ଅଷ୍ଟଲୋଚନ ସ୍ତୁମୁରେ କହିଲା
ଅହିଭୂଷଣ ଶୁଣି ଉଭା ହେଲେ
ଅଙ୍ଘ୍ରିଯୁଗେ ଇନ୍ଦ୍ର-ପାଦୁକା ଦେଲେ

---

୧୨ । ଅବ୍ଜକୋଣା—ଚନ୍ଦ୍ରକୋଣା । ୧୩ । ମଦ୍ରଦେଶ ରାଜା ଅଶ୍ୱପତି, ଓଡ଼ିଶା ରାଜା ଗଜପତି, କାଶୀରାଜା ନରପତି ଓ ମହାରାଷ୍ଟ୍ରରାଜା ଛତ୍ରପତି ବୋଲି ପୂର୍ବେ ପରିଚିତ ହେଉଥିଲେ । ସନ୍ନଦ୍ଧ—ସଜ୍ଜିତ । ମଚ୍ଛଇ—ପ୍ରତିଯୋଗିତା କରିବା ଯୋଗ୍ୟ । ୧୫ । ଅହିଭୂଷଣ—ଶିବ । ପୂରେ—ପୂର୍ଣ୍ଣ ହେଲା ।

ଅନ୍ତରୀକ୍ଷ ପୁର ପୁରେ ହର ହର
ଜୟ ଜୟ ଶବଦରେ
ଅପସରା ନାଚୁଛନ୍ତି ମୁଦରେ । ୧୫
ଅର୍ଜୁନ କଳାଛନ୍ଦ ଖାସ ସାଜେ
ଅନେକ ଡ଼ିଣ୍ଡିମ ଡ଼ମରୁ ବାଜେ
ଅଇଲ ବୃଷରାଜ ସଜ ହୋଇ
ଅବ୍ଜଶେଖର ବଜେ କଲେ ଯାଇଁ
ଅନୁସର ସୁର ଆଲଟ ଚାମର
ପିଞ୍ଛ ଖଣ୍ଡ ଢାଳୁଛନ୍ତି
ଅଗ୍ରେ ସଙ୍ଗୀତକାରୀ ଚଳୁଛନ୍ତି । ୧୬

ଅଭିନୟ ବନ୍ଧେ କିନ୍ନରବୃନ୍ଦ
ଅଙ୍ଗକୁ ଢାଳି ଢାଳି ମନ୍ଦ ମନ୍ଦ
ଅଙ୍ଗୁଷ୍ଠ ତର୍ଜନୀ ଅଙ୍ଗୁଳି ଦୁଇ
ଅଗ୍ର ଯୋଗେ କେ ହସ୍ତକ ଦେଖାଇ
ଅଳ୍ପ ପୁରଃସର ପାଦ ଧୀରେ ମାରି
ପୁଣ ଜର ଡେଇ ଉଠେ
ଅମ୍ବୁ ଭଉଁରୀ ପରି ବୁଲିଯାଏ । ୧୭

ଅମୃତ ଗୁଳିକ କେଶ୍ଚି ନାଚଇ
ଅମ୍ବୁଜ-ଅରୁଣ-ଚରଣ-ଦୁଇ
ଅଲକ୍ଷିତ ହୋଏ ଚପଳନାଟେ
ଅଙ୍ଗ ତା’ ଚପଳା ପରି ଚହଟେ
ଅଣ୍ଡୀର କୋକିଳ— ସ୍ୱରରୁ ମଧୁର—
ଗାବେ ତା ତା ଥେଇ କରେ
ଅଳପ ଆଳାପେ ରାଗ-ରାଗରେ । ୧୮

---

୧୬ । ଅର୍ଜୁନ – ଧଳା । ହସ୍ତକ—ଅଭିନୟ କାଳରେ ହସ୍ତର ନାନାବିଧ ଭଙ୍ଗୀ । ଅଳ୍ପ ପୁରଃସର—ଅଳ୍ପ ଆଗକୁ ଯାଇ ।

ଅଷ୍ଟଅର୍ଦ୍ଧବଧ ବାଦ୍ୟ ବାଜୁଛି
ଅମ୍ବୁଜ-ଗମକ ମେଘ ଗାଜୁଛି
ଅସିତ ସିତ ପତାକା ପାଟଳ
ଅଭ୍ରମିଳ ଉଡ଼େ ପତାକାମାଳ
ଅଇରାବତ ଜେ— ଚୈଃଶ୍ରବା ପୁଷ୍ପକ
ଆଦି ଯନ୍ତି ଶୋଭା ପାଇ
ଅଶ୍ୱ ହସ୍ତୀ ରଥ ବର୍ଣ୍ଣି କି ଛନ୍ତି । ୧୯
ଅନ୍ତକେ ଲଗି ବାହ ଛଳେ ପୁଣି
ଅଯୁତ-ପରମିତ ଶିବଗଣ
ଅଟନ୍ତି ସର୍ବେ ବିଭୂତିଲେପନ
ଅଣ୍ଡକୋଷରେ ନାହିଁ କଉପୀନ
ଅର୍କ-ସମତୁଲ— ମହୋକ୍ଷକ ଶୃଙ୍ଗ
କରରେ କେବଳ ଅଛି
ଅସ୍ଥିମାଳମାଳା ଗଳାରେ ଅଛି । ୨୦
ଅର୍ଦ୍ଧଚନ୍ଦ୍ରମା ଭାଲେ ତ୍ରିପୁଣ୍ଡ୍ର
ଅମୂଲ୍ୟ ରୁଦ୍ରାକ୍ଷେ ଭୂଷଣ ହାର
ଅଣ୍ଟାରେ ଶାର୍ଦ୍ଦୂଳଚର୍ମ ବସନ
ଅରବିନ୍ଦ ଇନ୍ଦୁମୁଖ ପ୍ରସନ୍ନ
ଅଙ୍ଗୁ ରତ୍ନ ଗୃହୁଁ ପାଦୁକ ସଞ୍ଚାରୁ
ଧ୍ୱନି କରେ ଅବିରତେ
ଅଶେଷ ବିଶେଷେ ବର୍ଣ୍ଣିବ କେତେ ? । ୨୧
ଅଛନ୍ତି ପୃଷ୍ଠଦେଶେ ଦେବଗଣ
ଅସ୍ୱାଦ ଧରି ବାହନ ଚଢ଼ିଣ
ଅନନ୍ତ ଗରୁଡ ପିଠିରେ ବସି
ଅଗ୍ରେ ମାତ୍ର ବଜେ କରନ୍ତ ହସି

---

୧୯ । ଅଷ୍ଟଅର୍ଦ୍ଧବଧ—ଶୂରପ୍ରକାର । ଅମ୍ବୁଦ ଗମକ—ମେଘକୁ ଚମକେଇ ଦେଇ । ୨୦ । ବିଭୂତି—ଚିତାପାଉଁଶ । ୨୧ । ସଞ୍ଚରୁ—ଗମନ କରନ୍ତେ ।

ଅମର ସମୁଦ୍ର— ପଛେ ଦଣ୍ଡିତସ୍ତୁ
ଯୋଗୀ ତାଙ୍କ ପଛେ ଚଲେ
ଅବି ନାରଦାଦ୍ଦ ମଧ୍ୟେ ଚଳଚଲେ। ୨୨

ଅମଙ୍ଗଳକୁଳ ପିଶାଚକୁଳ
ଅପରେ ଭୂତ ପ୍ରେତ ଖ୍ରମଶୀଳ
ଅଖାଦ୍ୟ-ଭକ୍ଷକ ବ୍ରହ୍ମରାକ୍ଷସ
ଅମାନେ ପଛେ ଅଇଲେ ଶଦ୍ଦ'ଶ',
ଅତ ମାତ ହିଛ ରୂପ ପରପଞ୍ଚ
ଦେଖି ଉଡ଼ିଯାଏ ପ୍ରାଣ
ଅନର୍ଥମାନଙ୍କ ହେତୁ ସେ ଗଣ । ୨୩

ଅସ୍ଥି ମାଳ ମାଳ କା ହୃଦସ୍ଥଳ
ଅନ୍ତ୍ରମାଳା କାହା ଗଳାରେ ଲୁଚେ
ଅଜ ମେଷରକତ କେ ପିଇଚ୍ଛି
ଅଧରେ ଲଗି ସେ ଶୁଖିଯାଇଛି
ଅତ ଶୁଷ୍କପଳ ଖଣ୍ଡେ କେ କବଳ
କରୁଛି ପ୍ରବଳ ଦନ୍ତେ
ଅନାଏଁ ତରାଟି ଈକ୍ଷଣ-ଅନ୍ତେ । ୨୪

ଅଇଲୁ ମଦବା କେ ପାନ କରି
ଅମଳବଳେ ଅକ୍ଷି ପଡ଼େ ଘାରି
ଅଜାଗେ ପଡ଼ୁ ପଡ଼ୁ ସମ୍ଭାଳୁଛି
ଅବସ୍ଥ ଚଡି କେ ପ୍ରେତ ଚଳୁଛି
ଅଧ:ମୂର ପରି ପାଟି କେ ପ୍ରସାରି
ପକାଏ ପ୍ରଳୟ ରଡ଼ି
ଅଣ୍ଟିଲ ମନ୍ଥକ ଖାଏ କେ ମୋଡ଼ି । ୨୫

---

୨୩ । ଖ୍ରମଶୀଳ—ଭୟଙ୍କର—ସ୍ୱଭାବ । ଶଦ୍ଦଶ—'ଶଦ୍ଦ ଶଦ୍ଦ' ଖଣ୍ଡିତ ହୋଇ—'ଶଦ୍ଦଶ' ହୋଇଛି । ଶୁଷ୍କପଳ—ଶୁଖିଲ ମାଂସ । ଈକ୍ଷଣ ଅନ୍ତେ—ଆଖି ପ୍ରାନ୍ତରେ ।୨୫ । ଅମଳ—ମାଦକ ଦ୍ରବ୍ୟ । ଅବସ୍ଥ—ଲୁଆ । ଅଂଶାର୍ଦ୍ଧ—ଚପାଙ୍କ

ଅଙ୍ଗ'ର ପରି ଦିଶେ ତାହା କାନ୍ତି
ଅନ୍ଧାର ପ୍ରକାର କାହାର ଦ୍ୟୁତି
ଅଗ୍ନି-ସଦୃଶ ଜଳେ ତା' ନୟନ
ଅବଲୋକନେ ସ୍ତବ୍ଧ ହୋଏ ମନ
ଅଂଶାଇ ପଡ଼ିବା ଶବମାଂସ ସେବା—
କରୁଅଛି କେଉଁ ସୁଖେ
ଅଟକନ୍ତେ ଦନ୍ତେ କାଟୁଛି ନଖେ । ୨୬

ଅଛି ଅବଶେଷ ଅଙ୍ଗ ତାହାର
ଅମାନ ଶିର ସର୍ବାଙ୍ଗେ ତା' ହାର
ଅତି ଦୀର୍ଘ ତାର ବିକୃତାନନ
ଅକ୍ଷି ଖଦ୍ୟୋତଦ୍ୟୁତି ଏ ଜ୍ୱଳନ
ଅସ୍ଥି ବରାହ ଶୃ— ଗାଳ ରୂପ ଯେହ୍ନୁ
ସେହିରୂପେ ତାଙ୍କ ସ୍ୱନ
ଅବା ବର୍ଣ୍ଣିବା କେତେ ଏ ବିଧାନ ? । ୨୭

ଅଟନ୍ତି ତ୍ରିଗୁଣମୟ ଯେ ହର
ଅଛନ୍ତି ତ୍ରିଗୁଣୀ ସଙ୍ଗେ ତାଙ୍କର
ଅଶୋଭା ଶୋଭା ବିକୃତ ପ୍ରକୃତ
ଅସାର ସାର ଯାର ଏକମତ
ଅଘବନ୍ତ ହୋଇ ଏଣୁ ତାଙ୍କ ଠାଇଁ
ଭରସା ବଳଭଦ୍ରର
ଅବଶ୍ୟ ନାଶିବେ ଅନ୍ତକ-ଡର । ୨୮

---

୨୬ । ବିକୃତାନନ—ବିକୃତ ମୁଖ । ଖଦ୍ୟୋତଦ୍ୟୁତି—ଜୁଳୁଜୁଳିଆ ପୋକର କାନ୍ତି । ଜ୍ୱଳନ—ଅଗ୍ନି । ୨୮ । ଅଘବନ୍ତ—ପାପୀ । ଅନ୍ତକଡର—ଯମଭୟ ।

# ଏକବିଂଶ ଛାନ୍ଦ

## ବିବାହ ମଣ୍ଡପ—ବର୍ଣ୍ଣନା

ରାଗ—ବା ଚକ୍ଷତିଶା ବୃତ୍ତେ

ଅକଳୁଷ ମନେ      ସଜ୍ଜନ ସୁମନେ
ଆକଳନା କର ଚିତ୍ତେ
ଅଚଳ ମହୀପ      ବିବାହ-ମଣ୍ଡପ
ନିର୍ବାହ କଲେ ଯେମନ୍ତେ ଯେ
ଅଛି, ମନୋହର ଦିବ୍ୟସ୍ଥାନ
ଅତି ହର୍ଷ ପ୍ରତି ଆସ୍ତୃତନ ଯେ । ୧

ଅରୁଣେନ୍ଦ୍ରୁ ତ—      ରୁଣ ଚୂତପତ୍ର
ତୋରଣା ଦ୍ୱାରରେ ବାନ୍ଧି
ଅର୍ଜୁନ ମାଳସ୍ତ—      ମର ମାଳ ମାଳ
ଠାବେ ଠାବେ ଛନ୍ତି ଛନ୍ଦି ଯେ
ଅମ୍ବୁ-ପେଟୀ ଗୁଆ କାନ୍ଧି କାନ୍ଧି
ଅଛନ୍ତି ସେ ଚଉପାଶେ ବାନ୍ଧି ଯେ । ୨

ଅମୂଲ୍ୟ ହେମ ଅ—      ର୍ଦ୍ଧଚନ୍ଦ୍ର ଉପରେ
ବର୍ତ୍ତୁଳ ମାଣିକ୍ୟ ସୂର୍ଯ୍ୟ
ଅସ୍ତୁନ ଭିତ୍ତିମା—      ନଙ୍କେ ଖଞ୍ଜିଛନ୍ତି
ଅସ୍ତୁ ନୋହେ ଗୃହଁ ଧୈର୍ଯ୍ୟ ଯେ

---

### ଏକବିଂଶ ଛାନ୍ଦ

୧ । ଅକଳୁଷ ମନେ—ପବିତ୍ର ମନରେ । ସୁମନେ—ପଣ୍ଡିତମାନେ । ଆକଳନା କର—ବିଚାର କର । ଅଚଳ-ମହୀପ—ପର୍ବତରାଜ ହିମାଳୟ । ନିର୍ବାହ—ନିର୍ମାଣ । ୨ । ଅରୁଣେନ୍ଦ୍ରୁ—ବାଳସୂର୍ଯ୍ୟପରି ସୁନ୍ଦର । ତରୁଣ—କଅଁଳିଆ । ଅମ୍ବୁପେଟୀ—ନଡ଼ିଆ ।୩। ହେମ ଅର୍ଦ୍ଧଚନ୍ଦ୍ର—ସୁନାଗୁନ୍ଦ । ମାଣିକ୍ୟ ସୂର୍ଯ୍ୟ—ମାଣିକ୍ୟ-ନିର୍ମିତ ସୂର୍ଯ୍ୟ । ଅସ୍ତୁନଭିତ୍ତି—କାଠପାଙ୍କ କାନ୍ଥ । ଅବଧିଫଳ—ମୁକ୍ତା । ଅନୁଚ୍ଛନ୍ଦରେ—ପରସ୍ପରକୁ ଛନ୍ଦ ।

ଅବଧି,—ଫଳ ଯନ୍ତ୍ର ଯନ୍ତ୍ର ଗୁଚ୍ଛି
ଅନୁଛନ୍ଦାରେ ଅଛନ୍ତ ପଚ୍ଛି ଯେ । ୩

ଅସବ୍ୟ ସବ୍ୟ ପା— ଲୁଟେ ଦ୍ୱାରେ ଦ୍ୱାରେ
ସୁନାକନ୍ୟା-ଖମ୍ବ ଶୋଭି
ଅଳସୀ ପ୍ରତିମା କେଉଁ ମନୋରମା
ବାଳସିଛକର-ଆଶ୍ରି ସେ
ଅଛି, ତାଳ କେ ପିଭୁଳୀ ଧରି
ଅମୃଷ୍ଟ କେ ବେଣୁ ବୀଣା ତୂରି । ୪

ଅତି ବରଷ କୁ— ଟୂଣୀ ଗୁଳନେ ନେ
ଗୁମର ଡ଼ାକୁଛି ରଙ୍ଗେ
ଅସିତ-କଣ୍ଠ ପୁ— ଛ ପିଗ୍ଧୁ ପକାଇ
କେ ଚକ୍ଷୁ ପିଛଡ଼ା ଭଙ୍ଗେ ଯେ
ଅମୁଝ୍ୱଶ ଧରିଛି କେ ଗୋଷ
ଅଛି ପାନ ପାନବଟା ଧରି । ୫

ଅଷ୍ଟ ରତ୍ନରେ ନି— ବଷ୍ଟ ହୋଇଅଛି
ମଧ୍ୟେ ଦ୍ୱବାଦ୍ମମଣ୍ଡପ
ଅର୍କ ଗୁରୁ ଶୁକ୍ର ଶଙ୍କ ଶୋଭା ଚନ୍ଦ୍ର
ବନ୍ଦ କରୁଛି ତା' ରୂପ ଯେ
ଅଷ୍ଟ, ଅଷ୍ଟଖମ୍ବ ମାଳମଣି
ଅଛି ମାଣିକ୍ୟରେ ଶ୍ରେଣୀ ଶ୍ରେଣୀ । ୬

ଅଂଶୁକ ଉଜ୍ଜ୍ୱଳ ସ୍ଫୁଟି ଇନ୍ଦ୍ରମାଳ—
ମଣି ଓଗ' ଅଛି ଗଢ଼ି
ଅପରେ ଯେ 'ଗୁଜ' ବଇଡ଼ୂର୍ଯ୍ୟ ତେଜ
ହୀରା-ସରସିଜ ଜଡ଼ ଯେ
ଅଂଶେ, ଅଂଶେ କେ ଭଆଣିମାନ
ଅମଳନ 'ମାଳବ' ଅମାନ ସେ । ୭

---

୪ । ଅସବ୍ୟ—ବାମ । ସବ୍ୟ—ଦକ୍ଷିଣ । ପ୍ରତିଦ୍ୱାରର ବାଁ ଓ ଡାହାଣରେ ସୁନା ତିଆରି କନ୍ୟା ଆକାରର ଖମ୍ବ । ତାଳ—ଝାଞ୍ଜ । ୫ । ଅସିତକଣ୍ଠ—ମୟୂର ।

ଅଚ୍ଛକାନ୍ତ-କାନ୍ତ ମଣିରେ ନିର୍ମିତ
ହୋଇଅଛି ଝଲକଝଗ
ଅକାଳେ ବରଷା— ସୁଖ କରେ ନିଶା—
କରରେ ହୋଇଣ ଚୋର ସେ
ଅଗ୍ରପଟ୍ଟାରେ କନକ ଶୁକ
ଅନୁକୋଣେ ମକର-ମସ୍ତକ ଯେ । ୮

ଅକ୍ଷିରୋମ-ସମ ପତ୍ର-ରତ୍ନ-କମ
କମଳ-ଢମଳ-କଳୀ
ଅମୂଲ୍ୟ ଆରମ୍ଭ ରମ୍ଭାଭଣ୍ଡା କୁମ୍ଭି—
କୁମ୍ଭ ରତ୍ନମୁଣ୍ଡାବଳ ଯେ
ଅଂସମୋଡ଼ା ଘୋଡ଼ା କରି-ହରି
ଅଙ୍ଘ୍ରି ଟୋଳା ବଙ୍କମ କେଶଗ୍ର ଯେ । ୯

ଅଳ୍ପ କୋରକିତ ମୁଦ୍ରିତ ପୁଷ୍ପିତ
ନାନା ଜାତି ତରୁମାନ
ଅଧ ଊର୍ଦ୍ଧ୍ୱ ପକ୍ଷ ଛନ୍ଦ ଲତା ଚକ୍ଷ
ଗୁମ୍ଫି ହରେ ନେତ୍ର ମନ ସେ
ଅଳି, ନର୍ତ୍ତକୀ କେକୀ କୋକିଳ
ଅହି ମର୍କଟ ନକ୍ର ନକୁଳ ଯେ । ୧୦

ଅନୁରୂପ କରି ପଦ୍ମେ ଯେ ବଢ଼ିରି
ଗଢ଼ି ଅଛି ବିଶ୍ୱକର୍ମା
ଅଳପ ସେ ଶୋଭା କଳପଣା ହେବା
ଉପମା ନୋହେ ସୁଧର୍ମା ଯେ
ଅତି, ଦୀପ୍ତ ରତ୍ନ-ଦୀପ-ଶ୍ରେଣୀ
ଅଣୁ କ୍ଷୌଣୀରେ ହେଉଛି ଗଣି ଯେ । ୧୧

---

୮ । ଅଚ୍ଛକାନ୍ତକାନ୍ତ—ଚନ୍ଦ୍ରକାନ୍ତ । ଅନୁକୋଣେ—ପ୍ରତିକୋଣରେ । ୯ । ରମ୍ଭା ଭଣ୍ଡା—କଦଳୀ ଭଣ୍ଡା । କୁମ୍ଭି କୁମ୍ଭ—ହାତୀ କପୋଳ । ଅଂସମୋଡ଼ା—ବେକ ମୋଡ଼ଥିବା । କରିହରି—ଗଜସିଂହ ବା ହାତୀ ଉପରେ ସିଂହ ବସିଥିବା ଚିତ୍ର । ଅଙ୍ଘ୍ରି ଟୋଳା—ଗୋଡ଼ ଟେକିଥିବା । ୧୦ । ଅଳ୍ପ କୋରକିତ—ଅଳ୍ପ କଢ଼ ଧରିଥିବା । ନକ୍ର—କୁମ୍ଭୀର । ୧୧ । ସୁଧର୍ମା—ଦେବସଭା । ଅଣୁ...ଗଣି—ରତ୍ନ-ଦୀପର ତେଜ ଏତେ ଉଜ୍ଜ୍ୱଳ ହୋଇଛି ଯେ (କ୍ଷୌଣୀ) ଭୂଇଁରେ (ଅଣୁ) ବାଲି ମଧ୍ୟ ଗଣି ହେଉଛି । ଅଚ୍ଛ ମୁକୁର ପ୍ରକର—ନିର୍ମଳ ଦର୍ପଣସମୂହ । ପ୍ରତିଛବି—ପ୍ରତି କାନ୍ଥ ।

ଅଚ୍ଛ ମୁକୁର-ଦ୍ରୁ— କର ପ୍ରତ ଭିତ୍ତି—
ମାନଙ୍କେ ଅଛନ୍ତି ଖଞ୍ଜି
ଅନ୍ତରେ ଚାରୁ ଦ୍ୱ— ଚିତ୍ର ଚିତ୍ରମାନ
ମାନସକୁ ହଏ ଟଞ୍ଚି ଯେ
ଅଭ୍ର-ଲେଖକ କାହିଁ ସୀତାପତି
ଅଚ୍ଛୁ କାହିଁ ଗୋପଲ୍ଲୀଳା ଗ୍ରନ୍ଥ ଯେ । ୧୨
ଅର୍ଜ୍ଜୁନ ସୁଭଦ୍ରା ଯାଇଛନ୍ତି ନିଦ୍ରା
ବଳରାଜା ଦାନ ଦେବା
ଅନନ୍ତ-ଶୟନ କାହିଁ ଦଶାନନ
ମନ୍ଦୋଦରୀ-ପାଶେ ଥିବା ଯେ
ଅବ୍‌ଧି,-ଶୋଭା ଅଳକା ଚରିତ
ଅମରାବତୀ କାହିଁ ଲକ୍ଷିତ ଯେ । ୧୩
ଅଗାରମାନଙ୍କେ ଲଗା ରତ୍ନ ପାଟ—
ଲୁଗାର ଝୁନ୍ଦୁଆମାନ
ଅଗୁରୁ ଅତର କସ୍ତୁରୀ ପମାରୁ—
ମାରୁ ସିଞ୍ଚୁ ପ୍ରତ ସ୍ଥାନ ଯେ
ଅମ୍ବୁ,-ପୂର୍ଣ୍ଣ ସ୍ୱର୍ଣ୍ଣଘଟ ସ୍ଥାପି
ଅଗ୍ରେ ରୋହୁମାଛ ରମ୍ଭା ରୋପି ଯେ । ୧୪
ଅୟୁତ ଅୟୁତ କନକ ରଜତ
ମଣିରତ୍ନଗଣ ପୀଡ଼
ଅତି ଶୋଭାକର ଯଥା ନିଶାକର
ଝୁଙ୍ଗଡ଼ା ଶାକର ବଡ଼ା ଯେ
ଅର୍ଘ୍ୟ, ପୁଷ୍ପ ଦଧି ବଡ଼ା ବଡ଼ା
ଅଚ୍ଛୁ ସମିଧ କିଁ ବଡ଼ା ବଡ଼ା ଯେ । ୧୫
ଅତି କୋଳାହଳ— ସ୍ୱରେ ହଂସକୁଳ
ଚକ୍ରୁଛନ୍ତି ମେଳ ହୋଇ
ଅଙ୍ଗନାସଙ୍କୁଳ ମଙ୍ଗଳରେ ହୁଳ—
ହୁଳୀ କୁତୁହଳେ ଦେଇ ଯେ

୧୫ । ସମିଧ—ହୋମକାଠ ।

ଅପ୍ର,-ମିତ ନାନା ବାଦ୍ୟମାନ
ଅବ୍ଜ-ମନ୍ଥସ୍ତ-ମଙ୍ଗଳ ଗାନ ଯେ । ୧୬

ଅବ୍ଜ ଆସନ ବି— ଧିରେ ବଧିରେ ସେ
ବେଦ-ବିଧାନ ନିର୍ମାଣି
ଅଥ ରାଜଦଣ୍ଡ ଯାକ ଟଞ୍ଜି ଦେଲେ
ତମୋହର ରତ୍ନମଣି ଯେ
ଅନ୍ତୁ; ଆନେ ଚନ୍ଦ ସର୍ବପୁରେ
ଅଷ୍ଟ ପୂର୍ଣ୍ଣକୁମ୍ଭ ପ୍ରତି ଦ୍ୱାରେ ଯେ । ୧୭

ଅବ୍ଧିତ-ମଣ୍ଡଳ— ଖଣ୍ଡନ କି ପୁର—
ପାଳନ ନାଶନ ପର
ଅଭବ ଯେ ଭବ ଅଦ୍ୱନ୍ଦ୍ୱରେ ଦ୍ୱନ୍ଦ୍ୱ
ଭାବେ ସର୍ବଦା ବିହାର ଯେ
ଅଙ୍ଗ ଚିଙ୍ଗ କେନ୍ଦୁଝିଷ୍ଟ-ଈଶ
ଅଟେ ବଳଭଦ୍ର ରୁଦ୍ର-ଦାସ ଯେ । ୧୮

———

୧୬ । ଅବ୍ଜ—ଶଙ୍ଖ । ୧୭ । ତମୋହର—ଅନ୍ଧକାରନାଶକାରୀ ।
୧୮ । ଅବ୍ଧିତ—ଶମ୍ଭୁ । (ଅଭବ) ଜନ୍ମରହିତ ହେଲେହେଁ ଯେ 'ଭବ' ନାମ ଧାରଣ କରିଛନ୍ତି । ଅଦ୍ୱନ୍ଦ୍ୱରେ—ସ୍ୱଚ୍ଛନ୍ଦରେ । ଦ୍ୱନ୍ଦ୍ୱଭାବେ—ଯୁଗଳରୂପ ହୋଇ । 'ଚିଙ୍ଗ'ପଦ ଏଠାରେ ସମ୍ବୋଧନ । ରୁଦ୍ରଦାସ—ମହାଦେବଙ୍କ କଙ୍କର ।



# ଦ୍ୱାବିଂଶ ଛାନ୍ଦ

## ଷବାହ୍ନ

ଅଚଳ-କୁଳ-ଭୂପାଳ ସେ
ଅନୁରୂପ ଚତୁରଙ୍ଗ ବଳ ଯେ
ଅନେକ ଗୀତ ବା— ଦ୍ୟ ନାଟ ସନ୍ଧିରେ
ସମ୍ଭାର କଲେ ପ୍ରବଳ ଯେ । ୧

ଅବ୍ଜାସନ ବଧୂପୂର୍ବେ ସେ
ଅତି ଅପୂର୍ବ ବରଣ-ଦ୍ରବ୍ୟ ଯେ
ଅପାର ଦୂରକୁ କୃପାରସଧିଙ୍କ
ବଢ଼ିଗଲେ ସ୍ନେହ-ଶ୍ରଦ୍ଧେ ସେ । ୨

ଅସୂନ-ବରଣ କଲେ ସେ
ଅକ୍ଷତାଦି ଗନ୍ଧପୁଷ୍ପ ଦେଇଲେ ଯେ
ଅମ୍ବିକା ସୁମନା— ମାଳା ଗଳେ ଦେଇ
ମାଳା ଘେନିଲେ ଭେଟିଲେ ଯେ । ୩

ଅଭିଟସ୍ଥ ଶିଷ୍ଟାଗ୍ରରେ ସେ
ଅଗ୍ନି ଧୂଆଇ ସୁବାସ-ମଠରେ ଯେ
ଅନୁରୂପ ସୁର ଋଷିଙ୍କି ଈଶ୍ୱର
ସଙ୍ଗେ ତାଙ୍କ ବେଦପାଠରେ ଯେ । ୪

ଅବଧୃତ-ପୂଜା କରି ଯେ
ଅଥ ସତ୍ୟବାକ୍ୟ-ଦାନ ସାରି ଯେ
ଅପୂର୍ବ ଚନ୍ଦାଧି— ବାସ କଳ୍ପତରୁ—
ସୂତ୍ର ଲବଣେ ଚଉଁଷ ଯେ । ୫

---

### ଦ୍ୱାବିଂଶ ଛାନ୍ଦ

୧ । ଅଚଳକୁଳଭୂପାଳ—ପର୍ବତମାନଙ୍କ ରାଜା, ହିମାଳୟ । ଚତୁରଙ୍ଗବଳ—ହସ୍ତୀ, ଅଶ୍ୱ, ରଥ ଓ ପଦାତି ଏହି ଚାରିପ୍ରକାର ସୈନ୍ୟ ।୨। କୃପାରସଧି—କରୁଣାସାଗର ଶିବ ।୩। ଅସୁନବରଣ—ବାଟବରଣ । ସୁମନମାଳା—ଫୁଲମାଳା ।୫। ଅବଧୃତ-ପୂଜା—ବରୁଣ ପୂଜା ।

ଅଙ୍ଗ ଷଡ଼୍‌କର୍ମ ଘେନି ସେ
ଅଥ ମହାବାକ୍ୟ ହସ୍ତଗ୍ରନ୍ଥି ସେ
ଅଷ୍ଟ ହିଗପତି		ଆହି ନନ୍ଦହୋମ
ଶିଳାରୋହଣ ହ ସ୍ୱସ୍ତି ସେ । ୬
ଅଚ୍ଛିଦ୍ର ଅବଧାରଣ ସେ
ଅନୁଆନେ ଘେନ ସମର୍ପଣ ସେ
ଅଶୁ ଏ କର୍ମ ଅ—		ଙ୍ଗୀକାର ନ କରି
କଲେ ଯଥା ଆଚରଣ ସେ । ୭
ଅଖିଳ ଈଶ୍ୱର-ବନ୍ଧୁ ସେ
ଅବା କ ବର୍ଣ୍ଣିବା ତହୁଁ ଶୋଭା ସେ
ଅନନ୍ତ କର୍ତ୍ତା ବେ—		ଦପତି ଆଚାର୍ଯ୍ୟ
ଗୁରୁ ପୁରୋହିତ ହେବା ସେ । ୮
ଅମରପୁର ସମ୍ପତ୍ତି ସେ
ଅଛି ଘେନ ଯହିଁ ସ୍ୱରପତି ସେ
ଅଜ ନେଉଥା ହେବା		କାର୍ଯ୍ୟ ଠାରେ ଗଜ—
ଦାନ ଦେଲେ ପଶୁପତି ସେ । ୯
ଅହଙ୍ଗେ କରିଲ କର୍ମ ସେ
ଅନିବାରମାସ୍ତୁ ଉପକ୍ରମ ସେ
ଅଦ୍ୟ ଗ୍ରାବ ଭୂତ		ନିକାଳେ ନୋହୁଛି
ନୋହିଛି ନାହିଁ ଏ ସମ ସେ । ୧୦
ଅନ୍ତଃପୁରେ ପୂତ ଖେଳ ସେ
ଅତି ପ୍ରମୋଦ କୁତୁକ କଳ ସେ
ଅବିଧ-ଅଙ୍ଗନା		କଲେ ବନ୍ଦାପନା
ଭବେ, ଦେଇ ହୁଳ ହୁଳ ସେ । ୧୧

---

୮ । ଅନନ୍ତ—ବିଷ୍ଣୁ । ବେଦପତି—ବ୍ରହ୍ମା । ଗୁରୁ-ବୃହସ୍ପତି । ୯ । ଯେଉଁଠାରେ (ଅଜ) ଛେଳିଟିଏ ଦରକାର ସେଠାରେ ଶିବ (ଗଜ) ହାତୀଟିଏ ଦେଲେ । ପଶୁପତି—ଶିବ । ୧୦ । ଅଦ୍ୟ ଗ୍ରାବା ଭୂତ—ବର୍ତ୍ତମାନ, ଅତୀତ ଓ ଭବିଷ୍ୟତ । ୧୧ । ଅନିବାରମାସ୍ତୁ—ଯାହା କହି ହେବ ନାହିଁ । ଉପକ୍ରମ—ଆରମ୍ଭ । ପୂତ—ପୁଅ । ଅବିଧ—ସଧବା ।

ଅମୃତରୁ ସ୍ୱାଦୁ ରସ ଯେ
ଅମ୍ବା-ପିତା କଲେ ଚଞ୍ଚୁଗ୍ରାସ
ଅମ୍ବିକା ଆଳ— ଅଳି ପାଶେ ଚଳନ୍ତେ
ବାହାରେ ପ୍ରବେଶ ଛଳ ଯେ । ୧୨
ଅଭିଳାଷ ଇଚ୍ଛରସେ ଯେ
ଅତି ଉତ୍ସାହେ ମୋଦ ମାନସେ ଯେ
ଅସ୍ତାଚଳେ ଅର୍କ— ପ୍ରବେଶ ବିଷସ୍ଥ
ବହୁର ହୋଏ ସର୍ବାଂଶେ ଯେ । ୧୩
ଅଦ୍ୟ ତାରକା-ଅସୁର—ଯେ
ଅସୁ କରେ କଲା ଦଣ୍ଡଧର ଯେ
ଅତିଶୟ ଉକ୍ତି ଅଳଙ୍କାର-ଯୁକ୍ତ
ଏଠାରେ ହେଲା ଗୋଚର ଯେ । ୧୪
ଅବ୍ଦଜ-ଧ୍ୱଜ-ଗଜ ଯେ
ଅବାରଣ ହେଲା ଦେବରାଜ ଯେ
ଅନୁକମ୍ପା ଅଙ୍କୁ— ଶରେ ବନ୍ଦୀ କର
ଭଣେ ବଳଭଦ୍ର ଭଞ୍ଜ ଯେ । ୧୫

---

୧୨ । ଅମ୍ବାପିତା—ଜଗତର ଜନନୀ ଓ ଜନକ, ପାର୍ବତୀ ଶିବ । ୧୩ । ଅସ୍ତାଚଳେ···ବିଷସ୍ଥ—ସୂର୍ଯ୍ୟ ଅସ୍ତ ଯିବା କଥା । ୧୪ । ଆଜି ତାରକା ଅସୁର (ଅସୁ) ପ୍ରାଣକୁ (ଦଣ୍ଡଧର) ଯମ (କରେ କଲା) ହାତମୁଠାରେ ଧରିଲା ଅର୍ଥାତ୍ ହରଗୌରୀଙ୍କର ମିଳନ ଫଳରେ କୁମାର ଜାତ ହେଲେ ତାରକା ମରିବ । ତାହା ଆଜି ଘଟିଲା । ଏଠାରେ କାର୍ଯ୍ୟକାରଣର ସମକାଳୋତ୍ପତ୍ତିରୂପ ଅତିଶୟୋକ୍ତି ଅଳଙ୍କାର ଗୋଚର ହେଲା । ୧୫ । ଅବ୍ଦ—ମେଘ । ମେଘରୁ ଜାତ ଯେ; ସେ ଅବ୍ଦଜ ଅର୍ଥାତ୍ ଜଳ । ଅବ୍ଦଜଜ—(ଅବ୍ଦଜ) ଜଳରୁ ଜାତ, ମୀନ । ମୀନଧ୍ୱଜ-କନ୍ଦର୍ପ (ଗଜ) ହସ୍ତୀ ଅବାରଣ (ଦୁର୍ବାର) ହେଲା । ହେ ଦେବରାଜ ! ହେ ମହାଦେବ । ଅନୁକମ୍ପା ଅଙ୍କୁଶରେ—ଦୟାଅଙ୍କୁଶରେ । ଅଙ୍କୁଶରେ ହସ୍ତୀକୁ ଶାସନ କରାଯାଏ ।

# ତ୍ରୟୋବିଂଶ ଛାନ୍ଦ

## ବରଯାତ୍ରି-ଚର୍ଚ୍ଚା

ରାଗ—ମଙ୍ଗଳଗୁଜ୍ଜରୀ

ଅଦ୍ରିନାଥ ସୁତା ବିଭା ସାରି ତଦନ୍ତରେ
ଅମାତ୍ୟ ପାତ୍ର ମନ୍ତ୍ରୀମାନଙ୍କୁ ସତ୍ୱରେ ଯେ । ୧
ଅନୁଜ୍ଞା କଲେ ହେ ଭୃତ୍ୟମାନେ ବେଗେ ଚଳ
ଅମର ଅସୁର ନର ବରଯାତ୍ରି କୁଳ ଯେ । ୨
ଅନୁରୂପେ ବସା ଦେବ ମର୍ଯ୍ୟାଦ କରି
ଅର୍ଚ୍ଚନା କରିବ ଦେଇ ଆସନାଦି ବାରି ହେ । ୩
ଅନ୍ତଃପୁର ଅମୃତ ମଣୋହି ଭୁଞ୍ଜାଇବ
ଅପେକ୍ଷା ଯାହାର ଯେଉଁ ଆହାରକୁ ହେବ ଯେ । ୪
ଅନ୍ତ୍ୟଜଙ୍କଠାରୁ ଅନ୍ତର୍ଯ୍ୟାମୀ ପରିଯନ୍ତେ
ଅତୃପ୍ତ ନୋହିବେ କର ତତ୍ପରୁ ତେମନ୍ତେ । ୫
ଅଟରେ ଚଳିଲେ କାର୍ଯ୍ୟ ଅଧିକାରୀମାନେ
ଅଡ଼ିଲେ ଦେଖାଇ ସମସ୍ତଙ୍କୁ ସଜମାନେ ଯେ । ୬
ଅଥ ନବନ୍ଧ-ଭିତରେ କଲେ ଠାଆପିଢ଼ା
ଅମୃତ ସମ ସମଗ୍ରୀମାନ ହେଲ ବଢ଼ା ଯେ । ୭
ଅନ୍ନମାନେ ବରବର୍ଣ୍ଣୀ ପରାଏ ସନ୍ତପ୍ତ
ଅତନୁ କୃଶ ତାଣ୍ଡୁରୁ କାନ୍ତ ସ୍ନେହ-ଯୁକ୍ତ ଯେ । ୮

---

### ତ୍ରୟୋବିଂଶ ଛାନ୍ଦ

୧ । ଅମାତ୍ୟ—ମନ୍ତ୍ରୀ ।୩। ଅନୁରୂପେ—ସମ୍ମାନ ଓ ଯୋଗ୍ୟତା ଅନୁସାରେ । ବାରି—ଜଳ ।୫। ଅନ୍ତ୍ୟଜ—ଶୂଦ୍ର । ଅନ୍ତର୍ଯ୍ୟାମୀ—ପରମେଶ୍ୱର ।୭। ଠାଆପିଢ଼ା—ଖାଇବା ସ୍ଥାନ ପ୍ରସ୍ତୁତ କରିବା । ୮ । ଅନ୍ନମାନେ-ଖାଦ୍ୟଦ୍ରବ୍ୟଗୁଡ଼ିକ । ବରବର୍ଣ୍ଣୀ—ପତିଠାରୁ ଦୂରରେ ଥିବା ସ୍ତ୍ରୀ । ଅନ୍ନମାନଙ୍କୁ ସମାନ ବିଶେଷଣଦ୍ୱାରା ବରବର୍ଣ୍ଣୀ ସ୍ତ୍ରୀ ସଙ୍ଗେ ସମାନ କରାଯାଇଅଛି । (ଅନ୍ନପକ୍ଷେ) ସନ୍ତପ୍ତ—ତାତିଲା । ଅତନୁକୃଶ (ତନୁ—ଅଳ୍ପ, ଯେ ତନୁ ନୁହେଁ ଅର୍ଥାତ୍ ଅଧିକ) କୃଶ—ସରୁ ।

ଅବ୍ଜ ପରି ମହୋଜ୍ଜ୍ୱଳ ସୁବାସ ପାୟସ
ଅଙ୍କ-କୁରଙ୍ଗ ହେ ଖଣ୍ଡ କର୍ପୂର ବିଶେଷ ଯେ । ୯
ଅନେକ ବ୍ୟଞ୍ଜନମାନ ମାନସରଞ୍ଜନ
ଅଛି ପଳତି ମହୁର ପାଚକ୍କ ଯତନ ଯେ । ୧୦
ଅମୂଲ୍ୟ ଶାକରୀ ମଧୁ ଛୁରି କରି ଗଲ
ଅପୂର୍ବ ଆମ୍ବିଳ ସୂର୍ଯ୍ୟପାଗୀ ଜାଞ୍ଜିକା ହିଁ ଯେ । ୧୧
ଅଛି ରମ୍ଭା ବାଇଟଣ ସଙ୍ଗେ କାହ୍ନିଁ ଚଢ଼
ଅପାର ପରୀବାରେ ସେ ଅଛି କାହ୍ନିଁ ଜଡ ଯେ । ୧୨
ଅଛି ଯେ ମଶଚମାଣି ଘଣ୍ଟା ସିଂସା ମୁଗ
ଅନେକ ଜାତିରେ ଭଜା ନାନା ଜାତି ଶାଗ ଯେ । ୧୩
ଅସମ ପିଷ୍ଟକ ଯେ ଅନନ୍ତ ରୂପଧର
ଅଟନ୍ତ ପୀତସୁବାସ ବହୁ ପୁରୋଦର ଯେ । ୧୪

---

ପାଣ୍ଡୁର—ଅଳ୍ପ ହଳଦିଆ ମିଶା ଧୋବଲ ରଙ୍ଗ । କାନ୍ତ – ସୁନ୍ଦର । ସ୍ନେହଯୁତ—ଚିକ୍କଣ ଦ୍ରବ୍ୟମିଶ୍ରିତ । ବିରହିଣୀ ପକ୍ଷେ—(ସନ୍ତପ୍ତ) ମାନସିକ ଦୁଃଖଯୁକ୍ତ, ଅତନୁକୃଶ—କନ୍ଦର୍ପଜନିତ ପୀଡ଼ାରେ କ୍ଷୀଣ-ଶରୀର । ବିରହରେ ରକ୍ତହୀନତା ହେତୁ ପାଣ୍ଡୁବର୍ଣ୍ଣ ଧାରଣ କରିବା ସ୍ୱାଭାବିକ । କାନ୍ତସ୍ନେହଯୁତ— ସ୍ୱାମୀଠାରେ ସ୍ନେହଶୀଳା ।୯। ସୁବାସପାୟସ-ସୁଗନ୍ଧଯୁକ୍ତ କ୍ଷୀରି । ଅବ୍ଜ ପରି-ଚନ୍ଦ୍ର ପରି । ମହୋଜ୍ଜ୍ୱଳ—ଅତି ଉଜ୍ଜ୍ୱଳ । ଅନ୍ୟପକ୍ଷେ—ଅତି ନିର୍ମଳ ଖଣ୍ଡ—ମିଷ୍ଟଦ୍ରବ୍ୟ ବିଶେଷ ଓ କର୍ପୂର ଚିହ୍ନରେ (ଅଙ୍କକୁରଙ୍ଗ) ହୋଡ଼ମୃଗ ବା କଳଙ୍କ ପରି । ୧୦। ପଳତି-ମୁଗ ପ୍ରଭୃତି ଡାଲିକୁ ଚୂରି ଯେଉଁ ବ୍ୟଞ୍ଜନ କରାଯାଏ । ୧୨। ରମ୍ଭା-କଦଳୀ ଓ ଅପ୍ସରା । ବାଇଟଣ—ପରିବା ବିଶେଷ ଓ (ବାଇ) ବେଶ୍ୟା (ଗଣ) ସମୂହ । ପରିବା—ତରକାରୀ ଉପଯୋଗୀ ଫଳ ଓ (ପରୀ) ବେଶ୍ୟାମାନଙ୍କର (ବାର) ସମୂହ । ୧୩ । ସିଂସାମୁଗ—ଗୋଟା ମୁଗଡ଼ାଲି । ୧୪ । ଅସମ—ଅତୁଳ୍ୟ । ପିଷ୍ଟକ—ପିଠା । ଅନନ୍ତ ରୂପ—ବିଷ୍ଣୁଙ୍କ ରୂପ ଅନ୍ୟପକ୍ଷେ ଅନେକ ପ୍ରକାର ପୀତ ସୁବାସ— ବିଷ୍ଣୁ ପକ୍ଷେ, ଉତ୍ତମ ହଳଦିଆ ଲୁଗା । ପିଠାପକ୍ଷେ—ଭଲରୂପେ ଭଜା ହୋଇଥିବାରୁ ହଳଦିଆବର୍ଣ୍ଣ ଓ ସୁଗନ୍ଧଯୁକ୍ତ । ବହୁପୁରୋଦର—(ବହୁପୁର) ଚତୁର୍ଦ୍ଦଶ ପୁର (ଉଦରରେ) ଗର୍ଭରେ ଅଛି ଯାହାର—ବିଷ୍ଣୁ । ଅନ୍ୟପକ୍ଷରେ, ବହୁତ ପୁର (ଛେନା, ଗୁଡ଼ ଓ ନଡ଼ିଆର ସମବାୟ) ଯହିଁରେ ଦିଆଯାଇଛି ଏହିପରି ପିଠା ।

ଅନ୍ଧକାର-ସମ ଶୋଭା ଚନ୍ଦ୍ରମା-ଖଣ୍ଡରେ
ଅମ୍ବୁଜ ପରି ପ୍ରଫୁଲ୍ଲ ବିକସିତ ସରେ ଯେ । ୧୫
ଅକଲୁଷି-ଭକ୍ତ ଚିତ୍ତ ପ୍ରାୟ ସ୍ନିଗ୍ଧତର
ଅଙ୍ଗନା-ଅଙ୍ଗ ପରାଏ କୋମଳ ରୁଚିର ଯେ । ୧୬
ଅମୃତ-କେଳି ନାକର କାନ୍ତି ଉପକେଳି
ଅପାମାଲୁ କି ପ୍ରସ୍ତ ସୁଆସ୍ତ ଉପପୁଳି ଯେ । ୧୭
ଅଂଶେ ଅଂଶେ ସରକୁମ୍ଭୀ ଲଡ୍ଡୁ ନାନମାନ
* ଅନ୍ୟମାନେ କୋର ବର ଡାଲିମ୍ବ ସଡନ ଯେ । ୧୮
ଅସମ ପାରିଜାତକ ଝିଲ୍ଲୀ ମଣ୍ଡା ଖଇ
ଅତି ବଡ଼ ପୋଡ଼ାପିଠା ଟାକୁଆ * ମିଠାଇ ଯେ । ୧୯
ଅଟ୍ଟ ଯେ ଛାମ୍ପୁଡ଼ ନାଡ଼ୀ କସକୁଡ଼ ଗଜା
ଅତୁଳ୍ୟ ଅଇରସା ପୁର ଘୃତବଣ୍ଟ ଖଜା ଯେ । ୨୦
ଅଧାମ ଗୋଟିକା ଦଧି ଚଲ୍ହା ଦୁଧ ଘୃତ
ଅମୃତ ସମାନ ସର ଛେନା ନାନା ମତ ଯେ । ୨୧
ଅମ୍ଳାନ ଖୋଷି ଶାକର ଗୁଡ଼ ଖଣ୍ଡ ଚିନି
ଅଚ୍ଛ ନବାତ ମିଶିର କନ୍ଦ ଫେଣା ଯେନି ଯେ । ୨୨
ଅମୃତ-ପାଣି କଦଳୀ କମଳା ସରସ
ଅମ୍ବୁ ପେଟି ଡରଭୁଜ ନାରଙ୍ଗ ପନସ ଯେ । ୨୩
ଅକଠନ ଆମ୍ବ ତାଳ ତେନ୍ତୁଳୀ ଖଜୁରି
ଅମୃତ ଦ୍ରାକ୍ଷା ବାଦାମ ମାଧ୍ଵୀକ ସପୁରି ଯେ । ୨୪

---

୧୫ । ପିଠାମାନ (ଅନ୍ଧକାର) ଶିବଙ୍କ ପରି (ଚନ୍ଦ୍ରମା ଖଣ୍ଡରେ) ଅର୍ଦ୍ଧଚନ୍ଦ୍ରରେ ଅର୍ଥାତ୍ (ଚନ୍ଦ୍ରମା) କର୍ପୂର ଓ (ଖଣ୍ଡ) ମିଷ୍ଟଦ୍ରବ୍ୟ ଦ୍ଵାରା ଶୋଭା ପାଉଥାନ୍ତି । ଆହୁରି ମଧ୍ୟ (ଅମ୍ବୁଜ) ପଦ୍ମପରି ଅଟନ୍ତି । ପଦ୍ମ (ସରେ) ପୁଷ୍କରଣୀରେ ପ୍ରଫୁଲ୍ଲ ହୋଇ ବିକଶିତ ହୋଇଥାଏ (ଫୁଟିଥାଏ) । ପିଠା ମଧ୍ୟ (ପ୍ରଫୁଲ୍ଲ) ଫୁଲିଛି ଓ (ସର) ଦୁଧସରରେ ଶୋଭିତ ହୋଇଛି । ୧୬ । ଅକଲୁଷୀ—ପାପହୀନ ଭକ୍ତର ଚିତ୍ତପରି ହୋଇଅଛନ୍ତି । ନିଷ୍ପାପ ଭକ୍ତର ହୃଦୟ (ସ୍ନିଗ୍ଧତର) ସ୍ନେହପ୍ରବଣ ଅଟେ । ପିଠା (ସ୍ନିଗ୍ଧତର) ଅତି ଚିକ୍କଣ ହୋଇଅଛି । (ଅଙ୍ଗନା) ସ୍ତ୍ରୀ (ଅଙ୍ଗ) ଶରୀର ପରି କୋମଳ ଓ ସୁନ୍ଦର । ୨୩ । ଅମ୍ବୁପେଟୀ—ନଡ଼ିଆ । ୨୪ । ଦ୍ରାକ୍ଷା—କିସିମିସ୍ । ମାଧ୍ଵୀକ—ମଧୁ ବା ମହୁରେ ତିଆରି ମାଦକ ଦ୍ରବ୍ୟ ।

* ଅନ୍ୟମାନେ (ଖ) * ଟାକର

ଅଁଳା ବଦଣ୍ଡ ଟଭ୍ର ଆମ୍ବିଳ ବେଭସ
ଅମ୍ଳ ଲେମ୍ବୁ ଜାମ୍ବୁଆ କରୁଣା ଜମ୍ବୀ ରସ । ୨୫ *
ଅଳାଇଚ ଗୁଡ଼ତ୍ଵଚ ଜାଇଫଳ ପୁଣି
ଅମର କୁସୁମ ଆଦି ମିଶା ଦନ୍ତାପାଣି ଯେ । ୨୬
ଅନ୍ତଃପୁରେ ଦେବଗଣ ଆରପୁରେ ଋଷି
ଅପର ପୁରେ ଗନ୍ଧର୍ବ ଆଦି ଭୁଞ୍ଜି ବସି ଯେ । ୨୭
ଅପରପୁରେ ଅସୁର ରାକ୍ଷସ ଭୋଜନ
ଅଜ ମେଷ ମହିଷ ମୃଗାଦି ମହାମୀନ ଯେ । ୨୮
ଅନ୍ନ ମିଶା କୁଢ଼ନ ପଳଅ ବୁଟପୁଆ
ଅଗ୍ନିପୋଡ଼ା ଜେକା ଭଜା ବେ*ମାଂସ କଲିଆ ଯେ । ୨୯
ଅଣ୍ଡାରାଇ ଅଗ୍ନିରେ ଖଣ୍ଡ ଖଣ୍ଡ ସେକା
ଅପରେ ଦଧିବକତ (?) ଗୋଟା ନଅଁ ପକା ଯେ । ୩୦
ଅନ୍ନ ଚୂଡ଼ାଚକଟା କଦଳୀ-ଛେନା ମିଶି
ଅଗ୍ରେ କୁଣ୍ଡେ କୁଣ୍ଡେ ଯେନ ଖାଉ ଥାନ୍ତି ବସି । ୩୧
ଅସ୍ଥି ଚଣା ମାଂସ ସେ ଚୋବାନ୍ତି ମସମସ
ଅଲଗେ ଗିଳନ୍ତି ଅନ୍ତ ମେଦ ପିଠା ମାଂସ ଯେ । ୩୨

ଅଷ୍ଟରତ୍ନ ପାତ୍ରରେ ଭୁଞ୍ଜିଲେ ତିନିଦେବେ
ଅଥ ହେମମୟ ପାତ୍ରେ ଇନ୍ଦ୍ର ଆଦି ଦେବେ ଯେ । ୩୩

ଅପରେ ଗନ୍ଧର୍ବ ଆଦି ରଜତ ପାତ୍ରରେ
ଅତି ଅନ୍ଧ ଋଷି ତାମ୍ର ଶୁଦ୍ଧ ପାତ୍ରବରେ ଯେ । ୩୪
ଅସୁରେ ଚର୍ପର ଶନ୍ନ ବାସ ସୀଂସା ଖଣ୍ଡେ
ଅକର୍ମଜନେ କଂସାଦି ଆଉ କାଠ କୁଣ୍ଡେ ଯେ । ୩୫
ଅନ୍ୟ ଜତି ଭୃତ୍ୟେ ତିନି ମୃତ୍ତିକା-ପାତ୍ରରେ
ଅଶ୍ମପାତ୍ରରେ କେ ଅବା ଭୁଞ୍ଜିଲେ ପତ୍ରରେ । ୩୬

---

୨୬ । ଅମର କୁସୁମ—ଲବଙ୍ଗ । ଦନ୍ତାପାଣି—ଜାଇଫଳ ପ୍ରଭୃତି ଯୋଗ ଯେଉଁ ପାଣିରେ ମିଶାଇଥାନ୍ତି । ୨୮ । ମହାମୀନ—ବଡ଼ମାଛ । ୩୨ । ଅଲଗେ—ଦାନ୍ତରେ ନ ଲଗି ଶୂନ୍ୟେ ଶୂନ୍ୟେ ଗିଳିଦିବା । ୩୫ । ଅକର୍ମ-ଜନେ—ମନୁଷ୍ୟମାନେ । ୩୬ । ଅଶ୍ମ ପାତ୍ର—ପଥର ବାସନ ।

*ଜମ୍ବୁରସ * ମେସା

ଜମ୍ବୀ—ଜମ୍ବିଲ—'ଉଆଉ ଜମ୍ବିଲ ଲିଖନ କୋଳ' ଦୁଷ୍ପ୍ରାପ୍ୟ କଥା ।

ଅମରେ ଅମୃତ ଦ୍ରବ୍ୟ ରୁଷି ଫଳ କନ୍ଦ
ଅସୁରେ ଅମେଧ ନରେ ସୁଭୋଜ୍ୟ ଆନନ୍ଦ ଯେ । ୩୭
ଅତ୍ୟନ୍ତ ସନ୍ତୋଷ ସର୍ବେ ହେଲେ ଭୋଜନରେ
ଅନ୍ତଃପୁରେ ଦେବ ଋଷି ପାଶେ ସୂଦକାରେ ଯେ । ୩୮
ଅହିବଲ୍ଲୀ ଚମ୍ପକ ଖଦିର ମୋତିଚୂର୍ଣ୍ଣ
ଅଶନାନ୍ତେ ଦେଲେ ଖାଲେ କର୍ପୂର ଚନ୍ଦନ ଯେ । ୩୯
ଅମରବୃନ୍ଦ ବସା-ପୁରେ ହେଲେ ପରବେଶ
ଅହର୍ନିଶି ଭଞ୍ଜରାଜ ଭଜେ ଭବ ଈଶ ଯେ । ୪୦

---

# ଚତୁର୍ବିଂଶ ଛାନ୍ଦ

## ବେଶ-ମଧୁଶଯ୍ୟା

ରାଗ—କନଡ଼ା

ଅତି ରହସ୍ୟରେ    ଗୁପ୍ତ ରହ ପୁରେ
ମିଳି ସକଳ ସଖୀଜନ,
ଅମ୍ବିକାର ସୁବେଶରେ ଚେତନ
ଅଣାଇଲେ ବେଶ    ଭୂଷଣ ସୁବାସ
ସୁବାସ ପେଟିକାମାନ ସେ, ସଜନୀ
ଅମ୍ବୁ ପୂର୍ଣ୍ଣ କୁମ୍ଭ ଅଗ୍ରେ ସ୍ଥାପିଲେ
ଅତି ମଙ୍ଗଳେ ହୁଳହୁଳି ଦେଲେ
ଅଖିଳ ସୁଷମା—    ସୀମା ଗଜଦନ୍ତ-
ଚଉକାରେ ବସେଇଲେ ସେ, ଅମ୍ବିକା । ୧

---

୩୮ । ସୂପକାର—ପାଚକ । ୩୯ । ଅହିବଲ୍ଲୀ—ପାନ । ଅଶନାନ୍ତେ—ଭୋଜନ ଶେଷରେ । ବସାପୁରେ—ବସାଘରରେ ।

—— * ——

### ଚତୁର୍ବିଂଶ ଛାନ୍ଦ

୧ । ରହପୁରେ—ଗୋପ୍ୟପୁରେ ବା ଗୋପ୍ୟଗୃହରେ । ଚେତନ—ଏକାଗ୍ରମନ । ସୁବାସ—ସୁଗନ୍ଧଦ୍ରବ୍ୟ ଓ ଉତ୍ତମ ଲୁଗା । ଅଖିଳ ସୁଷମାସୀମା—ସମସ୍ତ ଶୋଭା ଯାହାଠାରେ ସରିଯାଇଛି ।

ଅଗ୍ରେ ଦର୍ପଣ ଦେ— ଖାନ୍ତେ ଦରହାସ—
ଚନ୍ଦ୍ରମୁଖ ପ୍ରତିବିମ୍ବିଲା,
ଅଚ୍ଛ-ଜଳେ କି ଜଳଜ ଫୁଟିଲା ।
ଅରି ଅରିଷ୍ଟ ଆ— ପଣା ଅଭୀଷ୍ଟରୁ
ଅନଙ୍ଗ ଫୁଲ୍ଲ ଜଟିଳ ସେ, ସମୟେ ।
ଅଟେ ଯେ ଯେଉଁ ଅଙ୍ଗକୁ ଘଟଣ
ଅଳଙ୍କାର ଦାଉଛନ୍ତି ସଖୀଗଣ
ଅସ୍ତ୍ର ଶସ୍ତ୍ର ଧରି ଶାଣ ଦିଆଉଛନ୍ତି
ଠାଣ ବୁଝି ରଣେରଣ ସେ, ସମୟେ । ୨
ଅଗୁରୁ ଧୂପେ ଧୂ— ପିତ କରି କେତେ
ସୁବାସ ତୈଳକଣ ଲଗାଇ
ଝଡି ଆଶ୍ୱାସି ମାଙ୍ଗ କୁଣ୍ଡିଆଇ
ଅମୂଲ୍ୟ ଜରି ଭ— ଡ଼ା ଭିଡ଼ ବାନ୍ଧିଲେ
ଚୂଡ଼ା ଅଂଶକୁ ଲଗାଇ ସେ, ସଜନୀ
ଅଗ୍ରେ ତା ସୂତାର ପାଟଫୁଲ
ଅନାଇଲେ ଯା ମନ ଯାଏ ଭୁଲି ।
ଅଙ୍କୁରିତ ହେମ— ଦୁବ ଖୋସି ଦେଲେ
କାମ-ଅନୁକୂଳ ବୋଲି ସେ, ସଜନୀ । ୩

---

୨ । ଦରହାସ—ଅଳ୍ପହାସଯୁକ୍ତ । ଦର୍ପଣ—ଆଇଁଣି । ପ୍ରତିବିମ୍ବିଲା—ପ୍ରତିଫଳିତ ହେଲା । ଅଚ୍ଛଜଳେ—ନିର୍ମଳ ଜଳରେ । ଜଳଜ—ପଦ୍ମ । ଅରି... ଜଟିଳ—ମହାଦେବ କାମର (ଅରି) ଶତ୍ରୁ ତାଙ୍କର (ଅରିଷ୍ଟ) ଦୁର୍ଦ୍ଦଶା (ଆପଣାର) କାମର (ଅଭୀଷ୍ଟ) ବାଞ୍ଛିତ ଥିବାରୁ ସେ ଖୁସି ହେଲା । ରଣେରଣ—କାମ । ଅସ୍ତ୍ର...ରଣେରଣ—କାମ ନିଜ ଅସ୍ତ୍ରଶସ୍ତ୍ର ଧରି ତାହାର ଠାଣ ବୁଝି (କେଉଁ ଅସ୍ତ୍ରଶସ୍ତ୍ର କେତେଦୂର ଶାଣ ପାଇଲେ ଠିକ୍ ହେବ, ଏହା ବିଚାରି) ଶାଣ ଦିଆଉ ଅଛି କି ? ୩ । ଧୂପିତ କରି—ଧୂପ ଦେବାଦ୍ୱାରା ସୁଗନ୍ଧିତ କରି । ସୁବାସ ତୈଳକଣ— ବାସନା ତେଲ । ଆଶ୍ୱାସି—ଆଶ୍ୱାସନା କଥା କହି । ମାଙ୍ଗ-ସୁନ୍ଥା । ଭିଡ଼ା—ବଡ଼ ପାଟଫୁଲ । ଅଂଶକୁ ଲଗାଇ—ବେକ ପାଖକୁ ଓହଳାଇ । ଅଙ୍କୁରିତ...ବୋଲି-କୌଣସି କାର୍ଯ୍ୟ ଆରମ୍ଭ ପୂର୍ବରୁ ଅଙ୍କୁରାରୋପଣ କରାଯାଏ । ପାଟସୂତା ବାନ୍ଧିବାକୁ କାମର ଅନୁକୂଳର ଅଙ୍କୁରାରୋପଣ ବୋଲି କହୁଅଛନ୍ତି । ଅଙ୍କୁରାରୋପଣରେ ଦୂବ ପ୍ରଭୃତି ବ୍ୟବହୃତ ହୁଏ ।

ଅଧ ଊର୍ଦ୍ଧ୍ୱ ମଧ୍ୟ — ଙ୍କ ଆନନ୍ଦ ସିନ୍ଧୁ—
ଭରେ କଅପଥ ବେଢ଼ାଇ
ଅଧ ଊର୍ଦ୍ଧ୍ୱ ମଧ୍ୟ ଶୋଭା ବୁଡ଼ାଇ
ଅମ୍ବୁନିଧିଫଳ— ଜାଲି ତାର ମୂଳ—
ପାଶୁଁ ଖଞ୍ଜିଲେ ମଡ଼ାଇ ସେ, ସୁନ୍ଦରୀ ।
ଅନୁ ଆନେ ଖୋସିଲେ ଦିବ୍ୟର୍ଣ୍ଣରୀ
ଅନ୍ତକରେ ଝଲକା ତାର ଚୋରୀ
ଅରବିନ୍ଦ ଜାତି ସେବନ୍ତି ମାଳତୀ
ଗର୍ଭ ଅତି ମନ୍ତହର ସେ, କୁନ୍ତଳେ । ୪

ଅବଳା ଲଲାଟ— ପଟ୍ଟେ ଝଟଝଟ
ଝୁଞ୍ଜୁ ଚନ୍ଦ୍ରଝୁମ୍ପି ଝଟକେ
ଅକ୍ଷି ମଟକେ ତା ଶୋଭା ଝଟକେ
ଅପୂର୍ବ ପଦ୍ମରା— ଗ ଗୁଣା ଖଞ୍ଜିଲେ
ସୁଭିଳ-ନାସାପୃଷ୍ଠକେ ସେ, ସଜନୀ ।
ଅଷ୍ଟରତ୍ନ ବସିଅଛୁ ପାଖରେ
ଅଛୁ ମଧ୍ୟରେ ନାୟକ ଶିଖରେ *
ଅପୂର୍ବ ନାକୁଆ— ସୀ ସୁକୁନ୍ତଳାର
ଦେଲେ ଅଧରପୁଟେ ଖଚେ ସେ, ସଜନୀ । ୫

ଅମର-ପୁର-ପୁ— ରନ୍ଦର-ମନ୍ଦର—
ବନ୍ଦନ କୁନ୍ଦନ-ବନ୍ଧଆ
ଅଂଶୁକରେ କରେ କର୍ଣ୍ଣ ଜଢ଼ଆ

---

୪ । ଅମ୍ବୁନିଧିଫଳଜାଲି—ମୁକ୍ତାଜାଲି ବିଶେଷ । ଅରବିନ୍ଦ—ପଦ୍ମ । ଜାତି—ମାଳତୀ ବା ଜାଈ (ବସନ୍ତ କାଳରେ ମାଳତୀର ବର୍ଣ୍ଣନା କବିସଂପ୍ରଦାୟ ବିରୁଦ୍ଧ ।) ପାର୍ବତୀଙ୍କ ବିବାହ ବସନ୍ତ କାଳରେ । ଅକ୍ଷିମଟକ—ଆଖିପଲକ । ଶିଖର-ପାଚିଲା ଡ଼ାଳିମ୍ବର ମଞ୍ଜିପରି ରଙ୍ଗ ମାଣିକ୍ୟକୁ ଶିଖର କହନ୍ତି । ଉର୍ଦ୍ଧ୍ୱରେ ନିର୍ମିତ (ନାୟକ) ମଧ୍ୟମଣି । ୬ । ଅମର······ବନ୍ଧଆ (ଅମରପୁର) ସ୍ୱର୍ଗପୁରରେ (ପୁରନ୍ଦର ମନ୍ଦର) ଇନ୍ଦ୍ରଙ୍କ ଘରେ ସୁଦ୍ଧା ବନ୍ଦନୀୟ । କୁନ୍ଦନ—ସୁନା । ଅଂଶୁକରେ—କରଣରେ । ବାଳୀଇନ୍ଦ୍ର—ନାରୀଶ୍ରେଷ୍ଠ ।

ଅଗ୍ରେ ତାର ମଲ୍ଲୀ— କରି ଫିରଫିର
ପୁଣି କି ମାନ୍ତନ୍ତି ଆହା ସେ, କଣ୍ଠରେ ।
ଅଧୋଭାଗରେ ଖଞ୍ଜିଲେ ବାଳଚନ୍ଦ୍ର,
ଅଟେ ରୂପେ ତ ସ୍ୱଚ୍ଛ [ ଛ ? ] ବାଳୀଇନ୍ଦ୍ର,
ଅତି ଶୋଭା ବଦନେ ଦଶିଲ ପୁଣି ସେ
ଶରଦରେ ଯଥା ଚନ୍ଦ୍ର ସେ, ସୁନ୍ଦରୀ । ୭

ଅଯୁଁକାମଞ୍ଜିଆ ସ୍ୱରୁ ସ୍ୱୁପସରୀ
ଯାଗଡ଼ା ଛେଗ୍ରୁ ଯୋଡ଼ ମାଳ
ଅଂସାଡ଼ୁଳୀ ପୁଞ୍ଜିକଆ ଶିକୁଳୀ
ଅବତାର ତାର ମନୋହର ହାର
କଣ୍ଠେ ଖଞ୍ଜିଦେଲେ ବାଳୀ ସେ, ସୁନ୍ଦରୀ ।
ଅଷ୍ଟକୋଣ ପୁଷ୍ଟ ରତ୍ନେ ସୁନ୍ଦର
ଅଛୁ ନାୟକ ମଧ୍ୟ ହୀର-ସାର
ଅପୂର୍ବ ପଦକେ ମୁଦ ବକ୍ଷଭୁକେ
ମଣ୍ଡିଲେ ହୃଦ ଉପର ସେ, ସୁନ୍ଦରୀ । ୭

ଅତୁଲ କାଚ କା— ଯୁଗ ରତ୍ନ-ଚୂଡ଼ୀ
ଦେଲେ ପ୍ରେମେ ସେ ଶ୍ରୀଭୁଜରେ
ଅର୍କ ପର ଯେ ବରଜେ ତେଜରେ
ଅଙ୍ଗୁଳରେ ମୁଦ ଉପମା ବ୍ୱବାଧା
ତାଡ଼ ଦେଲେ ସୁବାହୁରେ ସେ, ସଜନୀ
ଅଣ୍ଠାରେ ଯେ ଖଞ୍ଜିଲେ କଙ୍କଣୀ
ଅନ୍ତୁକରେ ତା ହେମ ଓଡ଼ଆଣୀ
ଅତନୁ କେଳି-କା— ଳରେ ଲୁଭୁହଳେ
କାନ୍ତଚନ୍ତ୍ ନେବ ଜାଣି, ସେ ଲସ୍ୱନ । ୮

---

୭ । ହୀରସାର—ବ୍ରହ୍ମକାନ୍ତ ହୀର । ନାୟକ—ପଦକ । ୮ । ଉପମାବବାଧା—ଯାହାର ଉପମା ନାହିଁ ।

ଅଭିରାମ-କାମ — ସମର ସମୟେ
ପ୍ରେମକୁ କରିବ ଉଠିଆ
ଅନୁକୂଳ ହାଲେ ହେବ ଖୁଣ୍ଟିଆ
ଅବଳା-ପାଦରେ ଦଳା ଖଞ୍ଜି ଧୀରେ
ଦେଲେ ପାହୁଡ଼ ଝୁଣ୍ଟିଆ ସେ, ସଜନୀ ।
ଅପଘନେ ଘନସାର ଚନ୍ଦନ
ଅର୍ଚ୍ଚନାରେ କଲେ ଅତି ବନ୍ଦନ,
ଅତର ସୁବାସ— ଜଞ୍ଜା ଝୀନବାସ
ପିନ୍ଧିଲେ ନାରୀରତନ ସେ, ସୁନ୍ଦରୀ । ୯
ଅତି ସୂକ୍ଷ୍ମ ତନେ ପକ୍ଷ୍ମଳାକ୍ଷୀ ନେତ୍ରେ
ଅଞ୍ଜନେ ରଞ୍ଜି ଦେଲେ ନଞ୍ଜି
ଅବଲୋକନେ ଦମ୍ଭ ହେଲା ଭଞ୍ଜି
ଅଳକେ ଚନ୍ଦନ— ଜୋରା ଛୋରା ଗୁନ୍ଥି
ସୁରସ୍ତର ହେବେ ଗଞ୍ଜି ସେ, ତଥାରେ ।
ଅନୁରୂପେ ସିନ୍ଦୂର-ବିନ୍ଦୁ ଦେଲେ
ଅର୍ଦ୍ଧ ଚନ୍ଦ୍ର ମୃଗମଦେ ଲେଖିଲେ
ଅଳି-ଚିବୁକରେ ମକର ଗଣ୍ଡରେ
ଆଳି ଖାଳି ତର୍କ କଲେ ହେ, ସୁନ୍ଦରୀ । ୧୦
ଅରୁଣ-କମଳ— ପାଦେ ଲକ୍ଷାବୋଳ
ଜମ ସୁଷମ କରି ଲେଖି
ଅଟକିଲା ସେ ଶୋଭା ଦେଖି ଆଖି
ଅଧମ ଅପରା— ଧୀ ପାପି-ଲୋକର
ଶୋକ ହରି କରେ ସୁଖୀ ସେ, ଚରଣ ।

---

୯ । ଅଭିରାମ—ମନୋହର । ଉଠିଆ କରିବ—ବଢ଼ାଇବ । ଖୁଣ୍ଟିଆ—ରାଜା ବଜେ ହେଲେ ଯେ ଆଗେ ଆଗେ ଚାଲେ । ଘନସାର—କର୍ପୂର । ଜଞ୍ଜା—ସିଞ୍ଚା ହୋଇଥିବା । ୧୦ । ପକ୍ଷ୍ମଳାକ୍ଷୀ—ଯାହାର ନେତ୍ର ଲୋମଯୁକ୍ତ । ମୃଗମଦେ—କସ୍ତୁରୀରେ । ଅଳି···ତର୍କ କଲେ—ମୁଖପଦ୍ମରେ ଅଧର ମଧୁ କୋଷ ପରି । ତାହା ନିକଟରେ ଚିବୁକ ଥିବାରୁ ତହିଁରେ (ଅଳି) ଭ୍ରମର ଓ ଗଣ୍ଡ କାମର ଉଦ୍ଦୀପକ ଥିବାରୁ ତହିଁରେ କାମର ବାହାନ ମକରକୁ ଲେଖିଲେ । ଆଳି—ସଖୀ ।

ଅରବିନ୍ଦ କୁନ୍ଦ ଚମ୍ପା ନିଆଳୀ
ଅଶୋକାଦି-କୁସୁମ-ଗନ୍ଧମାଳୀ
ଅଞ୍ଜନ-ତମାଳ— କେଶୀ-ଉତ୍ତମାଙ୍ଗେ
ହେଜ ଖଞ୍ଜିଦେଲେ ଆଳ ସେ, ଜୁଡ଼ାରେ । ୧୧
ଅହିବଲ୍ଲୀ ଘଙ୍ଗି ଦେଇଲେ କୋମଳାଙ୍ଗୀ
ଇଙ୍ଗିତରୁ ଜାଣି ସଙ୍ଗିମା
ଅଶନ ତା' କଲା ନବରଙ୍ଗିମା
ଅଧର-ଦେଶରେ ସ୍ମିତ କି ରସରେ
ପ୍ରସରେ ତା ରଙ୍ଗେ ଘେନି ସେ, ବାଳାର ।
ଅବମ୍ପକ କନକ-କଳ୍ପଲତା
ଅଣାଇଲେ କି ପ୍ରତ୍ୟକ୍ଷେ ବିଧାତା
ଅଖିଳ-ଜନମା— ନଙ୍କର ମାନସ—
କାଢ଼ି ପୂର୍ତ୍ତିକୁ ଏ ଦାତା ସେ, ସଜନୀ । ୧୨
ଅବା ଦେବାଳୟୁ ଶୋଭି କୌଶେଶୟୁ
ନିଃଶେଷରେ ହରି ଆଣିଲେ
ଅମ୍ବିକାର କାନ୍ତି ନିରମାଣିଲେ
ଅସୁରବର ତା— ଇକା ନାଶ ଶୁଭ—
ସମ୍ଭାର ଏ ଭିଆଇଲେ ସେ, ଭଇବ ।
ଅବଳାର ସ୍ତୁଳ ବେଶ ନିର୍ମାଣି
ଅଥ କେଳିବାସ କଲେ ମଣ୍ଡଣି
ଅଳକା ଭୁବନ— ସୁଷମା ନିଞ୍ଜନ
କରି ଯା ଶୋଭାରେ ଗଣି ସେ, ମନ୍ଦିର । ୧୩
ଅସ୍ତ୍ରରତ୍ନ-ବଶେ ଅନ୍ଧକାର ପାଶେ
ପଶିପାରୁ ନାହିଁ ଯାହାର
ଅଭିରାମତା ତ ସୃଷ୍ଟି ବାହାର

---

୧୧ । ଉତ୍ତମାଙ୍ଗେ—ମସ୍ତକରେ । ୧୨ । ଅହିବଲ୍ଲୀ—ପାନ । ତା ରଙ୍ଗେ—ପାନରଙ୍ଗକୁ । କନକକଳ୍ପଲତା—ସୁନାଞ୍ଚଆର କଳ୍ପଲତା । ୧୩ । ଦେବାଳୟୁ—ନିଦଶାଳୟୁ, ସ୍ୱର୍ଗ । କୌଶେଶୟୁ—ବ୍ରହ୍ମା । କୁଶେଶୟୁ—ପଦ୍ମ । ୧୪ । ଅଭିରାମତା—ସୌନ୍ଦର୍ଯ୍ୟ ।

ଅକ୍ଷି-ଚକ୍ଷୀ ଲକ୍ଷି      ରତ୍ନବାକୁ ଅଠା—
କାଠ ଅଚଳେ ସେ ପୁର ହେ, ସୁଜନେ ।
× × × × ×
× × × × ×
× × ×   × × ×
× × × × × । ୧୪

ଅମୂଲ୍ୟ ରତ୍ନପ—      ଲଙ୍କ ପରେ ଶୋଧ
ସେ ଯତନ କରି ପରାଇ ✳
ଅବ୍ଜଶେଖରଙ୍କୁ ଭଜେ କରାଇ
ଅଚଳଜା ଲଜ୍ଜା—      ବର୍ଣ୍ଣଙ୍କି ଆଣନ୍ତୁ
ସଖୀ ପହଣ୍ଡ ମଣାଇ ସେ, ସଜନୀ ।
ଅତି କଷ୍ଟେ ବଳାଇଲେ ଦେହଳୀ
ଅକଥନ ମନ୍ମଥ-ରସ-କେଳି
ଅଧିକ ଉଜ୍ଜ୍ୱଳ—      ଶାସ୍ତ୍ରେ ହେଳ (କ ?) ବଳ—
ଭଦ୍ରଭଞ୍ଜ କହେ ଭଲି ହେ, ସୁଜନେ । ୧୫

---

✳

୧୫ । ପରାଇ—ପକାଇ ବା ବସୁଛ । ଦେହଳୀ— ଏହୁଣ୍ଡୀ ବନ୍ଧ । ଉଜ୍ଜ୍ୱଳଶାସ୍ତ୍ର—କାମଶାସ୍ତ୍ର ।



# ପଞ୍ଚବିଂଶ ଛାନ୍ଦ

## କେଳି-ମନ୍ଦିର-ପ୍ରତ୍ୟାବର୍ତ୍ତନ

ରାଗ—ଦକ୍ଷିଣୀ

ଅନଙ୍ଗ-ସଙ୍ଗର ସାରି ରମାବର କେଳିମନ୍ଦିରରୁ ଆସେ ଯେ
ଅବା ଏକ କଳା ଘେନି ଭଳେ କଳାକର ମହୀ-ନଭୋଦେଶେ ଯେ
ଅଙ୍ଗନା, ଅଙ୍ଗ ଅସ୍ତବ୍ୟସ୍ତ ଦିଶେ ଯେ
ଅନୁମାନ ହୋଏ ମିଳିନ୍ଦ-ମରନ୍ଦପିଆ ଅରବିନ୍ଦ ନା ସେ ଯେ । ୧
ଅନିଦ୍ରାବଶରୁ ସଙ୍କୁଚିତ ଚକ୍ଷୁ ଦୃଶ ଦିଶୁଥିଲା ରଙ୍ଗ ଯେ
ଅରୁଣ ଖଞ୍ଜନ ଧରିଛି ଆଣି କି ଗେରୁଆଇଲା ଅନଙ୍ଗ ଯେ
ଅଙ୍ଗନା, ଅଶକତ ହୋଏ ଅଙ୍ଗ ଯେ
ଅଇଲା ଟୋପରୁ କି ଧରା କରିଣି ଗଜ ହୋଇଛି ବିଭଙ୍ଗ ଯେ । ୨
ଅସିତ କୁନ୍ତଳ ଫିଟିଯାଇ ଫୁଲ ଖଡ଼ୁଛି ଯା' ଗୋଟି ଗୋଟି ଯେ
ଅତନୁ ଅଯଶ-କାଳିମା ଉଡ଼ାଇଣ ଯଶରତ୍ନ କରେ ବୃଷ୍ଟି ଯେ
ଅପାଙ୍ଗ, ରଙ୍ଗରେ ମୋହୁଛି ସୃଷ୍ଟି ଯେ
ଅନାଇ ଅଙ୍ଗନା ଅଙ୍ଗଭଙ୍ଗୀ କି ତ ଭୁଲିଯିବେ ପରମେଷ୍ଠୀ ଯେ । ୩

---

### ପଞ୍ଚବିଂଶ ଛାନ୍ଦ

୧ । ଅନଙ୍ଗସଙ୍ଗର—କାମଯୁଦ୍ଧ, ସୁରତ । କେଳିମନ୍ଦିର—ମଧୁଶଯ୍ୟାଘର । କଳାକର—ଚନ୍ଦ୍ର । ଏକକଳା ଘେନି—ଦ୍ୱିଖଣ୍ଡ ଚନ୍ଦ୍ରର ଆକୃତି ଘେନି । ମହୀ ନଭୋଦେଶ—ପୃଥିବୀ ରୂପ ଆକାଶରେ । ରାତ୍ରି ଜାଗରଣ ଜନିତ କ୍ଷୀଣତା ହେତୁ ଏପରି କଥିତ ହୋଇଅଛି । ମିଳିନ୍ଦ···ଅରବିନ୍ଦ—ଭ୍ରମର ଯେଉଁ ପଦ୍ମରୁ ମହୁଟିକକ ପିଇଦେଇଛି । ୨ । ଅରୁଣଖଞ୍ଜନ—ନାଲିଆ ଖଞ୍ଜନ ପକ୍ଷୀ । ଗେରୁଆଇଲା—ରଙ୍ଗ ଚଢ଼ାଇଲା । ଟୋପ—ଯେଉଁ ଶାଖାବୃତ ଖାତରେ ହାତୀକୁ ଭୁଲାଇ କରି ଆଣି ପକାନ୍ତି । ବିଭଙ୍ଗ—ବିକଳ । ୩ । ଅସିତ କୁନ୍ତଳ—କଳାକେଶ । ଅଯଶକୁ କଳାବୋଲି ବର୍ଣ୍ଣନା କରିବା କବିସମ୍ପ୍ରଦାୟପ୍ରସିଦ୍ଧ । ଅପାଙ୍ଗରଙ୍ଗରେ—ଚକ୍ଷୁ କ୍ରୀଡ଼ାରେ । ପରମେଷ୍ଠୀ—ବ୍ରହ୍ମା ।

ଅଧର ଦନ୍ତେ ଖଣ୍ଡ ଖଣ୍ଡ ଗଣ୍ଡରେ ଲାଗିଛି ତାମ୍ବୁଳଦାଗ ଯେ
ଅମୃତପିଣ୍ଡକୁ ବଳେ ବଳେ ରାହୁ କରି ଦିଅନ୍ତେ କବଳ ଯେ
ଅଧିକ, ଯେଣୁ ନ ପାରିଲା ଗିଳି ଯେ
ଦନ୍ତ-ଘାତରେ ସେ ଅନ୍ତର ହୁଅନ୍ତେ ଉନ୍ନତ ପଡ଼ୁଛି ଗାଲ ଯେ । ୪
ଅମ୍ବୁଜ-କୋରକ ଉଚ୍ଚ-କୁଚଯୁଗ ବସିଛି କରଜ-ରେଖା ଯେ
ଅନ୍ଧକଅରି ଉପରେ ଶତଶତ ଶଶୀକଳା ଗଲା ଦେଖା ଯେ,
ଅପୂର୍ବ, ଅଚଳଶୃଙ୍ଗ-ସ୍ଥିତ ଏ ତ ଯେ
ଅଚଳଚୂଳେ କୁଳିଶ ବାଜିବାରୁ କ୍ଷତ କି ହୋଇଛି ଜାତ ଯେ । ୫
ଅଳସଭରରୁ ଜଳସଞ୍ଚରଜା ଧୀରେ ଢ଼ଳି ଢ଼ଳି ଆସେ ଯେ
ଅନିରୁଦ୍ଧରଥ ଖଞ୍ଜା କଷା ଶ୍ଳଥ ହୋଇ ଗତାଉଣ-ବଶେ ଯେ
ଅଚଳେ, ଦୋହୋଲି ଦୋହୋଲି ଚଳେ ଯେ
ଅଂଶୁକ ଅଞ୍ଚଳ ପତାକା ଉଡ଼ୁଛି ଅଂଶୁ ଖସିପଡ଼େ ତଳେ ଯେ । ୬
ଅତିଶୟ ତନୁ ହେଲେହେଁ ସୁତନୁ ତନୁ ଦିଶେ କେଡ଼େ ଚୋରୁ ଯେ
ଅଧିକୁଁ ଅଧିକ ଶୋଭା ଦିଶେ ଯଥା ଶାଣ-କ୍ଷୀଣ ହେଲେ ହୀରା ଯେ
ଅବମା, ଉପରେ କଅବା ଆସି ଯେ
ଅମ୍ବୁଦ କୋଳରେ ଖେଳୁ ଖେଳୁ ବିଦ୍ୟୁଦ୍‌ବଲ୍ଲୀ ଏ ପଡ଼ିଲା ଖସି ଯେ । ୭

---

୪ । ଖଣ୍ଡ ଖଣ୍ଡ—କ୍ଷତ ବିକ୍ଷତ । ଅମୃତ ପିଣ୍ଡକୁ···ଗାଲ ଯେ—ରାହୁ ବଳାତ୍କାରରେ ଗିଳିପକାଉଥିବା ବେଳେ ଚନ୍ଦ୍ର ଆକାରରେ ବଡ଼ ହୋଇଥିବାରୁ ଗିଳିପାରିଲା ନାହିଁ । ଉକୁଟି ପଦାକୁ ବାହାରି ପଡ଼ିଲାବେଳକୁ ଦାନ୍ତରେ କାମୁଡ଼ି ଧରିବାରୁ ଏପରି କ୍ଷତବିକ୍ଷତ ହୋଇ ରକ୍ତ ହୋଇଛି ପରା ! ୫ । ଅମ୍ବୁଜକୋରକ ଉଚ୍ଚ କୁଚ—ପଦ୍ମକଢ଼ ପରି ଆକାର ବିଶିଷ୍ଟ ଓ ଉଚ୍ଚ ସ୍ତନ । କରଜରେଖା—ନଖଚିହ୍ନ । ଅନ୍ଧକଅରି—ମହାଦେବ । ଶଶିକଳା—ଚନ୍ଦ୍ରକଳା । ଅଚଳଚୂଳ—ପର୍ବତଶିଖରରେ । କୁଳିଶ—ବଜ୍ର । ୬ । ଅଳସ ଭରରୁ—ଅଧିକ ଆଳସ୍ୟ ହେତୁ । ଅନିରୁଦ୍ଧ ରଥ—କନ୍ଦର୍ପର ରଥ । ଖଞ୍ଜା—ସନ୍ଧି । ଶ୍ଳଥ—ହୁଗୁଳା । ଅଚଳେ—ଉତ୍ତମରୂପେ ଚଳି ନ ପାରିବା ହେତୁରୁ । ଅଂଶୁକ ଅଞ୍ଚଳ—ଲୁଗା କାନି । ଅଂଶୁ—ବେକରୁ, କାନ୍ଧଉପରୁ । ଦୋହଲି ଯାଉଥିବା ରଥରୁ ପତାକା ଖସିପଡ଼ିବା ଓ ସେ ବଙ୍କେଇ ଝୁଲିବା ସ୍ୱାଭାବିକ । ଅତିଶୟ ତନୁ—ଅତି କ୍ଷୀଣ । ସୁତନୁ—ସୁରୂପା । ତନୁ—ଶରୀର ।

ଅପୂର୍ବ ଝଟକ ହାଟକ ଅଙ୍ଗ ଯା ଝିମି ଝିମି ଝାଳ ଗଳ ସେ
ଅର୍କ-ତେଜ-ଲାଗି କନ୍ଦର୍ପ-କନକଲତା ଯାଉଛି ଝାଉଁଳି ସେ
ଅମ୍ଳତା, ଉପରେ ଅଛି କି ମିଞ୍ଜି ସେ
ଅସ୍ଫୁଟ କେତକୀ ଦଳରେ ତୁଷାର ବୃଷ୍ଟି ହେଲ କିବା ପାଂଶୁ ସେ । ୮

ଅଦ୍ଭୁତ ଏ ବେଳେ କେଶପାଶ ହାବଡ଼େ ପଡ଼ିଯାଇଥିଲ ଏଣୀ ସେ
ଅତିରେକ ଗତି ରତି କରିବାରେ ଅଳପ ତାହାକୁ ଜାଣି ସେ
ଅବଶ୍ୟ; ପଡ଼ିଥିଲ ଦୃଢ଼େ ଧରି ସେ
ଅଙ୍ଗଯାକ ନଖ-ଶିଖରେ ବିଦାରି ଦେଇଛି ତ ଗିରି ଗିରି ସେ । ୯

ଅବଳା ଏ'ତ ଅତନୁ-ଭୂତ ଦେଖି ଡରେ ଚମକିଲା ଜାଗି ସେ
ଅମନ୍ଦ ବକୁଳ ମିଶ୍ରିଗନ୍ଧ ପରି ଗୋରୀ ଅଙ୍ଗେ ଗନ୍ଧ ମିଶି ସେ
ଅଙ୍ଗରୁ, ରସରକ୍ତ ନେଲା ଶୋଷି ସେ
ଅନ୍ତକରେ ଭୂତ-ପତି ନ ଥିଲେ ତ ବଞ୍ଚି ନ ଥାନ୍ତା ସୁକେଶୀ ସେ । ୧୦

ଅଳଗେ ଦଖଳ ରଖି ମର୍ମସ୍ଥାନ ଧରି ବ୍ରହ୍ମମନ୍ତ୍ରେ ଝାଡ଼ି ସେ
ଅବରୁଦ୍ଧ କରି କାଳ ହୃଦ-ସମ୍ପୁଟକରେ ରଖିଲେ ଭରି ସେ
ଅଦ୍ୟାପି, ଅଛି ସେ ବିକାର କିଛି ସେ
ଅଭିନବ ଧରା ଖଞ୍ଜନ ପରା ତ ନେତ୍ର ଘାରି ପଡ଼ୁଅଛି ସେ । ୧୧

ଅପାଙ୍ଗ ଶର ଭୁରୁ ଧନୁ ନିତମ୍ବ ଚକ୍ର ତୀକ୍ଷ୍ଣ ନଖ କୁନ୍ତ ସେ
ଅଧର ଟେଗା କପୋଳ ଢାଲ କର୍ଣ୍ଣପାଶ କୁଳିଶ ସୁଦନ୍ତ ସେ

---

୮ । ତୁଷାର—କାକର । ପାଂଶୁ—ବଗୁର । ୯ । କେଶପାଶ—ଫାନ୍ଦ । ଏଣୀ—ହରିଣୀ । ଅତିରେକ ଗତି ରତି କରିବାରେ—ଶୀଘ୍ର ଚାଲିବାରେ ଆସକ୍ତା ହୋଇ (ରତି ଶବ୍ଦ ମଧ୍ୟ କ୍ରୀଡ଼ାକୁ ସୂଚାଉଅଛି) ଭୂତ ଶରୀରହୀନ ହେବା ସ୍ୱାଭାବିକ । ୧୦ । ଗୋରୀ—ଗୌରବର୍ଣ୍ଣା । ବକୁଳ ସଙ୍ଗେ ଉପମିତ ହେବା ହେତୁ 'ଗୋରୀ' ପଦ ପ୍ରଦତ୍ତ ହୋଇଛି । ଭୂତପତି—ମହାଦେବ ଓ ଭୂତମାନଙ୍କର ରାଜା । ୧୧ । ସମ୍ପୁଟକ—ଫରୁଆ । ମନ୍ତ୍ରବଳରେ ଭୂତମାନଙ୍କୁ ଫରୁଆରେ ପୂରାଇବା କଥା ଗୁଣିଆମାନଙ୍କଠାରୁ ଶୁଣାଯାଏ । ଅବରୁଦ୍ଧ···ଭରି···ଆଲିଙ୍ଗନ କରି । ଅଭିନବ ଧରା ଖଞ୍ଜନ—ନୂଆ ହୋଇ ଧରା ହୋଇଥିବା ଖଞ୍ଜନ ପକ୍ଷୀ । ୧୨ । ଅପାଙ୍ଗ—କଟାକ୍ଷ । କୁଳିଶ—ବଜ୍ର । ଗୌରୀଙ୍କ ତତ୍କାଳୀନ ହାବଭଙ୍ଗୀକୁ ଯୁଦ୍ଧରୂପେ ବର୍ଣ୍ଣନା

ଅନେକ – ସ୍ପୃହା ଘେନି ଚନ୍ଦ୍ରାନନା ଯେ
ଅନଙ୍ଗ ସଙ୍ଗରେ ସଙ୍ଗର କଲା ସେ ବର-ସହାୟକୁ ଘେନି ଯେ । ୧୨
ଅମୂଲ୍ୟ-କେଳିମଣ୍ଡପ ଦୁର୍ଗେ କାନ୍ତ ଅଙ୍ଗ-ମୁରୁଜରେ ଭଞ୍ଜ ଯେ
ଅବମର୍ଦ୍ଦିତ ଯାଏ ନାନା କଙ୍କଣ ଧ୍ୱନି ବାଦ୍ୟ ବିଶ୍ରାମ ନାହିଁ ଯେ
ଅସମ—ମୋହ ମନରେ ଅଛନ୍ତି ଯେ
ଅଶୋକାବ ଶର ଲେଖି ନାୟକ ନାୟିକାର କଲ୍ପ ଧନୁ ଯେ । ୧୩
ଅଳି-ଗୁଣ ସମ୍ବନ୍ଧ ମାଳୀ-ଶରକୁ କଲ କର୍ଣ୍ଣେ ଟାଣି ଯେ
ଅନ୍ତକପଟକୁ ବନ୍ଧ ଟାଣି ଧନ ଛନ୍ଦରେ ସେ ପୁଷ୍ପବୃଷ୍ଟି ଯେ
ଅଙ୍ଗନା – ଧାଞ୍ଜି ହସ୍ତ ଅସ୍ତ୍ର ଅଙ୍ଗେ ଯେ
ଅଟକିଲା ପ୍ରାଣ ପୁଣ ଏ ଦ୍ୱିଜଣ ଯୁଝିଲେ ଜଣକ ସଙ୍ଗେ ଯେ । ୧୪
ଅତ୍ୟନ୍ତ-ନଭ୍ରତ-ଶିରୋମଣି-ହାର ନ ପାରିଲା ଯେଣୁ ଜୟେ ଯେ
ଅଙ୍ଗନାକୁ କାନ୍ତସଙ୍ଗୁ ଫିଟାଇଲା କରି ମନ୍ତ୍ରଣା ଉପାୟେ ଯେ
ଅଧିକ—ବଳ ହେଲା ଏଣୁ ତାର ଯେ
ଅଦ୍ଭୁତ ପ୍ରକାର କାହିଁକି ସେ ମାର ବରପକ୍ଷ ବାମ କର ଯେ । ୧୫
ଅର୍କପ୍ରଭ କର୍ଣ୍ଣଚାଟଙ୍କ-ଚକ୍ରକୁ ମଣିକେଶୀ ଝଲକାଇ ଯେ
ଅକ୍ଷି-ଅନ୍ତ କୁନ୍ତ କାନ୍ତକୁ ଫିଙ୍ଗିଲା ଅଞ୍ଜନ-ବିଷେ ବିଷାଇ ଯେ

---

କରୁଯାଉଅଛି । ଅନଙ୍ଗ ସଙ୍ଗରେ-କାମ ସଙ୍ଗେ । ସଙ୍ଗର-ଯୁଦ୍ଧ । ବରସହାୟ—ସ୍ୱାମୀ ରୂପ ସହାୟ ଅର୍ଥାତ୍ ସ୍ୱାମୀ ସାହାଯ୍ୟ । ୧୩ । ମୁରୁଜ—ସୈନ୍ୟମାନେ ଗଡ଼ ଭିତରେ ଯେଉଁ ଆବୃତ ମଞ୍ଚ ଉପରେ ରହି ଯୁଦ୍ଧ କରନ୍ତି । କାମର ଅଶୋକ ଶର ପ୍ରହାର ଦ୍ୱାରା ନାୟକ ନାୟିକାଙ୍କୁ ମଧ୍ୟ ଅଶୋକ କରୁଥିବାର ସୂଚିତ ହେଉଅଛି । ୧୪ । ଅଳିଗୁଣ—ଭ୍ରମର ରୂପ ଗୁଣରେ । କାମଧନୁର ଗୁଣ ଭ୍ରମରମାଳାରେ ନିର୍ମିତ । ଦ୍ୱିଜଣ – ନାୟକନାୟିକା । ଜଣକ ସଙ୍ଗେ-କାମ ସଙ୍ଗରେ । ୧୫ । ଜୟେ – ଯୁଦ୍ଧ ଜୟରେ । ଫିଟାଇଲା—ଅଲଗା କରିଦେଲା, ଭେଦବୁଦ୍ଧି ଜାତ କରାଇଲା । ମନ୍ତ୍ରଣା ଉପାୟେ – କୁଟିଳ ମତ ପ୍ରୟୋଗ କରି । ବରପକ୍ଷ—ବରର ପ୍ରତିକୂଳ । ଏଠାରେ ମୁଗ୍ଧା ନାୟିକାର 'ରତୌ ବାମା' ଲକ୍ଷଣକୁ ଭଙ୍ଗୀକ୍ରମେ ଯୁଦ୍ଧରୂପେ ବର୍ଣ୍ଣନା କରାଗଲା । ୧୬ । ଅର୍କପ୍ରଭ—ସୂର୍ଯ୍ୟ ପରି ଉଜ୍ଜ୍ୱଳକାନ୍ତି । କର୍ଣ୍ଣଚାଟଙ୍କ-କାପ ପରି ଏକପ୍ରକାର ଅଳଙ୍କାର । ମଣିକେଶୀ —କଳାକେଶଯୁକ୍ତା । ଝଲକାଇ—ହଲାଇବା ଦ୍ୱାରା ଚକ୍ ଚକ୍ କରି ।

ଅଟଇ, ସଦୟ-ହୃଦୟା ପୁଣି ଯେ
ଅମୃତ-କୁଚ-କାଞ୍ଚନ-କଳଶକୁ ଢ଼ାଳିଦେଲ ସେହିକ୍ଷଣି ଯେ । ୧୬

ଅକ୍ଷି କର୍କଣୀ ଶାଣାଦେ ବାଳାମଣି ଜୟ-ନିଶାଣ ବାଜିଲ ଯେ
ଅମଳ ହାର ଛୁଟି ବନ୍ଧ ହେବାର ଅବା ପୁଷ୍ପ-ବୃଷ୍ଟି କଲ ଯେ
ଅଦ୍ୟାପି, କର୍ଣ୍ଣ-ଫିରଫିର ବାଜା ଯେ
ଅତ ଉଲ୍ଲାସେ ଉଡ଼ାଇ ଆସୁଛନ୍ତି ଜିଣିଲୁ ବୋଲି ନବୀନା ଯେ । ୧୭

ଅଳସାଇ ହୋଇ ଗର୍ବାଳସୀ ହଂସୀ ଧୀରେ ଧୀରେ ଆସେ ଯଥା ଯେ
ଅବମା-ମୁଣ୍ଡକୁ ମଣ୍ଡି ମଣ୍ଡି ଉଚ୍ଚଶ୍ରେଣୀ ଆଟନ୍ତି ତଥା ଯେ
ଅନ୍ତକେ, ମିଳ ପରସ୍ପର ସଙ୍ଗ ଯେ
ଅବଲମ୍ବ କରି କରେ ଶ୍ରୀକରକୁ ଅଗ୍ରେ ପଙ୍କ୍ତି ମଣାନ୍ତେ ଯେ । ୧୮

ଅତ ସଘନ ଅଙ୍ଗନା ଅଙ୍ଗ ୧ ଅଙ୍ଗେ ଲଜ୍ଜାଙ୍କତା ମଣ୍ଡିଥିଲ ଯେ
ଅତନୁ-ଅନୁରାଗ-ନାଗ ତାହାକୁ ଆସି ପଶି ଦଳି ଦେଲା ଯେ
ଅନାଇ, ବିବେକ-ମାଳୀ ତା ପୁଣି ଯେ
ଅଧିକ ଯତନେ ମଣ୍ଡାନ୍ତେ ତା ଘରୁ ଚନ୍ଦ୍ରମୁଖୀ ବାଳାମଣି ଯେ । ୧୯

---

ଅକ୍ଷି-ଅନ୍ତ—ନେତ୍ର ପ୍ରାନ୍ତ ବା କଟାକ୍ଷ । ଅଞ୍ଜନ-ବକ୍ଷେ—ଅଞ୍ଜନରୂପ ବକ୍ଷଦ୍ୱାରା । ବକ୍ଷାଇ—ବକ୍ଷାକ୍ତ କରି । ଅମୃତ···କ୍ଷଣି—ଅମୃତପୂର୍ଣ୍ଣ ସ୍ୱର୍ଣ୍ଣ କଳଶ ପରି ସ୍ତନକୁ ଯୋଗରେ ମଧ୍ୟ ମୁଗ୍ଧା ନାୟିକାର 'ମାନେ ମୃଦୁଃ' ଲକ୍ଷଣ ଅଳଙ୍କାର ବ୍ୟାପାରଦ୍ୱାରା ସୂଚିତ ।

ଲୋଚନେ ହରିଣଗର୍ବମୋଚନେ ମା ବିଭୂଷୟ ନତାଙ୍ଗି କଜ୍ଜଳୈଃ
ଶୁଦ୍ଧ ଏବ ଯଦି ଜୀବହାରକଃ ଶାୟକୋ ନ ଗରଳେନ ଲିପ୍ୟତେ ।
( ରସକଲ୍ପଦ୍ରୁମ )

୧୭ । ନବୀନା—ମୁଗ୍ଧା । ୧୮ । ଗର୍ବାଳସୀ ହଂସୀ—ହଂସୀର ଗତି ସ୍ୱଭାବତଃ ମନ୍ଦ । ପୁଣି ସେ ଯଦି ଗର୍ବବତୀ ହୁଏ, ତାହାର ଗତି ମନ୍ଦତର ହେବ, ଏଥିରେ ସନ୍ଦେହ ନାହିଁ । ୧୯ । ସଘନ—ସଘନେ, ନିବିଡ଼ ଭାବରେ । ଅଙ୍ଗଅଙ୍ଗେ—ମନୋହର ଅଙ୍ଗରେ । ଅତନୁ-ଅନୁରାଗ-ନାଗ—କାମଜନିତ ପ୍ରୀତିରୂପକ ହସ୍ତୀ । ପ୍ରୀତି ଅଧିକ ହେବାରୁ ଲଜ୍ଜା କମିଗଲା; ପୁଣି ବିବେକ ଜାଗ୍ରତ ହେବାରୁ ଲଜ୍ଜାର ଉଦୟ ହେଲା ।

୧-ଅଙ୍ଗ-ଅଙ୍ଗେ(ଖ) । ଏପରି ପାଠରେ 'ଅଙ୍ଗରୂପ ବୃକ୍ଷରେ' ଏହି ଅର୍ଥ ହେବ ।

ଅମ୍ବୁଜ-ବଦନ ଖୋଲି ବାଳୀ ଆଳୀ-ଅଳକ ନ ଧାରେ ସୁଦ୍ଧି ଯେ
ଅଳକା ଅଞ୍ଜନ ସିନ୍ଦୂର ଚନ୍ଦନ ବ୍ୟତ୍ୟକ୍ରମେ ଅଙ୍ଗେ ଶୋଭୁ ଯେ
ଅଧିକ୍ତୁ, ଅଧିକ କୌତୁକ କଲ ଯେ
ଅବକାଶ ଧରି ପରିହାସ କଲେ ସଖୀ ଭଙ୍ଗେ ଉଞ୍ଜୁଗଜ ଯେ । ୨୦

---

# ଷଡ୍‌ବିଂଶ ଛାନ୍ଦ

## ସଖୀ-ପରିହାସ

ରାଗ—କୁମ୍ଭକାମୋଦ

ଅଦ୍ଭୁତ ଅବଧାନ ନାଥ ହେଲ ମିତ | ଏ ରତ ବନ୍ଧରେ
ଅଳିବରତ ପୁ—ରତକୁ ଦେହ୍ୟା | କଲ ଯା ଗନ୍ଧରେ । ୧
ଅର୍କ ଅନଳ ଚନ୍ଦ୍ରମା ପରସ୍ପରେ | ହୋଇବେ ମିଳିତ
ଅମ୍ବୁଜ-ଉଚ୍ଛେଦ ମେରୁ-ଗିରିବର | ହେବା ତ ତୁଳିତ । ୨

---

୨୦ । ଅମ୍ବୁଜବଦନ—ପଦ୍ମମୁଖ । ଆଳୀଅଳି – ସଖୀସମୂହ । ବ୍ୟତ୍ୟକ୍ରମେ—ଓଲଟପାଲଟ ହୋଇ ଅଞ୍ଜନ ସ୍ଥାନରେ ଅଳକା ଓ ତା ସ୍ଥାନରେ ଅଞ୍ଜନ, ଚନ୍ଦନ ସ୍ଥାନରେ ସିନ୍ଦୂର ଓ ସିନ୍ଦୂର ସ୍ଥାନରେ ଚନ୍ଦନ ଇତ୍ୟାଦି ।

—ः०ः—

## ଷଡ୍‌ବିଂଶ ଛାନ୍ଦ

୧ । ଅଦ୍ଭୁତ—ଅଦ୍ଭୁତ (ସୃଷ୍ଟିର ବ୍ୟତିକ୍ରମ) । ଅଳିବରତ—ସୀତ୍ରବତ, ଚନ୍ଦ୍ରହସ୍ତୀ । ପୁରତକୁ—ସମ୍ମୁଖକୁ । ଦେହ୍ୟା – ଦେହଲତା । ହସ୍ତୀ ଦେହଲତା ନିକଟକୁ ଯିବା ଶୁଣି ଯାଇ, କଲ୍ପ ଏଠାରେ ବିପରୀତ ହେଲା । ଶୀତ୍ରବତ ଧବଳ ଥିବାରୁ କର୍ଣ୍ଣଧାରଙ୍କୁ ଶିବଙ୍କ ଉପମା ରୂପେ କହିଛନ୍ତି । ଗୌରୀ ଦେହ୍ଲିମା ସ୍ଥାନୀୟା ।

୨ । ଅର୍କ—ସୂର୍ଯ୍ୟ । ଅନଳ— ଅଗ୍ନି । ଚନ୍ଦ୍ରମା— ଚନ୍ଦ୍ର । ଏମାନେ ପରସ୍ପର ମିଳିଗଲେ ଅର୍ଥାତ୍ ଅଗ୍ନି, ସୂର୍ଯ୍ୟ ଓ ଚନ୍ଦ୍ର ରୂପ ଶିବଙ୍କର ଚକ୍ଷୁ ତିନିଗୋଟି ଗୌରୀଙ୍କର ମୁଖ ଅବଲୋକନ କଲାବେଳେ ମିଳିତ ହେଲେ । ଅମ୍ବୁଜ ଉଚ୍ଛେଦ—କୋମଳ ଦେହ ଦେଶ । ମେରୁଗିରି—ମେରୁ ପର୍ବତ । ତୁଳିତ ହେବା—ଓଜନ କରାଗଲା । ଶିବଙ୍କର ନୂତନ ଦେହପ୍ରସଙ୍ଗ ଉଲ୍ଲେଖ କରିବାବେଳେ ମେରୁ-ଶିଖ-ସଦୃଶ ପାର୍ବତୀଙ୍କର ସ୍ତନ ତୁଳିତ ହେଲା, ଏହା ଅଦ୍ଭୁତ ।

ଅକାଳେ କଦମ୍ବ— କୁସୁମ-କଦମ୍ବ ପ୍ରଫୁଲ୍ଲ ହୋଇଲା
ଅମର-ସରରେ ସେ ତ ହେମଲତା କି ଶୋଭା ପାଇଲା । ୩
ଅତି ଶୁକ୍ଳ ଅଳି କେତକୀରେ କେଳି କଲା କି କୌତୁକେ
ଅନ୍ୟୋନ୍ୟ ମିଶିଲେ କ୍ଷୀରସିନ୍ଧୁ ସ୍ୱର୍ଣ୍ଣ-ରେଖା ଯେ ଉତ୍ସୁକେ । ୪
ଅବକ୍ର-ଶୁକ୍ଳକଳା ଉଇଲା ସେ ହେଲା ନିଶାର୍ଦ୍ଧେ ଉଦିତ
ଅଶନି ହୁଇଲେ କୋମଳ-ପଲ୍ଲବ ପଡ଼ିଲା ନିପୁତ । ୫
ଅତି କୋମଳ ଶି—ରୀଷ ଫୁଲ ଜର- ଜରରେ ପୀଡ଼ିତ
ଅର୍ଜୁନ-ଜୀମୂତ ଉପରେ ତଡ଼ିତ ହୋଇଲା ଜଡ଼ିତ । ୬

---

୩ । ଅକାଳେ—ବର୍ଷା ବ୍ୟତୀତ କାଳରେ । କଦମ୍ବ କୁସୁମକଦମ୍ବ—କଦମ୍ବ ଫୁଲସମୂହ । ପ୍ରଫୁଲ୍ଲ ହୋଇଲେ—ଫୁଟିଗଲେ । ଏହାଦ୍ୱାରା ନାୟକନାୟିକାଙ୍କର ରୋମାଞ୍ଚ-ରୂପ ସାତ୍ତ୍ୱିକ ବିକାରକୁ ଲକ୍ଷ୍ୟ କରାଯାଇଛି । ଅମର ସରରେ—ଗଙ୍ଗାରେ । ହେମଲତା-ସୁନାଲତା । ଗଙ୍ଗା ପ୍ରବାହ ପରି ଧବଳ ଶିବଙ୍କ ଅଙ୍ଗରେ ସ୍ୱର୍ଣ୍ଣଲତା ପରି ପାର୍ବତୀଙ୍କ ଦେହ ଶୋଭା ପାଇଲା । ଜଳରେ ଲତାର ଅବସ୍ଥିତି ଅତି ଅସମ୍ଭବ, ଏଣୁ ଅଦ୍ଭୁତ । ୪। ଶୁକ୍ଳ ଅଳି—ଧଳା ଭଅଁର । କେତକୀ ଫୁଲରେ (କେଳି) କ୍ରୀଡ଼ା କଲା । କି କୌତୁକେ—କେଉଁ କୌତୁକରେ । ଭ୍ରମର ଧଳା ହେବା ଓ କେତକୀ ଫୁଲ ସହିତ କ୍ରୀଡ଼ା କରିବା ଏକାନ୍ତ ଅସମ୍ଭବ । (କ୍ଷୀରସିନ୍ଧୁ) କ୍ଷୀର ସମୁଦ୍ର ପରି ଧବଳ ଶିବ ଓ ସ୍ୱର୍ଣ୍ଣରେଖା ପରି ଗୌରୀ ପରସ୍ପର ମିଳିତ ହେଲେ । ସ୍ୱର୍ଣ୍ଣରେଖା ନଦୀ ଲବଣ ସମୁଦ୍ରରେ ପଡ଼ିଛି । କ୍ଷୀରସମୁଦ୍ରରେ ପଡ଼ିବା କଥା ଏଠାରେ ଅଦ୍ଭୁତ । ୫ । ଅବକ୍ର-ଶୁକ୍ଳ-କଳା—ଚନ୍ଦ୍ରଙ୍କର ସୁନ୍ଦର କଳା ଗୋଟିଏ । ନିଶାର୍ଦ୍ଧେ—ରାତି ଅଧରେ । ଅଶନି—ବଜ୍ର । ପଲ୍ଲବ—କଅଁଳିଆ ପତ୍ର । ନିପୁତ—ନଷ୍ଟିତ । ଚନ୍ଦ୍ରଙ୍କର ଏକ କଳା ଅର୍ଥାତ୍ ଦ୍ୱିତୀୟା ଚନ୍ଦ୍ର ସନ୍ଧ୍ୟାବେଳେ ଉଦିତ ହୁଏ, ନିଶାର୍ଦ୍ଧରେ ନୁହେଁ । ଅପର ପକ୍ଷରେ (ଅବକ୍ର—ଶୁକ୍ଳକଳା) ଚନ୍ଦ୍ରଙ୍କ ସୁନ୍ଦର କଳା । ଚନ୍ଦ୍ରକଳା ଶୃଙ୍ଗାରସ୍ଥିତି—ରତିକାଳରେ ନାୟିକାଙ୍ଗରେ ସ୍ଥାନବିଶେଷରେ ତିଥିଭେଦରେ ନଖାଘାତ ଆଘାତ । ପାର୍ବତୀଙ୍କର କୋମଳ ଶରୀରକୁ ପଲ୍ଲବରୂପେ କଳ୍ପନା କରାଯାଇଅଛି । ଚନ୍ଦ୍ରଶେଖର ଶିବଙ୍କୁ ବଜ୍ରରୂପେ କଳ୍ପିତ । ୬ । ଜରଜରରେ—ଦାରୁଣ ଜ୍ୱରରେ । ଅର୍ଜୁନ ଜୀମୂତ—ଧଳା ମେଘ । ପାର୍ବତୀଙ୍କ ଶରୀରର ମୃଦୁତା ତାଙ୍କୁ ଶିରୀଷଫୁଲ ସଙ୍ଗେ ତୁଳିତ କରିଅଛି । ବିଜୁଳି ସାଧାରଣତଃ ବର୍ଷୋନ୍ମୁଖ କଳାମେଘରେ ଦେଖାଯାଏ, ମାତ୍ର ଶରତ୍କାଳରେ ଜଳଶୂନ୍ୟ ଧଳା ମେଘରେ ଦେଖାଯାଏ ନାହିଁ ।

ଅଙ୍କୁଶ-ବର୍ଜିତେ ବଦେହ ବାନ୍ଧନ୍ତି    କନ୍ଦର୍ପ-ଦନ୍ତୀ
ଅମ୍ବର ନ ଥିଲା ଲୋକେ ଲୋଟାଉଛନ୍ତି    ବାସବ-ସମ୍ପତ୍ତି । ୭
ଅନନ୍ତ ଉପରେ ଚଳି ହେମବଲ୍ଲୀ    କଲା ଯା କେଳିକି
ଅନେକତ ଏଥି ଉପରେ ଉପରେ    ଦେଖିବା ବଳି କି ? ୮
ଅଷ୍ଟୁଟେ କେତକୀ—ଦଳ ଚିତ୍ରଫଳ    ପଡ଼ିଲା ବହୁତ
ଅବଶ୍ରାମେ ଭିଳ—ଫୁଙ୍କରୁ ଅନିଳ    ହେଲା ଅତଯତ । ୯
ଅସିତ ଅମ୍ବୁଜ ଅନ୍ତରୁ ନ ସରେ    ଅନେକ ଶାୟକ
ଅନ୍ତର୍ଗତ ଯାଏ ଚଳିଗଲେ ହୋଏ    କି ସୁଖଦାୟକ । ୧୦
ଅରୁଣ ଅନ୍ତରୁ କରୁଥିଲା ବୃଷ୍ଟି—    ପୀୟୂଷ-ବୃଷ୍ଟିକି
ଅଙ୍କୁରିତ କରି ଆନନ୍ଦ-ବୀଜ ଯେ    ମେଳିଲା ସୃଷ୍ଟିକି । ୧୧
ଅମୂଲ୍ୟ-ବୀଣା ଭୁ—ସ୍ୱୀୟୁବା କରରେ    କରନ୍ତେ ତାଡ଼ନା
ଅମୃତ ମଧ୍ୟରେ ବଚନ ଉଠରେ    ଝଁଙ୍ଗୁନା ଝଁଙ୍ଗୁନା । ୧୨

---

୭ । ବଦେହ—କାମ । କନ୍ଦର୍ପଦନ୍ତି—ହସ୍ତୀ ହସ୍ତୀମା । ଅମ୍ବର ନ ଥିବା ଲୋକେ—ଲୁଗାପର୍ଯ୍ୟନ୍ତ ନ ଥିବା ଲୋକମାନେ । ବାସବ ସମ୍ପତ୍ତି—ଇନ୍ଦ୍ର ସମ୍ପତ୍ତି । ଅଙ୍କୁଶ ନ ଥାଇ ହାତୀଟିଏ ବାନ୍ଧିବା କଷ୍ଟ, କିନ୍ତୁ ଦୁଇଟି ହାତୀ ଯେ ବାନ୍ଧିଲା, ତାର ଅଙ୍କୁଶ ଥିବା ଦୂରର କଥ, ଦେହ ମଧ୍ୟ ନାହିଁ, ଅର୍ଥାତ୍ ଯେ ବଦେହ, ଏହା ଅତି ଅଦ୍ଭୁତ । ମହାଦେବ ଦିଗମ୍ବର ହୋଇ ଇନ୍ଦ୍ରସମ୍ପତ୍ତି ତୁଲ୍ୟ ପାର୍ବତୀଙ୍କ ଅଙ୍ଗଲାଭ କଲେ । ୮ । ଅନନ୍ତ—ଆକାଶ(ମହାଦେବ) । ହେମବଲ୍ଲୀ—ସୁନା ଲତା । କେଳିକି—କ୍ରୀଡ଼ାକୁ । ଅନେକତ—ଅଦ୍ଭୁତ କଥା । ଉପରେ···ବଳି କି—ଏହାଠାରୁ ବଳି ଆଉ କଣ ଦେଖିବା ଲୋକଙ୍କି ? ଶୂନ୍ୟ ଆକାଶରେ ସୁନାଲତା ମାଡ଼ିବା ଅସମ୍ଭବ । ୯ । ଅଷ୍ଟୁଟେ କେତକୀ ଦଳେ ଫଟି ନ ଥିବା କେତକୀ ପାଖୁଡ଼ାରେ । ଚିତ୍ରଫଳ—ମୁକ୍ତା । ଅନିଳ—ପବନ । କେତକୀ ପାଖୁଡ଼ା ପରି ଗୌରୀ ଦେହରେ ବହୁତ ଝାଳବିନ୍ଦୁ ମୁକ୍ତାପରି ଦେଖାଯାଇଲା । ୧୦ । ଅସିତ ଅମ୍ବୁଜ—ନୀଳପଦ୍ମ । ଶାୟକ—ଶର । ଅନ୍ତର୍ଗତ ଯାଏ-ଅତି ଭିତରକୁ । ଅନ୍ତର୍ଗତ ପର୍ଯ୍ୟନ୍ତ ବାଣ ଚାଲିଗଲେ ସୁଖ ଦେବା ଅସମ୍ଭବ । ନୀଳପଦ୍ମ ପରି ସୁନ୍ଦର ଚକ୍ଷୁରୁ କଟାକ୍ଷରୂପ ଶର ବାହାରି ଶିବଙ୍କର ଅନ୍ତର ପର୍ଯ୍ୟନ୍ତ ଚାଲିଗଲେ ସୁଦ୍ଧା ବଡ଼ ସୁଖଦାୟକ ହୋଇଥିଲା । ୧୧ । (ଅରୁଣ) ସୂର୍ଯ୍ୟ (ଅନ୍ତରୁ) ନିଜ ଦେହ ମଧ୍ୟରୁ (ପୀୟୂଷବୃଷ୍ଟି) ଅମୃତବୃଷ୍ଟି କରୁଥିଲା । ଚନ୍ଦ୍ରରୁ ଅମୃତ ଝରେ, ସୂର୍ଯ୍ୟରୁ ନୁହେଁ । ଅରୁଣ ବର୍ଣ୍ଣ ଅଧର ମାଧୁରୀରୂପ ଅମୃତ ବୃଷ୍ଟି କରୁଥିଲା । ଆନନ୍ଦବୀଜକୁ —ଆନନ୍ଦରୂପ ମଞ୍ଜିକୁ ଅର୍ଥାତ୍ ବୀଜାକାରରେ (ଅତି ସୂକ୍ଷ୍ମଭାବରେ) ଥିବା ଆନନ୍ଦକୁ ୧୨ । ବଣାଭୁମ୍ବୀ—ବୀଣାର ଲାଉ । ବୀଣାକୁ ତାର ହାତରେ ଧରିଲେ ଶବ୍ଦ ହୁଏ, କିନ୍ତୁ ବୀଣାର ଲାଉ ଧରିଲେ ତା ହୁଏ ନାହିଁ ।

ଅହର୍ନିଶିରେ ଜୀବନ କରି ସେବି ହୋଇଲୁ ଅନ୍ତର
ଅର୍କ ଅମ୍ବୁଜ ପ—ରାଏ କାନ୍ତେଭଟେ କଲୁ ତ ବେଭାର । ୧୩
ଅଞ୍ଜି ପ୍ରସାରି କେ—ଉଁ ସଖୀ କହଇ ଚରଣ ନିକଟରେ
ଅରଜିଛୁ ଆଜ କାନ୍ତଠାରୁ ଯାହା ଦିଅ ତୁ ଏଥିରେ । ୧୪
ଅର୍ଦ୍ଧପ୍ରହରେ ନା—ନେଖି ଦେଖି ଲେଖି—ଥିଲା ଯା ଚତୁର !
ଅଳକ-ଚନ୍ଦନ—କେଉଁ ତେ ରା ତୋଳ କିଭିଲା କି କର । ୧୫
ଅଣୁମାତ୍ର ଥିଲେ ହଂସୂକ୍ଷ୍ମ ତୁଳିରେ ତନୁ ଲଭେ ତ୍ରାସ
ଅର୍ଦ୍ଧଚନ୍ଦ୍ର ଚିହ୍ନ ସର୍ବାଙ୍ଗେ ମଣ୍ଡନ ହୋଇଛି ଏ କିସ ? ୧୬
ଅତି ବନ୍ଧ କରି କହନ୍ତେ କାଣେଶ ଲାଜରେ କାତର
ଅଧୋମୁଖୀ ହୋଇ ସଜନୀଙ୍କି ଗୃହ୍ନି ନ ଦିଏ ଉତ୍ତର । ୧୭
ଅବଲମ୍ବେ ସଖୀ—ମାଜଣା ସାଧନ ସଧାନେ ବଢ଼ାଇ
ଅଙ୍ଗକୁ ସୁବେଶ କଲେ ସେ ଅନେଷ— ଉପମା ବୁଡ଼ାଇ । ୧୮
ଅବ୍ଜ-ସମ୍ଭବ ଗୃହ୍ନି ଜମାଧବ— ମୁଖକୁ ଇଙ୍ଗିତ—
ଅନ୍ତରେ ବୋଇଲେ ରଜତ ହୋଇଲେ ସୁବର୍ଣ୍ଣ ଆଜ ତ । ୧୯
ଅଳତା ମରାଏ ଉତ୍ତଶ କ ହୃଦୟେ ମନ୍ଦାର-ସୁମନ
ଅସିତ-କଣ୍ଠେ ତ ଠାବେ ଠାବେ ବଂକ୍ତ ହୋଇଛି ସେ ବର୍ଣ୍ଣ । ୨୦

---

୧୩ । (ଅହର୍ନିଶିରେ) ଦିନରାତି, (ଜୀବନ କରି) ପ୍ରାଣେଠାରୁ ଅଧିକ ପ୍ରିୟ ଭର୍ତ୍ତାର (ସେବି) ସେବାକରି (ଅନ୍ତର ହୋଇଲୁ) ଦୂର ହୋଇ ରହିଲୁ । ଅର୍କ-ଅମ୍ବୁଜ—ସୂର୍ଯ୍ୟ ଓ ପଦ୍ମ । ଆମ୍ଭେମାନେ ତୋତେ ଜୀବନ ପରି କରିଥିଲୁଁ, ତୁ ଆମ୍ଭଙ୍କୁ ଦୂର କରିଦେଲୁ ଓ (କାନ୍ତ ସଙ୍ଗେ) ପଦ୍ମ ଅତିଦୂରରୁ ଆସିବା ସୂର୍ଯ୍ୟଙ୍କ ସଙ୍ଗେ ଯେପରି (ବେଭାର) ବ୍ୟବହାର କରେ, ତୁ ସେହିପରି ବ୍ୟବହାର କଲୁ । ୧୪ । ଅଞ୍ଜି ପ୍ରସାରି—ହାତ ପତି । ୧୫ ଅଳକ ଚନ୍ଦନ କେଶ-ମସ୍ତକର ଚନ୍ଦନ ପାଟି । ୧୬ । ଅଣୁମାତ୍ର—ବାଳିଟିଏ ହୁଦ୍ଧା । ହଂସୂକ୍ଷ୍ମତୁଳୀ—ହଂସପର ତଳି ଧଳା ଓ କୋମଳ ତୂଳୀରେ । (ତ୍ରାସ) ପରସ ଲଭେ—ବ୍ୟଥା ପାଏ । ଅର୍ଦ୍ଧଚନ୍ଦ୍ରଚିହ୍ନ—ଅର୍ଦ୍ଧଚନ୍ଦ୍ରାକାର ନଖଚିହ୍ନ । ୧୭ । ଅଧୋମୁଖୀ—ତଳମୁହାଁ । ୧୮ । ମାଜଣାବଧି—ସ୍ନାନକାର୍ଯ୍ୟ । ୧୯ । ଅବ୍ଜସମ୍ଭବ—ବ୍ରହ୍ମା । ରଜତ—ରୂପା । ସୁବର୍ଣ୍ଣ—ସୁନା । ରୂପାପରି ଧବଳବର୍ଣ୍ଣ ଶିବ ସର୍ବିକାଗରେ ଉଜ୍ଜଳତ ଲୋକନ୍ୟନଙ୍କାରୁ ସୁନାପରି ଅଳ୍ପ ହଳଦୀ ବର୍ଣ୍ଣ ହେଉଥିଲେ । ଇଙ୍ଗିତ ଅନ୍ତରେ —ପରିହାସ୍ପୂର୍ଣ୍ଣ ମନରେ । ୨୦ । ଅସିତକଣ୍ଠେ—କାଳିଆ ବେକରେ ।

ଅନଙ୍ଗ ଦର୍ପ୍ପ ହୋଇଲାର ମୃଡ଼ ଯଷ୍ଟିରେ ଭ୍ରମିଲେ
ଅକ୍ଷଧର କ—ର-ଭର ଦେଇଣ ବିନମ୍ର ହୋଇଲେ । ୨୧
ଅମର-ସରିତ—ବନେ ସ୍ନାନ କରି ତ୍ରିପୁର ଈଶ୍ୱର
ଅନୁରୂପ ବର—ବେଶ ହେଲେ ସୁର—ଗଣେ ଯେ ସୁନ୍ଦର । ୨୨
ଅବ୍ଜ-ଭବ-ଆଦି କଲେ ଯଥାବିଧି ଅର୍ଚ୍ଚନ ବନ୍ଦନ
ଅବଲୋକିଲେ କ—ରି ପାଣି ହାରିକ ଏ ଭଞ୍ଜଗଞ୍ଜନ । ୨୩

— ୪୦୪ —

# ସପ୍ତବିଂଶ ଛାନ୍ଦ

## ହିମାଳୟଙ୍କର ଯୌତୁକ ଦାନ

ରାଗ—ମଙ୍ଗଳଗୁର୍ଜରୀ

ଅତି ତୋଷମନେ ଶୁଣ ବାବେଜନ ରସିକ
ଅଦ୍ରୀଶ ଈଶଙ୍କୁ ଦେଲେ ଯେତେ ଯଉତୁକ ଯେ । ୧
ଅଷ୍ଟରତ୍ନ ପଞ୍ଚବାସ ମଣ୍ଡନେ ସୁନ୍ଦର
ଅରଧାସ୍ୱ ହର ପର ଶୋଭା ପୀତାମ୍ବର ଯେ । ୨
ଅନେକ ଅକ୍ଷେ ମଣ୍ଡନ ଇନ୍ଦ୍ର ସମ ନରେ
ଅଷ୍ଟ ବେଳା ଶତ ରଥ ଦେଲେ ଏରୂପରେ ଯେ । ୩

---

୨୧ । ଦର୍ପ୍ପ—ଲଜ୍ଜାଯୁକ୍ତ । ମୃଡ଼—ଶିବ । ଯଷ୍ଟିରେ—ନନ୍ଦୀଙ୍କ ସହିତରେ । ଅକ୍ଷନିଧର କରଭର ଦେଇଣ—ନନ୍ଦୀଙ୍କ ଉପରେ ହାତ ରଖି । ୨୨ । ଅମରସରିତବନେ—ଗଙ୍ଗାଜଳରେ । ତ୍ରିପୁରଈଶ୍ୱର—ମହାଦେବ । ୨୩ । ଅବ୍ଜଭବ—ବ୍ରହ୍ମା ।

---

ସପ୍ତବିଂଶ ଛାନ୍ଦ

୧ । ଅଦ୍ରୀଶ—ହିମାଳୟ । ଈଶ—ମହାଦେବ । ୨-୩ । ପଞ୍ଚବାସ—ପାଞ୍ଚ ଲୁଗା । ମଣ୍ଡନେ—ମଣ୍ଡିତ ହୋଇଥିବାରୁ । ହର ପର—ବସ୍ତ୍ରଙ୍କ ପର । ଅରଧାସ୍ୱ—ଚନ୍ଦ୍ରଯୁକ୍ତ ଓ ଚନ୍ଦ୍ରକୁ ଧରିଥିବା । ପୀତାମ୍ବର—ହଳଦିବର୍ଣ୍ଣ ଲୁଗା । ଅନେକ ଅକ୍ଷେ—ଅନେକ ଅଶ୍ୱ ଓ ଅନେକ ଚକ୍ଷୁ । ଅଷ୍ଟବେଳାଶତ—ଏକହଜାର ।

ଅକ୍ଷୀଣ ମଦସମ୍ପାତ ଅଟ ମତ୍ତଗଜ
ଅମ୍ବୁଦ-ଗର୍ଜ୍ଜନ ଜାତି ନେପାଳ ସିନ୍ଧୁର ଯେ । ୪
ଅଞ୍ଜନ-ଅଚଳବତ ଦ୍ୟୁତି ଦନ୍ତଧାରୀ
ଅମରେଶ-କରୀ—ସମ ଦେଖେ ଲକ୍ଷେ କରୀ ଯେ । ୫
ଅନିଳୁଁ ପ୍ରଖର ଚଳିବାରେ ସ୍ରୋତୋ-ବାରି
ଅଙ୍ଘ୍ରି କୃଶ, ପୃଷ୍ଠଦେଶ ସିଂହାସନ ସଦୃଶ ଯେ । ୬
ଅତି ସୂକ୍ଷ୍ମ ରୋମ ଶୁଭ୍ର ଆବର୍ତ୍ତ-ଯୁକ୍ତ
ଅଶ୍ୱିନନ୍ଦନ ଚମ୍ପକ ଗନ୍ଧ ସ୍ଥୂଳତର ଯେ । ୭
ଅପୂର୍ବ ତୁରଙ୍ଗ ଅଶ୍ୱ ଇତ୍ୟାଦି ଲକ୍ଷେଣ
ଅଣାଇଲେ ଯୁବା ଶୋଭା କାନ୍ତି ଧାତ୍ରୀଗୁଣେ ଯେ । ୮
ଅତି ଉଚ୍ଚ ପ୍ରମାଣ ପ୍ରବଳ ତେଜମାନ
ଅସ୍ଥିରେ ଚଡ଼ନ୍ତି ରଙ୍ଗମଣେ ଶିବାଯାନ ଯେ । ୯
ଅମ୍ବୁଝଷ ଭ୍ରମଣେ ସଙ୍କୋଚନେ କୂର୍ମ
ଅହିରାଜ ପାଲଟଣେ ବେଗେ ବାତସମ ଯେ । ୧୦
ଅବୟବ ସୁନ୍ଦର-ଲକ୍ଷଣ-ଉପଲକ୍ଷ
ଅଶ୍ୱ ଜାତି ନ ଥି ଦେଖେ ଏ ରୂପରେ ଲକ୍ଷ ଯେ । ୧୧

---

୪-୧୧ । ଅକ୍ଷୀଣ-ମଦ-ସମ୍ପାତ—କ୍ଷୀଣ ନୁହେଁ ବା ଅତ୍ୟନ୍ତ । ମଦ—ହସ୍ତୀର ଗଣ୍ଡଦେଶରୁ ଯେଉଁ କୃଷ୍ଣବର୍ଣ୍ଣ ସୁଗନ୍ଧ ଜଳଧାରା ବହେ । ଅମ୍ବୁଦ ଗର୍ଜ୍ଜନ—ମେଘ ଗର୍ଜ୍ଜନ ପରି ଯାହାଙ୍କର ଗର୍ଜ୍ଜନ । ନେପାଳ ସିନ୍ଧୁର—ନେପାଳ ଦେଶୀୟ ହାତୀ । ଅଞ୍ଜନ ଅଚଳ—କୃଷ୍ଣବର୍ଣ୍ଣ ପର୍ବତ । ଦ୍ୟୁତି—ଦେହକାନ୍ତି । ଦନ୍ତଧାରୀ—ଦନ୍ତୀ । ଅମରେଶକରୀସମ—ଇନ୍ଦ୍ରଙ୍କ ହାତୀ ପରି । ଅନିଳୁଁ—ପବନଠାରୁ । ସ୍ରୋତୋବାରି—ସୁଅରେ ଚାଲୁଥିବା ପାଣି । ଅଙ୍ଘ୍ରି—ଗୋଡ଼ । କୃଶ—କ୍ଷୀଣ । ପୃଷ୍ଠଦେଶ—ପିଠି । ଆବର୍ତ୍ତ—ଭଉଁରୀ । ଅଶ୍ୱକର୍ଣ୍ଣର ଦକ୍ଷିଣାବର୍ତ୍ତ ଭଉଁରୀକୁ ଦେବମଣି କହନ୍ତି, ଏହା ଅତି ଶୁଭ । ସ୍ଥୂଳତର—ମୋଟା । ତୁରଙ୍ଗ ଅଶ୍ୱ—ତୁର୍କି ବା ତୁରସ୍କ ଦେଶୀୟ ଅଶ୍ୱ । ଯୁବା—ମଧ୍ୟ ବୟସର । ତେଜମାନ, ଉଚ୍ଚ ଓ ଲମ୍ବ ଦୁଇଟିର ପରିମାଣ । ଅସ୍ଥିରେ—ଚଞ୍ଚଳତା ବିଷୟରେ । ଚଡ଼ନ୍ତି—ବଳନ୍ତି । ରଙ୍ଗମଣେ—ଯେଉଁଠି ଗଣ୍ଠିକା ବିଷୟରେ । ଶିବାଯାନ—ଦୁର୍ଗାଙ୍କର ବାହନ ଅର୍ଥାତ୍ ସିଂହ । ଭ୍ରମଣେ—ଚକ୍ର କରି ବୁଲିବା ବିଷୟରେ । ଅମ୍ବୁ—ପାଣି । ସଙ୍କୋଚନେ—ଯାକି ହେବା ବେଳେ । କୂର୍ମ—କଇଁଛ । ପାଲଟଣେ—ଗତି ଫେରାଇବା ବିଷୟରେ । ଅହିରାଜ—ସର୍ପବିଶେଷ । ସୁନ୍ଦର ଲକ୍ଷଣ ଉପଲକ୍ଷ—ଶୁଭସୂଚକ ଲକ୍ଷଣରେ ଯୁକ୍ତ ।

ଅଂସ ଢୋଳକାରେ ନୋହେ ଗଜଚ ଗୋଚର
ଅର୍ଦ୍ଧ-ହାତକେ ଫେରନ୍ତି ଅଷ୍ଟ ଅଷ୍ଟ ବାର ଯେ । ୧୨
ଅଳପ ଛାଡ଼ନେ ଜଳରାଶିରେ ଝାମ୍ପିବେ
ଅନଳ ଉଚରେ ହେଲେ ସଉରେ ପଶିବେ ଯେ । ୧୩
ଅସିବର-ବାଣ-ବରଷାକୁ ନାହିଁ ଡର
ଅଙ୍ଗେ ଅସ୍ତ୍ର ଭେଦିଲେ ନୃତ୍ୟନ୍ତି ମନ୍ଦୁରର ଯେ । ୧୪
ଅର କଣ୍ଠ ପରେ ଥିଲେ ଉଠିବେ ତା ପରେ
ଅପୂର୍ବେ ଇରାକ ବାଜୀ ଦେଲେ ଏ ରୂପରେ ଯେ । ୧୫
ଅଲେଖା ସୁଲେଖା କଚ୍ଛୀ କୁମେଚା କପୋଷ୍ଟ
ଅବଲଖା ସଞ୍ଜାବ ଟାଙ୍ଗଣା ଗୁଣ୍ଡୁ ଜାତ ଯେ । ୧୬
ଅଙ୍ଗଯାଇ ଶ୍ୟାମକର୍ଣ୍ଣ ହର ଆଖନ୍ଦ ସ୍ତ
ଅପରେ ଆରବୀ ସିସ୍ତବୋଳ ସିନ୍ଧୁପାର ଯେ । ୧୭
ଅମୂଲ୍ୟ ପଞ୍ଚକଲ୍ୟାଣୀ ଜରଦା ଶ୍ୟାମଳା
ଅତୁଲ୍ୟ ମୁସ୍କୀ ମାଳା ସୁରଙ୍ଗ ପିଙ୍ଗଳା ଯେ । ୧୮
ଅପୂର୍ବ ସମୋଦ ଗୁଲକ୍ୟଣ୍ଟି କାନଖୋର
ଅଶୀ ସହସ୍ର ଏ ବାଜୀ ଦେଲେ ବାଛି କରି । ୧୯
ଅର୍ବୁଦ ଦେଲେ ପଦାତି ଅତି ବଳୀୟାର
ଅର୍ଜୁନସମ ଧାନୁଷ୍କ ଦ୍ରୋଣସମ ବୀର ଯେ । ୨୦
ଅଙ୍ଗବଳେ ଭୀମ ଯେ ଭାପଣେ କର୍ଣ୍ଣ ତୁଲ
ଅଶେଷ ଶସ୍ତ୍ର ଅଭ୍ୟାସି ସମରେ କୁଶଳ ଯେ । ୨୧
ଅନେକପୁରୀ ବିମାନ କନକ ନିର୍ମିତ
ଅଂଶୁକରେ ହୃତ କରେ ଅନ୍ଧାର-ସଂଘାତ ଯେ । ୨୨
ଅଙ୍ଗଶ୍ରମ ବିଶ୍ରାମରେ କରଇ ଖଣ୍ଡନ
ଅଚଳ ଭୂପାଳ ଦେଲେ ଏଥି ଶତଯାନ ଯେ । ୨୩

---

୧୨-୧୫ । ଅଂସ ଢୋଳକାରେ—ବେକ ଟେକିବାରେ । ଗଜଚ—ଘୋଡ଼ା ସବାର । ଜଳରାଶି—ସମୁଦ୍ର । ଅର—ଶତ୍ରୁ । କଣ୍ଠପରେ—ବାଙ୍ଗ ଉପରେ । ଇରାକ ବାଜୀ—ଇରାକ୍ ଦେଶର ଘୋଡ଼ା । ୨୦ । ଧାନୁଷ୍କ—ଧନୁର୍ଦ୍ଧାରୀ । ୨୨ । ଅନେକପୁରୀ-ବହୁତ ମହଲାଯୁକ୍ତ । କନକ-ସୁନା । ଅଂଶୁକରେ—କିରଣଦ୍ୱାରା । ·ସଂଘାତ—ସମହ ।

ଅମାନ ମଣ୍ଡନ ଉନ୍ନତଗ୍ରୀମା ସୁଖାସନ
ଅତି ସୁଖ ହୋଏ ଯାହା ଆରୋହଣେ ମନ ଯେ । ୨୪
ଅଗ୍ରେ ହେମମକରମସ୍ତକ କୁମ୍ଭ ବେନି
ଅର୍କସମପ୍ରଭା, ଏଥୁଁ ଦେଲେ ଶତ ଚିହ୍ନ ଯେ । ୨୫
ଅରୁଣ ପାଣ୍ଡର ଚଞ୍ଚକର୍ଣ୍ଣ-ଧଉଚେଳ
ଅସିତ ସିତ ହାରିଦ୍ର ଶ୍ୟାମଳ ପାଟଳ ଯେ । ୨୬
ଅନୁଆନେ ଲତା ବୁଟାବୁଟୀ ସିଂହରୂପ
ଅକ୍ଷିରୋମ କମ କଣ୍ଟି କାଙ୍ଗୁଲ୍ଲ ଅମାପ ଯେ । ୨୭
ଅଙ୍ଗୁଳି ମୁଦ୍ରିକାଗଲା ଶାଲ ଉଷ୍ଟ୍ରକର
ଅତି ସୂକ୍ଷ୍ମ ବନାଉତ ନାନାରୁବଧର ଯେ । ୨୮
ଅନେକ ଶଦ୍ଦୁଲି ଛାଗ ମୁସଜର ଆନ
ଅଂଶେ ଅଂଶେ ବୁଟାଦାର ଗୋଦଣ୍ଡ ବସନ ଯେ । ୨୯
ଅମ୍ଳାନବାରଣ ତମ୍ବୁ ନାନାବନ୍ଧେ ପୁରି
ଅନ୍ଧକାର-ନିବାର ଚନ୍ଦ୍ରୁଆ ଶତହାସ୍ତ ଯେ । ୩୦
ଅର୍କ-କରଣବାରଣ ବସନ-ସଦନ
ଅବ୍ଜକର-ପ୍ରସର ବଚାନ କଲେ ଦାନ ଯେ । ୩୧
ଅପୂରୁବ ଗଡ଼ ଘଣ୍ଟିଘାଗୁଡ଼ ରୁଚିର
ଅଯୁତେ ଅଯୁତେ ଉଟଗଳେ ଧରବର ଯେ । ୩୨
ଅଂଶୁକରେ ଅର୍କପର ବ୍ରହ୍ମଜାତି ହୀର
ଅଗ୍ନିଶିଖା-ଶିଖର ମେଷାକ୍ଷୀ ନୀଳା ତୋର ଯେ । ୩୩
ଅକ୍ଷବୃତ୍ତ ଗଜମୋତି ଜପିନ୍ନ (?) ମର୍କତ
ଅରୁଣପ୍ରବାଳ ପଦ୍ମରାଗ କାନ୍ତିବନ୍ତ ଯେ । ୩୪

---

୨୫ । ହେମମକରମୁଖ—ସୁନାର ମଗର ମୁହଁ । ଅର୍କସମ ପ୍ରଭ—ସୂର୍ଯ୍ୟପରି କାନ୍ତିବିଶିଷ୍ଟ । ୨୬ । ଅସିତ—କଳା । ସିତ—ଧଳା । ଚେଳ—ଲୁଗା । ଅକ୍ଷିରୋମକମ—ଆଖିବାଳ ପରି ସରୁ କମ । ୩୧ । ବସନସଦନ—ତମ୍ବୁ । ଅବ୍ଜକରପ୍ରସର—ଚନ୍ଦ୍ର କିରଣ ପରି ଉଜ୍ଜ୍ୱଳ । ବଚାନ—ଚନ୍ଦ୍ରୁଆ । ୩୨ । ଧରବର—ପର୍ବତରାଜ ହିମାଳୟ । ୩୩ । ଅର୍କପର—ସୂର୍ଯ୍ୟପରି । ବ୍ରହ୍ମଜାତି ହୀର—ସର୍ବୋତ୍କୃଷ୍ଟ ହୀରା । ଅଗ୍ନିଶିଖା ଶିଖର—ପକ୍ୱଦାଡ଼ିମବୀଜାଭଂ ମାଣିକ୍ୟଂ ଶିଖରଂ ବିଦୁଃ । ଅଗ୍ନିଙ୍କ ଶିଖା ପରି ରକ୍ତବର୍ଣ୍ଣ ମାଣିକ୍ୟ । ମେଷାକ୍ଷି—ମେଣ୍ଢାର ଅକ୍ଷିପରି ନୀଳବର୍ଣ୍ଣ ନୀଳା ।

ଅକ୍ଷୀଣ ଗୋମେଦ ଅକ୍ଷି-ମନ-ମୋଦକାରୀ
ଅଷ୍ଟଛନ୍ଦ ଦେଖିଲେ କେତେ ପେଟିକାରେ ଭରି ଯେ । ୩୫
ଅମିତ ସୁବର୍ଣ୍ଣ ସବୁ ଜମ୍ବୁନଦ-ଜାତ
ଅମଳ ଭୁମ୍ବିକା ପୁଷ୍ପ-ରୂପା ରୂପା କାନ୍ତ ଯେ । ୩୬
ଅନେକ ସିନ୍ଦୁକମାନଙ୍କରେ ପୂର୍ଣ୍ଣ କଲେ
ଅନ୍ଧକାର ଯଜ୍ଞଭୁଜ-ସମ୍ମୁଖରେ ଦେଲେ ଯେ । ୩୭
ଅମଳ ଛତ୍ର ନକ୍ଷତ୍ର ଚନ୍ଦ୍ର ସୂର୍ଯ୍ୟ ବାସ
ଅସିତକଣ୍ଠ ସୁପିଞ୍ଛ ପତାକାଦି ଶେଷ ଯେ । ୩୮
* ଅନାଦ୍ୟ ଗୃହୁ ଗୃମର ଅମ୍ବର ମଣ୍ଡନ *
ଅଶେଷ ଦେଲେ ଆଲଟ କୁଞ୍ଜାବାସମାନ ଯେ । ୩୯
ଅକାଟ ଖଣ୍ଡଗ ଚର୍ମ-ନିର୍ମିତ ଫଳକ
ଅଶନି-ଛେଦକ ଖଡ୍ଗ ଜଡ଼ିତ ଝିଂଟକ ଯେ । ୪୦
ଅମୋଘ ସୁବାଣ ସୁପର୍ବାଣ-ପ୍ରାଣହର
ଅନୁରୂପ ପିନାକେ ଦେଲେ ସେ ଧନୁଦ୍ଧର ଯେ । ୪୧
ଅରି ଶୂଳ ଶକତି ମୁଦ୍ଗର ଗଦା ଭଲ୍ଲ ଯେ
ଅହି-ପାଶ ତୋମର-ବଜ୍ର କୁନ୍ତ କାନ୍ତ ଛେଲ ଯେ । ୪୨
ଅନେକ କନକାସନ ଦନ୍ତିପୃଷ୍ଠେ ଭରି
ଅସ୍ତ୍ର ଶସ୍ତ୍ର ବହୁତ ଦେଲେ ସେ ଧରଣୀଧର ଯେ । ୪୩
ଅଜ ଧେନୁ ମହିଷ ଯେ ମେଷ ଖର ଶ୍ୱାନ
ଅନୁସ୍ୱାର ଦେଲେ ଯେ ଯହିଁକି ପ୍ରୟୋଜନ । ୪୪
ଅନାଇଁ ଉଭୟ-କୁଳମର୍ଯ୍ୟାଦାର ଟେକ
ଅଦ୍ରିବର ବସୁଭରଣ ଦେଲେ ଯଜ୍ଞଭୁଜ ଯେ । ୪୫
ଅନ୍ତଃପୁର ସ୍ମୃତିର ଯେମାକୁ ଦେଲେ ପୁଣ
ଅନୁଚରୀ ଶତେ ଦେଲେ ବାଛି ଏ ଲକ୍ଷଣ । ୪୬

---

୩୬ । ଭୁମ୍ବିକା ପୁଷ୍ପ—ଲଜ୍ଜୁଫୁଲ । ୩୮ । ନକ୍ଷତ୍ର, ଚନ୍ଦ୍ର ଓ ସୂର୍ଯ୍ୟଙ୍କର ଧାତୁ ନିର୍ମିତ ଆକୃତି ଯେଉଁ ବାସ (ତମ୍ବୁ)ରେ ଥାଏ । ଅସିତକଣ୍ଠ ସୁପିଞ୍ଛ——ମୟୂରର ଉତ୍ତମ ପୁଚ୍ଛ । ୪୦ । ଫଳକ—ଢ଼ାଲ । ଜଡ଼ିତ ଝିଂଟକ—ବଳୁଳି ପରି ଝିଂଟଝିଂଟ ହୋଇଥିବା । ୪୩ । ଧରଣୀଧର—ପର୍ବତସିଂହ ବା ହିମାଳୟ । ୪୪ । ଖର—ଗଧ । ଶ୍ୱାନ—କୁକୁର । ଅନୁସ୍ୱାର ବସ୍ତ୍ର । ୪୬ । ଅନୁଚରୀ—ସେବକା ।     * ଅନାଳ (କ) * ଅମରମଣ୍ଡନ (ଖ)

ଅପୂର୍ବ ସୁନ୍ଦରୀ ଗୁଣବନ୍ତୀ ସୁମଧ୍ୟମା
ଅହର୍ନିଶି ଶାନ୍ତମତି ସେବା-ବିଚକ୍ଷଣା ଯେ । ୪୭
ଅଙ୍ଗମାର୍ଜ୍ଜନ ପଣ୍ଡିତା ସୁବେଶକୁଶଳା
ଅକ୍ଷିବିକାର-ଲକ୍ଷିତା ମନ-ଅନୁକୂଳା ଯେ । ୪୮
ଅଳସବର୍ଜ୍ଜିତା ନିତ୍ୟେ ସୁପ୍ରସନ୍ନମନା
ଅକୁଟିଳଶୀଳା କାମକଳା-ଉଦ୍ଦୀପନା ଯେ । ୪୯
ଅଙ୍ଗୁଳି ମଣ୍ଡୁଳି ପ୍ରଭୁର ଅନୁସାରୀ
ଅନୁଜ୍ଞାପାଳିନୀ ହାସରସ-ମୋଦଧାରୀ ଯେ । ୫୦
ଅନୁକମ୍ପି ପୁଣ ଦେଲେ ଶତେ ପ୍ରିୟସଖୀ
ଅନଙ୍ଗ ଶାସ୍ତ୍ର-ପ୍ରବୀଣା କୋପ-ନିରପେକ୍ଷୀ ଯେ । ୫୧
ଅମର-କର ମୋହିନୀ ପରାଏ ଶୋଭିନୀ
ଅଟବୀ-ବିହାର-ଜଳକେଳି-ବିଳାସିନୀ । ୫୨
ଅନୁରାଗୀ ସୁଖଭାଗୀ ସଖୀସୋହାଗିନୀ
ଅଧର୍ମ-ଧର୍ମ-ବିବେକୀ ସଙ୍ଗିନୀ-ରଙ୍ଗିନୀ ଯେ । ୫୩
ଅବଲୋକ ତ୍ରିକାଳର ମର୍ଯ୍ୟାଦାରକ୍ଷିଣୀ
ଅହର୍ନିଶି ଲକ୍ଷ୍ମୀରୂପସନ୍ନିଭ-ଲକ୍ଷଣୀ ଯେ । ୫୪
ଅମୃତ ବିପଞ୍ଚୀ ତାଳମର୍ଦ୍ଦଳବାଦିନୀ
ଅନୁକ୍ଷଣେ ରାଗନାଟସଙ୍ଗୀତମୋଦିନୀ ଯେ । ୫୫
ଅଳଙ୍କାର କାବ୍ୟନାଟକାଦି ରସଜ୍ଞାତା
ଅନ୍ତର୍ଗତ-ବିଦଗ୍ଧଜ୍ଞା ଅଲକ୍ଷ୍ୟ ଭଙ୍ଗିତା ଯେ । ୫୬

---

୪୭ । ସୁମଧ୍ୟମା—ଉତ୍ତମ କଟିବିଶିଷ୍ଟ । ଶାନ୍ତମତି—ଯାହାଙ୍କ ବୁଦ୍ଧି ଶାନ୍ତ, ଧୀରବୁଦ୍ଧି । ସେବାବିଚକ୍ଷଣା—ସେବାତତ୍ପର । ୪୮ । ଅକ୍ଷିବିକାର-ଲକ୍ଷିତା—ଆଖିର ଭଙ୍ଗୀ ଦେଖି ଯେ ମନକଥା ବୁଝିପାରେ । ୪୯ । ଅକୁଟିଳଶୀଳା—ସରଳସ୍ୱଭାବା । ୫୦ । ଅନୁଜ୍ଞାପାଳିନୀ—ଆଜ୍ଞା ପାଳନ କରୁଥିବା । ହାସରସ-ମୋଦଧାରୀ—ହାସ୍ୟରସରେ ଯେ ଆନନ୍ଦିତା ହୁଏ । ୫୧ । କୋପନିରପେକ୍ଷୀ—ସଖୀ ରାଗ କଲେ ଯେ ତାହା ମନରେ ଧରେ ନାହିଁ । ୫୨ । ଅମରକରମୋହିନୀ—ଇନ୍ଦ୍ରଙ୍କୁ ଯେ ମୋହିତ କରିପାରେ, ଉର୍ବଶୀ ପ୍ରଭୃତିଙ୍କ ପରି । ଅଟବୀବିହାର—ବନବିହାର । ୫୩ । ଅନୁରାଗୀ—ଅନୁରକ୍ତା । ସଙ୍ଗିନୀ ରଙ୍ଗିନୀ ସଖୀମାନଙ୍କ ସଙ୍ଗେ ଯେ କ୍ରୀଡ଼ାକୌତୁକ କରେ । ୫୪ । ଅବଲୋକ···ରକ୍ଷିଣୀ—ଯେ ଭୂତ, ଭବିଷ୍ୟତ ଓ ବର୍ତ୍ତମାନ ବିଷୟର କର ମର୍ଯ୍ୟାଦା ରକ୍ଷା କରେ ।୫୫। ବିପଞ୍ଚୀ-ବୀଣା ।

ଅବଳାମଣି ସଙ୍ଗେ ଏ ସର୍ଗୀଏ ଦାଣ୍ଡାର
ଅନୁସରି ସକଳ ନେଉଛନ୍ତି ତାମାନଙ୍କୁ ଯେ । ୬୭
ଅଳାଇଚ ଗୁଡ଼ତ୍ୱକ ଲବଙ୍ଗ ମରିଚ
ଅବ୍‌ଜରଜ ମଳୟଜ ମୃଗମଦ ବତ ଯେ । ୬୮
ଅଗୁରୁ କୁଙ୍କୁମ ଜାଇଫେ ଜାଇଫଳ
ଅନେକ ସୁବାସପେଟୀ-ସାମଗ୍ରୀ ମଞ୍ଜୁଳ ଯେ । ୬୯
ଅହଲ୍ୟା ସୀତା ରୁକ୍ମିଣୀ ଦ୍ରୌପଦୀ ରାଧିକା
ଅମ୍ବିକା ଗୋପିକାଗଣ କୃତ୍ତିମପୁତ୍ତିକା ଯେ । ୭୦
ଅଷ୍ଟଦଳନ ଯେ ବାଳ ଗୋପାଳ ମୂରତି
ଅଟିବୃଷ-ନନ୍ଦନନ୍ଦ-ଚଢ଼ା ଯଦୁପତି ଯେ । ୭୧
ଅଂଶୁକହରଣ ହରି ଉଲଗ ଯେ ଗୋପୀ
ଅଧାମଂଶ୍ୱର ଯଶୋଦା-ଘୁଷୁଣିଆ ରୂପୀ ଯେ । ୭୨
ଅଯୋଧ୍ୟାନାଥଙ୍କ ସୀତାଚୋର ଦଶଶିର
ଅବତାର ମତ୍ସ୍ୟ ଆଦି ପୁତ୍ତଳୀନିକର ଯେ । ୭୩
ଅନୁଆନେ କଣ୍ଢାଇ ପେଟିକାମାନ ଦେଲେ
ଅବଳାର ବାଳଖେଳବିଧି ସଜାଡ଼ିଲେ ଯେ । ୭୪
ଅଡ଼ାରେ ବସାଇ ଦେଲେ ବାକ୍ୟପଢ଼ା ଶୁକ
ଅଡ଼ାଇଶ ସାରି ଦେଲେ ପଢ଼ନ୍ତି ନାଟକ ଯେ । ୭୫
ଅଳଙ୍କାର ପଢ଼ା ପିକ ପୁଣି ଦେଲେ ଶତେ
ଅନୁବନ୍ଧ ନାଚୁଆ ମୟୂର ଦେଲେ କେତେ ଯେ । ୭୬
ଅଦୃଶ୍ୟ ଖେଳ ଘାଲୁଆ ଲୋଟଣୀ କପୋତ
ଅପୂର୍ବ ଖଞ୍ଜନ ହଂସ ହଳପାବସନ୍ତ ଯେ । ୭୭
ଅର୍ଥିମାନଙ୍କରେ ହେମଝୁମୁକ ନୂପୁର
ଅନୁରୂପ ସ୍ଥାନେ ଏହା ଦେଲେ ଧରବର ଯେ । ୭୮
ଅନେକ ଭଣ୍ଡାର ଶୂନ୍ୟ କରି ସବୁ ଦେଲେ
ଅଥ ବନସ୍ତେ ହରଙ୍କୁ ବହୁତ କହିଲେ ଯେ । ୭୯

---

୬୮ । ଅବ୍‌ଜରଜ—କର୍ପୂର ଚୂନା । ମଳୟଜ—ଚନ୍ଦନ ।୭୦। କୃତ୍ତିମପୁତ୍ତିକା—କୁଣ୍ଢେଇ । ୭୧ । ଅଷ୍ଟଦଳନ—କାଳଦଳନ (ମୂର୍ତ୍ତି) । ୭୨ । ଅଂଶୁକ ହରଣ ହର—ବସ୍ତ୍ରଚୋର ଶ୍ରୀକୃଷ୍ଣ ।

ଅମରାଧିଙ୍କ ବେଶର ହେଲେ ଯେ ଯେମନ୍ତେ
ଅନୁଚରମାନଙ୍କୁ ମେଲନ୍ତି ନାନାମତେ । ୭୦
ଅଧ୍ୱନରେ ଭୋଜନକୁ ହେଲେ ଷଡ଼୍‌ରସ
ଅଶେଷ ବରଯାତ୍ରୀଏ ହୋଇଲେ ସନ୍ତୋଷ ଯେ । ୭୧
ଅପର ଛାନ୍ଦେ ବର୍ଣ୍ଣିବା ବାହୁଡ଼ା-ବିଜୟ
ଅବନୀଶ ଭଞ୍ଜରାଜ ଚିନ୍ତେ ମୃତ୍ୟୁଞ୍ଜୟ ଯେ । ୭୨

—:*:—

# ଅଷ୍ଟାବିଂଶ ଛାନ୍ଦ

## ବାହୁଡ଼ା—ବିଜେ

ରାଗ—କୁମ୍ଭକାମୋଦୀ

ଅଚଳଭୂପାଳ—ଠାରୁ ଦିଗଚେଳ ମେଲାଣି ହୋଇଲେ
ଅବିଳମ୍ବେ ବଳ ସାଜ ଅନୁକୂଳ କରିବା ହୋଇଲେ । ୧
ଅନୁଜ୍ଞା ପ୍ରମାଣେ ବାଜିଲା ଘୋଷଣ ହେବାକୁ ବାହାର
ଅଇଲେ ତିଆରି ହୋଇ ସୁରନର ଅସୁର-କିଙ୍କର । ୨
ଅନ୍ତଃପୁର ଜନ ଜାଣି ଅନୁକୂଳ ଉମାକୁ କରାନ୍ତି
ଅଙ୍ଗନା-ଆବଳୀ ମିଳି ହୁଳହୁଳି ଆନନ୍ଦେ ଦିଅନ୍ତି । ୩
ଅମ୍ବା ଧାତ୍ରୀ ସଖୀ ହୋଇ ଅତି ଦୁଃଖୀ କରନ୍ତି ରୋଦନ
ଅନୁରାଗ ଶୋକେ କ୍ଷୀଣ ବସନେ କେ ପୋଛନ୍ତି ବଦନ । ୪

---

୭୧ । ଅଧ୍ୱନରେ—ବାଟରେ । ୭୨ । ମୃତ୍ୟୁଞ୍ଜୟ—ଶିବ ।

---

## ଅଷ୍ଟାବିଂଶ ଛାନ୍ଦ

୧ । ଅଚଳଭୂପାଳ—ପର୍ବତରାଜ ହିମାଳୟ । ଦିଗଚେଳ—ଦିଗମ୍ବର, ଶିବ । ୨ । ଘୋଷଣ—ଅନୁକୂଳ କାଳର ବାଦ୍ୟ । ୩ । ଅନ୍ତଃପୁର—ନଅର ଭିତର ସ୍ତ୍ରୀ ଲୋକ । ଅଙ୍ଗନା-ଆବଳୀ—ସ୍ତ୍ରୀମାନେ । ୪ । ଅମ୍ବା—ମାତା । ଧାତ୍ରୀ—ଧାଈ । ଅନୁରାଗ ଶୋକେ – ସ୍ନେହ ହେତୁ ଜାତ ଦୁଃଖରେ ।

ଅମ୍ବୁପୂର୍ଣ୍ଣ କରି ନେତ୍ରେ ନେଜ ନାସ୍ତି ହୋଇଲ ହଜିଲେ
ଅଦ୍ରୀଶ୍ବର ପୁରେ ତେଜି କମଳଜା ଗଲ ଏତେ କାଳେ । ୫
ଅଳକରେ କର ତାଡ଼ିଲ ନେ ଉର ଉପରେ କୋଡ଼ଇ
ଅକ୍ଷି ଯା ଯା ଫୁଟି ବୋଲି କେତେ ଲୋଟି ମହୀରେ ଗଡ଼ଇ । ୬
ଅଗ୍ରେ ନେ ବୋଲଇ ଆରେ କେମନ୍ତେ ଦଇ ମୂର୍ଚ୍ଛିବୁ କି କରି
ଅସର ହୋଇବ ଅହର୍ନିଶି କହି ତୋ ଗୁଣ ସୁମରି । ୭
ଅନା ଚନ୍ଦ୍ରମୁଖ ଦେଖିଥାଉଁ ଦୁଃଖ-ସଙ୍ଗ ନ ଆମ୍ଭର
ଅଦୃଷ୍ଟ ଫାଟିଲା ବୋଲି କେତେ କଲା ରୋଦନ ଅପାର । ୮
ଅନ୍ତଦୁଃଖ ମନେ ଆସିଣ ସମାନେ ବସିଲେ ଗଳସ୍ତ
ଅଗ୍ରେ ତାଙ୍କୁ କଲେ ପଛେ ଆଗେ ହେଲେ ଅନ୍ଧକ-ବଇସ୍ତ । ୯
ଅନୁଚରୀ ଦାସୀ ଦାଣ୍ଡୋଳାରେ ବସି ବାହାର ହୋଇଲେ
ଅଗ୍ରେ ବେତ ଧରି ଆଡ଼ୋ ଆଡ଼ୋ କରି ଦୁଆରୀ ଧାଇଁଲେ । ୧୦
ଅମର-ଅବନୀ ଅହିପୁର ଯେନ କମ୍ପିଲା ବାଦ୍ୟରେ
ଅମିତ ଉତ୍ପାତ ନିସ୍ବନେ ହେଲା ଜାତ କରେ କେ ହୃଦରେ । ୧୧
ଅଚଳ-ମଣ୍ଡଳ ଉପୁଡ଼ି ପାତାଳ-ପୁରେ କି ପଡ଼ିବେ
ଅବା ଗ୍ରହକୁଳେ ସ୍ବର୍ଗୁ ଏକାବେଳେ ତଳକୁ ଛୁଟିବେ । ୧୨
ଅତ୍ୟନ୍ତ ସଘନେ ନିବଡ଼ାଲିଙ୍ଗନେ ରହିଲେ ଦମ୍ପତି
ଅପବର୍ଗ ଠୁଳେ ପାଇଲେ ସେକାଳେ ମାନବତୀ-ପତି । ୧୩
ଅଙ୍ଗୁଳି କର୍ଣ୍ଣରେ କରି କେ ଛନ୍ନରେ ନିସ୍ତଳେ ଅଛନ୍ତି
ଅତ୍ୟନ୍ତ ବଧିର ଏ କି ବୋଲି ଧୀର—ଆସରେ ପୁଛନ୍ତି । ୧୪

---

୫ । ଅଦ୍ରୀଶ୍ବର—ପର୍ବତରାଜ, ହିମାଳୟ । କମଳଜା—କମଳା ଅର୍ଥରେ ବ୍ୟବହୃତ, ଲକ୍ଷ୍ମୀ । ୬ । ଅଳକରେ—ମସ୍ତକରେ । ଉର—ସ୍ତନ । କୋଡ଼ଇ—ପିଟଇ । ୭ । ଅସର ହୋଇବ—ସରିବ ନାହିଁ । ୧୧ । ଅମର-ଅବନୀ—ସ୍ବର୍ଗ । ଅହିପୁର—ସର୍ପପୁର ବା ପାତାଳ ।୧୩। ନିବଡ଼ାଲିଙ୍ଗନେ-ଗାଢ଼ ଆଲିଙ୍ଗନ କରି । ଦମ୍ପତି—ସ୍ତ୍ରୀ ପୁରୁଷ ଦୁହେଁ, ଏଠାରେ ଶିବ ଗୌରୀ । ଅପବର୍ଗ—ଧର୍ମ, ଅର୍ଥ, ମୋକ୍ଷ, କାମ । ଠୁଳେ—ଏକାଠି, ଏକକାଳରେ । ମାନବତୀପତି—ମାନିନୀ-ମାନଙ୍କର ସ୍ବାମୀ । ମାନିନୀମାନେ ଏହ ଶୁଣି ଭୀତା ହୋଇ ମାନ ତେଜି ସ୍ବାମୀମାନଙ୍କୁ ଆଲିଙ୍ଗନ କଲେ । ୧୪ । ଛନ୍ନରେ—ଲୁଚି ହୋଇ । ବଧିର—କାଲ୍ । ଅତି କାଲମାନେ ମଧ୍ୟ ଏ ଶବ୍ଦ ଶୁଣିପାରି 'ଏ କି ଶବ୍ଦ' ବୋଲି ପଚାରୁଥିଲେ । ଧୀର-ଆସରେ-ଧୀରଭାବରେ ଅଥବା (ଧୀର) ପଣ୍ଡିତମାନଙ୍କ (ଆସରେ) ଗୋଷ୍ଠୀରେ ।

ଅତି ନଳଗୁଚ୍ଛକେ ଗାଳଧାଅନ୍ତି ଟେକ ଜମାକୁ ଉଷତେ
ଅଧର-ଚଳନୁଁ ହେଜ ତା ସୂଚକୁ ହସନ୍ତି ଈଷିତେ । ୧୫
ଅଶ୍ୱ-ହସ୍ତି-ରଥ-ପତ୍ତି-ପାଦଘାତ ରେଣୁ ଉଡ଼ିବାରେ
ଅନ୍ଧକାର-ବଣି ଘୁଞ୍ଚି ଘୁଞ୍ଚି ଆସି ଘୋଟିଲା ଦିବାରେ । ୧୬
ଅସିତ-ଭୂଷଣେ ଅଙ୍ଗସଙ୍ଗଗଣେ କଲେ ଅଭିସାର
ଅହଃଶେଷ ଚିହ୍ନି କି ଚକ୍ରଦମ୍ପତି ହୁଅନ୍ତି ଅନ୍ତର । ୧୭
ଅଦମ୍ଭିତ କାଳ-ବଶେ ଖଣ୍ଡୁପାଳ ହୁଅନ୍ତି କାତର
ଅବମା-ଈଶ୍ୱର ପୁଚ୍ଛନ୍ତେ ତାହାର ନ ଆସେ ଉତ୍ତର । ୧୮
ଅମ୍ବୁରୁହ-କୋଳ-ଭିତରେ ଭୁସଳ କରୁଛି ଶୟନ
ଅମୁଦ୍ରିତ ହୋଇଥିବାରୁ ସେ ତହିଁ କରଇ ଗମନ । ୧୯
ଅପ୍ରମିତ ଥାଟ ଅବାଟକୁ ବାଟ କରିଣ ଚଳିଲେ
ଅଳକାଭୁବନ ଯାରୁଣ କାନନ ମଧ୍ୟରେ ମିଳିଲେ । ୨୦
ଅମଳ ଶୀତଳ ସୁବାସିତ ଜଳ ଶ୍ରମେ କେ ପିଅନ୍ତି
ଅମ୍ଳାନି ପଇଡ଼ଟଣା କେହୁ ବଡ ସବାଗେ ଯାଅନ୍ତି । ୨୧
ଅନିଳ-ଆଶରୁ କେ କରଦେଶରୁ ଚଙ୍ଗା ନ ଥୁଅଇ
ଅପାର କର୍ପୂର ମଳୟଜ ନୀର କେ ହୋଳି ହୁଅଇ । ୨୨
ଅମ୍ବୁରେ ଭିଜାଇ ବସନ ହେଡ଼ାଇ ଅଛି କେ ହୁଦରେ
ଅଣାଏ ଶୋଷକ ବୋଲି କେ ଟଳିବ ଅତ୍ୟନ୍ତ ଆଦରେ । ୨୩
ଅତି ମନୋହର ରହଃସ୍ଥାନେ ରହ ବଜସ୍ୱ ତୋଷରେ
ଅମ୍ବିକାଙ୍କୁ ଯାଇଁ କମନୁଁ ଓହ୍ଲାଇ ମିଳିଲେ ପାଶରେ । ୨୪
ଅନୁଚରୀ-ବାରେ ଯେ ଯାହା ସେବାରେ ଖଟିଲେ ସତ୍ୱର
ଅଗ୍ରେ କେଉଁ ବାଳୀ ଥୋଇଲାକ ଘୋଳି ଚନ୍ଦନ-କର୍ପୂର । ୨୫
ଅନ୍ତକେ ଆଲିଟ ଉଲଟ ପାଲଟ କରି କେ ପକାନ୍ତି
ଅପାଙ୍ଗ-ଭଙ୍ଗୀରୁ ଜାଣି କେ ରମ୍ଭାରୁ ତାମ୍ବୁଳ ବଢ଼ାନ୍ତି । ୨୬

---

୧୫ । ଉଷତେ—ଆନନ୍ଦରେ । ଅଧର ଚଳନୁଁ—ଓଠ ହଲିବାରୁ । ୧୬ । ପତ୍ତି—ପଦାତି, ଗୋଡ଼ରେ ଚାଲି ଯେଉଁମାନେ ଯୁଦ୍ଧ କରନ୍ତି । ୧୭ । ଅହଃଶେଷ ···ଅନ୍ତର— ଦିନ ଶେଷ ହୋଇଗଲା ଯାବ ଚକ୍ରବାକ ଓ ଚକ୍ରବାକୀ ପରସ୍ପରଠାରୁ ଅଲଗା ହୋଇ ଯାଉଛନ୍ତି । ରାତିରେ ସେମାନଙ୍କର ବିରହ ଘଟନା କବି ସମ୍ପ୍ରଦାୟସିଦ୍ଧ । ୧୮ । ଖଣ୍ଡୁପାଳ—ଗୁଳ୍ମରକ୍ଷକ, ଘାଟିରକ୍ଷକ । ୧୯ । ଅମ୍ବୁରୁହ—ପଦ୍ମ । ଭୁସଳ—ଭ୍ରମର । ୨୧ ଯାଅନ୍ତି—ଆଦର ସହ ଖାଆନ୍ତି, ଯଥା—ପାଦୁକ ପାଇବା । ୨୨ । ମଳୟଜ ନୀର—ଚନ୍ଦନ ପାଣି । ୨୪ । ରହଃସ୍ଥାନ—ନିର୍ଜନ ଜାଗା ।

ଅର୍କ କ୍ରମେ କ୍ରମେ ଚଳନ୍ତେ ପଶ୍ଚିମେ ଅସ୍ତ ହେଲା ଶେଷ
ଅବ୍ଜ ମୁଦ୍ରିତ ଆସନ୍ନ ଦେଖି ଅଳି ହୋଏ ପାଶ ପାଶ । ୨୭
ଅନ୍ତର ହେବ ବୋଲି ଚକ୍ରଦମ୍ପତି କାତର ଚିରତ
ଅଟବୀରେ ନାନା ବିଟପୀରେ ହେଲେ ପକ୍ଷୀ ଉପଗତ । ୨୮
ଅରୁଣ-କିରଣ-ବିକାରୁଁ ଅରୁଣ ଦିଗ ଯା ଦିଶଇ
ଅନୁରାଗେ ନିଶା-ବାଳା ଚନ୍ଦ୍ର-କାନ୍ତ ପାଶେ କି ଆସଇ । ୨୯
ଅଙ୍ଗନାଏ ଜୁଟି ଖେଳାନ୍ତି ସେ ବରକନ୍ୟାଙ୍କୁ ଉତ୍ସବେ
ଅକ୍ଷତ ଦୂର୍ବାରେ ହସ୍ତ-ପାତେ ବନ୍ଦାପନା ବିଧିପୂର୍ବେ । ୩୦
ଅନୁଜ୍ଞା ଦେଲେ ଶ୍ୱଶୁରେ ବିଜେ ହେବେ ସଜ ହୋନ୍ତି ଦଳ
ଅଚିରେ ଯେ ଯାର ସମ୍ଭାରେ ବାହାର ହୋଇଲେ ସକଳ । ୩୧
ଅମୃତ-ଯୋଗରେ କୈଳାସ-ନଗରେ ହେଲେ ପରବେଶ
ଅନୁକ୍ଷଣେ ଷଟେଣ ବରଯାତ୍ରୀଗଣେ ଆଦର-ବିଶେଷ । ୩୨
ଅଷ୍ଟମ ମଙ୍ଗଳା କଲେ ସେ ମଙ୍ଗଳାଚରଣ-ବିଧିରେ
ଅଥ ଦେବାସୁର ସମସ୍ତେ ମେଲାଣି ହୋଇଲେ ସିଦ୍ଧିରେ । ୩୩
ଅନଙ୍ଗ-ଦେହ-ବନ-ବଜ୍ର ରବି-ଚନ୍ଦ୍ରାନଳ-ଆଖି
ଅମ୍ବୁଜ-ଚରଣ ଶରଣରେ ନୃପ ବଳଭଦ୍ର ସୁଖୀ । ୩୪

ঃ—○—ঃ

୨୭ । ଅବ୍ଜ ମୁଦ୍ରିତ ଆସନ୍ନ ଦେଖି—ପଦ୍ମ ବୁଜି ହୋଇଯିବାର ଦେଖି । ୨୮ । ଅଟବୀ—ବନ । ନାନା ବିଟପୀରେ— ବୃକ୍ଷମାନଙ୍କରେ । ୨୯ । ଅରୁଣ—ସୂର୍ଯ୍ୟ । ବିକାରୁ—ପରିବର୍ତ୍ତନ ହେତୁଁ । ଅରୁଣ—ରକ୍ତବର୍ଣ୍ଣ । ଅନୁରାଗ—ସ୍ନେହରେ । ନିଶା-ବାଳା—ରାତ୍ରିରୂପିଣୀ ନାୟିକା । ଚନ୍ଦ୍ରକାନ୍ତ—ଚନ୍ଦ୍ରରୂପ ନାୟକ । ଅନୁରାଗକୁ ରକ୍ତବର୍ଣ୍ଣ ବୋଲି ବର୍ଣ୍ଣନ କରିବା କବିସମ୍ପ୍ରଦାୟ ସିଦ୍ଧ ।
୩୪ । ଅନଙ୍ଗ···ପଦ—କାମର ଦେହରୂପ ବନର ବଜ୍ର ସ୍ୱରୂପ । ରବି, ଚନ୍ଦ୍ର ଓ ଅଗ୍ନି ଯାହାଙ୍କର ଆଖି ।

# ଊନତ୍ରିଂଶ ଛାନ୍ଦ

## ବର୍ଷାବର୍ଣ୍ଣନ, ଅଷ୍ଟରମନସ୍ତା, ନଦ୍ୟାମ୍ବୁଜଳ ଖେଳ ଓ କେଳି

ରାଗ—କଳହଂସକେଦାର

ଅଥ ଶୁଣ ହେ ଗୁଣନିପୁଣ ରସ
ଅଚଳେ କଇଳାସ ଅଚଳେ ଈଶ ଯେ ।
ଅବଳାମଣି ରତ-ରତନ ଗାଳ
ଅନୁଦିନେ କଅନ୍ତ ଆନନ୍ଦ ହୋଇ ସେ । ୧

ଅହଶେଷରେ ଦିନେ ଏହି ସମୟେ
ଅମ୍ବୁଦ ପୂର୍ବଦିଗେଁ ହେଲା ଉଦୟ ଯେ ।
ଅଞ୍ଜନଧର-ଶୋଭା-ଗଞ୍ଜନ କାନ୍ତି
ଅକ୍ଷିପଟଳେ ଦେଲା ଇନ୍ଦ୍ର ସମ୍ପତ୍ତି ସେ । ୨

ଅଙ୍ଗନା-ବିନା-ଜନେ ଯମ ସମ ସେ
ଅମରପୁରତରୁ ତରୁଣୀ-ପୁଂସେ ଯେ ।
ଅହିବତ ଅହିତ ଋଷି-ମୂଷିକେ
ଅର୍କ-କର୍କଶ-ଭାବ ଏକାକୀ ଲୋକେ ସେ । ୩

---

### ଊନତ୍ରିଂଶ ଛାନ୍ଦ

୧ । ଗୁଣନିପୁଣ—ଗୁଣୀ । ଅଚଳେ—ସ୍ଥିରରେ । ଅଚଳେ—ପର୍ବତରେ । ଈଶ—ମହାଦେବ । ଅବଳାମଣି-ରତ-ରତନ—ନାରୀଶ୍ରେଷ୍ଠ ଗୌରୀଙ୍କର ସୁରତ ରୂପ ରତ୍ନକୁ । ଅନୁଦିନେ—ପ୍ରତ୍ୟହ । ୨ । ଅହଶେଷରେ—ସନ୍ଧ୍ୟାକାଳରେ । ଅମ୍ବୁଦ—ମେଘ । ଅଞ୍ଜନଧର-କଳା ପର୍ବତ । ଅକ୍ଷିପଟଳେ—ଆଖି ପଡ଼ିଲାକ୍ଷଣି । ଇନ୍ଦ୍ରସମ୍ପତ୍ତି—ଅତି ସୁଖ । ୩ । ଅଙ୍ଗନା-ବିନା-ଜନେ—ସ୍ତ୍ରୀରହିତ ଲୋକମାନଙ୍କ ପକ୍ଷରେ । ତରୁଣୀପୁଂସେ—ସ୍ତ୍ରୀ ସହିତ ଥିବା ପୁରୁଷମାନଙ୍କ ପକ୍ଷେ, ଦମ୍ପତ୍ତି ପକ୍ଷେ । ଅମର-ପୁରତରୁ—କଳ୍ପତରୁ । ଅହିବତ···ମୂଷିକେ—ଋଷିରୂପ ମୂଷାମାନଙ୍କ ପକ୍ଷେ ସର୍ପପରି ଅନିଷ୍ଟକର । ଅର୍କ କର୍କଶ ଭାବ—ସୂର୍ଯ୍ୟଙ୍କ ପରି ପ୍ରଖର (ସନ୍ତାପଦ) ।

ଅନାଇଁ ଏ ସମସ୍ତ ଅଶେଷ ରସ
ଅଳସେ କୃଷ୍ଣ ରସବନ୍ତ-ସାଳସ * ଯେ
ଅଙ୍ଗୁଷ୍ଠି ବମ୍ବଓଷ୍ଠୀ ଚତୁରେ ଦେଇ
ଅନଙ୍ଗରଙ୍ଗେ ରଙ୍ଗକୁ ରଙ୍ଗେ*କନ୍ତ ଯେ । ୪
ଅମୃତଭାଷି ! ହଂସୀଗତି ! କ କ୍ଷଣ ! ! !
ଅସିତ-ମେଘେ ବକତତି ବୀକ୍ଷଣ ଯେ ।
ଅଥ ଗାଢ଼ ଶାମୁକ-ଭେକ-ଫୁତ୍କୃତି
ଅଣୁ ମଧ୍ୟା ବସ୍ତୃତ ତମଃସଂହତି ଯେ । ୫
ଅଶେଷ ଶକ୍ରଗୋପେ କ୍ଷୌଣୀ ପ୍ରକଟ
ଅନେକେ ଫୁଟେ ନୀପ-କେତକ-କୂଟ ଯେ ।
ଅଟକ ଘଡେ ନେନ୍ତ ଶିଖି-ନର୍ତ୍ତନେ
ଅସ୍ଥିରେ ତନୁ କମ୍ପେ ପନ୍ନଗାଶନେ ଯେ । ୬
ଅମିତ ତଡ଼ିଲ୍ଲତାମାଳ ଝଟକେ
ଅଲକ୍ଷ୍ୟ ଜଳମୁକ ଘୋଟେ କ ଟେକେ ରେ ।
ଅଚଳ-ଚୂଳେ କେକୀ ଟେକ ଯା ଡାକେ
ଅତନୁ-ସୁଖଧନ ମିଳେ କାମୁକେ ଯେ । ୭

---

୪ । ଅଶେଷ ରସ—ବହୁଜଳ, ପକ୍ଷାନ୍ତରେ ବହୁତ ରସ । ଅଳସେ—ଅନାୟତ୍ତ ଭାବେ । ରସବନ୍ତ—ଗୌରୀ । ଅନଙ୍ଗରଙ୍ଗେ—କାମକ୍ରୀଡ଼ାରେ । ରଙ୍ଗକୁ ରଙ୍ଗେ—ନାନା ରଙ୍ଗେ, ଭଳକ ଭଳ । ୫। କ କ୍ଷଣ—କ ଉତ୍ସବ ଅର୍ଥାତ୍ ଅତି ଉତ୍କୃଷ୍ଟ ଉତ୍ସବ । ଅସିତ ମେଘେ—କଳାମେଘରେ । ବକତତି ବୀକ୍ଷଣ—ବଗମାନଙ୍କୁ ଦେଖିବା । ଭେକ—ବେଙ୍ଗ । ଫୁତ୍କୃତି—ଫୁତ୍କାର, ରବ । ଅଣୁମଧ୍ୟା—କ୍ଷୀଣକଟି । ତମଃସଂହତି—ଗାଢ଼ ଅନ୍ଧକାର । ୬ । ଶକ୍ରଗୋପ—ଇନ୍ଦ୍ରଗୋପ ବା ସାଧବ ଘର ବୋହୂ ପୋକମାନଙ୍କଦ୍ୱାରା । କ୍ଷୌଣୀ— ପୃଥିବୀ । ନୀପକେତକ-କୂଟ-କଦମ୍ବ ଓ କିଆଫୁଲସମୂହ । ଶିଖିନର୍ତ୍ତନେ-ମୟୂର ନାଚରେ । ପନ୍ନଗାଶନେ—ସର୍ପର (ଅଶନ) ଭକ୍ଷ୍ୟ ଅର୍ଥାତ୍ ବାୟୁ, ତଦ୍ଦ୍ୱାରା । ତନୁ—ଶରୀର (ଅସ୍ଥିର ଭାବେ) କମ୍ପେ । ୭ । ତଡ଼ିଲ୍ଲତା—ବିଜୁଳି । ଜଳମୁକ—ମେଘ । କ ଟେକେ—କେଡ଼େ ଗାଢ଼ ଭାବରେ । ଅଚଳଚୂଳେ—ପର୍ବତ ଶିଖରରେ । ଟେକ—ଅତି ଉଚ୍ଚରେ । ଡାକେ—ଶବ୍ଦ କରେ । ଅତନୁସୁଖଧନ—କାମସୁଖରୂପ ଧନ । କାମୁକେ—କମାତୁର ବ୍ୟକ୍ତିଙ୍କୁ ।

* ସାରସ (କ) * ରଙ୍ଗତରଙ୍ଗେ (ଖ)

ଅଧିକେ ସୁରଷଣ୍ଡ-କୋଦଣ୍ଡ ରୁଚିରୁ
ଅଧରକ୍ଷଣ ଧର କନ୍ଦର୍ପ-ଭ୍ରୂରୁ ୧ ଯେ ।
ଅଟରେ ଝଟଡ଼େ ଧର ଦୃଢ଼ ଭିଦୁରେ
ଅଟଡ ଟଙ୍କଧରର ଗୁଣ୍ଟଙ୍କାରେ ଯେ । ୮
ଅନବଚ୍ଛିନ୍ନ ଘନ ଗାଢ଼ ଗର୍ଜନ
ଅବମୀବନପରେ ପୂରେ ଜୀବନ ଯେ ।
ଅପଥେ କ୍ଷୁଦ୍ର ନଦୀ ବଢି ବର୍ଦ୍ଧନ
ଅନଙ୍ଗରସେ ସର୍ବଜନ ପ୍ରସନ୍ନ ଯେ । ୯

( ଅନନ୍ତରୋକ୍ତ ପାଞ୍ଚପଦ ଅକ୍ଷର ମନସା ? )

ଅହ ଶ୍ରୀ ଫୁଲ୍ଲମୁଖୀ ୨ ଜମ୍ବୁଭୂଷଣା
ଅର୍ଦ୍ଧ ଝଟକ ଛବ ପୃଥୁଜଘନା ରେ ।
୩ ଅକ୍ଷି ଦ୍ରୁତରଙ୍ଗି ଧ୍ୱଂସି ଭ୍ରୁରୁମାର
ଅଭିନ୍ନ କର ଦେଖି କନ୍ଧ ଉଦର ରେ । ୧୦
ଅପୂର୍ବ ନ୍ୟାୟ୍ରବଳ ଖେଳରେ ଦିନେ
ଅନୁଶ୍ଳେଷେ କହନ୍ତି ଛଳବଚନେ ଯେ ।
ଅନା ତରୁଣି ! ବୁଡ଼ୁଛି ଯେ ତରଣୀ
ଅଛୁ ମନ୍ତ୍ରୀ କ ମନେ ରଖି ତୋ ପୁଣିରେ । ୧୧

---

୮ । ସୁରଷଣ୍ଡ-କୋଦଣ୍ଡ—(ସୁରଷଣ୍ଡ) ଇନ୍ଦ୍ର (କୋଦଣ୍ଡ) ଧନୁ, ଇନ୍ଦ୍ରଧନୁ । ରୁଚିରୁ-ସୁନ୍ଦର । 'କନ୍ଦର୍ପଭ୍ରୂରୁଁ' ସ୍ଥଳେ 'କର୍ଦ୍ଦମ ଭ୍ରୂରୁଁ' ପାଠ ସମୀଚୀନ ବୋଧ ହେଉଅଛି । ଧର—ପର୍ବତ । ଭିଦୁରେ—ବଜ୍ରଦ୍ୱାରା । (ଟଙ୍କଧର) ମହାଦେବ (ଅରି) ଶତ୍ରୁ, କାମ । ୯। ଅନବଚ୍ଛିନ୍ନ—ନିରନ୍ତର । ଘନ—ମେଘ । ଜୀବନ—ଜଳ । ୧୧ । ନ୍ୟାୟ୍ରବଳ ଖେଳ—ସତରଞ୍ଜ ଖେଳ । ଅନୁଶ୍ଳେଷେ—ଶ୍ଳେଷାର୍ଥକୁ ଅନୁସରଣ କରି । ତରଣୀ—ନ୍ୟାୟ୍ରବଳ ପକ୍ଷେ ନୌକାସାର, ଅନ୍ୟପକ୍ଷେ (ତରଣି) ସୂର୍ଯ୍ୟ ।

୧ — କର୍ଦ୍ଦମଭ୍ରୁରୁ । ୨—ଜମ୍ବୁଭୂଷଣା । ୩—ଅକ୍ଷଦ୍ରୁତରଙ୍ଗି ଧ୍ୱଂସକ କୁମାର (ଖ)

ଅଥ ପତ୍ତି ଉପରେ ଶୋଭନ୍ତୁ କି ରେ
ଅଟ୍ଟ ନାଗର ଦଳ ଚି ମୋ ତର୍କିରେ ଯେ ।
ଅଟଳସ୍ପୃହା ଶୁଣି କହନ୍ତି ଛଳେ
ଅଛନ୍ତି ତ ମୋର ରାଜା ଅତନୁ ବଳେ ହେ । ୧୨
ଅଦ୍ୟ କରୁଛ ବଳ ତୁମ୍ଭେ ବାଜିତ
ଅଛି ଏ କରିଗତି ସଜେ ତର୍କିତ ଯେ ।
ଅଜ କହନ୍ତି ଯେନ୍ନ ପଦାନ୍ତ ବଳ
ଅନାଥ ବାମା ତୁ ଯେ ହୋଇବ ଖେଳ ଯେ । ୧୩

## ଚ୍ୟୁତାକ୍ଷର

ଅବଜ ପଦେ କହ ଦେବ ନିର୍ମାଣି
ଅଲତା, ପୀନସ୍ତନେ ରୁଚିରୁ ସୁବେଣୀ ରେ ।
୧ ଅହସରସିଜେକ୍ଷଣେ ତୋଷମତେ
ଅବସନରେ ମୋତେ ମୋହ ନିରତେ ରେ । ୧୪

---

୧୧ । ଅନ୍ୟାସ୍ତୁକଳ ପକ୍ଷେ—ମନ୍ତ୍ରୀ (ଉଜୀର) ସାର, ଅନ୍ୟ ପକ୍ଷେ (କି ମନ୍ତ୍ରି) କିଅଣ ମନ୍ତ୍ରଣା କର ।

୧୨ । ,, ,,—ପତ୍ତି (ପଦାତି) ,, ,, (ପତି) ସ୍ୱାମୀ ।
,, ,,—ନାଗ (ହାତୀ) ,, ,, (ନାଗ) ହସ୍ତୀ ।
,, ,,—ରଜା (ସାର) ଅତନୁ ବଳେ ଅଛି—ଅତି ବଳବାନ୍ ହୋଇଛି; ଅନ୍ୟ ପକ୍ଷେ କାମ ରାଜା ଅତି ପ୍ରବଳରେ ରହିଛି ।

୧୩ । ,, ,,—ଅଜ ତୁମ୍ଭେ (ବାଜିତଃ) ଘୋଟକ ସାର ହେତୁ ବଳ ପ୍ରକାଶ କରୁଛ । ଏହି (କରିଗତି) ହସ୍ତୀସାରର ଗତି ତର୍କିକି ସଜ ହୋଇଛି । ଅନ୍ୟପକ୍ଷେ— ବୃଥା ତୁମ୍ଭେ ବଳପ୍ରକାଶ କରୁଛ ଅଥବା (ଜିତ) ଜୟ କର, ଏ (ନିଜକୁ ନିର୍ଦ୍ଦେଶ କରି) କରିଗତି-ହସ୍ତି ସମ ଗମନବିଶିଷ୍ଟା ତର୍କିକ(ସଜ) ପ୍ରସ୍ତୁତ ।

ଅନ୍ୟାସ୍ତୁକଳ ପକ୍ଷେ—(ଅଜ) ଶିବ ପଦାତି (ବଳ) ସାର ଯେନ୍ନ କହନ୍ତି, (ବାମା) ସୁନ୍ଦରୀ ! ତୁ ଅନାଥ, ଖେଳ ହେବ । ଅନ୍ୟପକ୍ଷେ—(ଅତିବଳ) ଅତି ବଳବାନ (ଅଜ) ଶିବ (ପଦ ଯେନ୍ନ) ପାର୍ବତୀଙ୍କ ପଦକୁ ଧାରଣ କରି ।

୧୪ । ହେ ସୁନ୍ଦରୀ ! (କହ) ଅନୁମତି ଦିଅ, ମୁଁ (ଅବଜପଦେ) ପଦ୍ମ ତୁଲ୍ୟ ତୋ ପାଦରେ ଅଲତା ନିର୍ମାଣି ଦେବି ଓ (ପୀନ) ପୃଥୁଳ ସ୍ତନ ଉପରେ (ରୁଚିରୁ) ସୁନ୍ଦର ସୁବେଣୀ ନିର୍ମାଣି ଦେବି । ହେ (ଅହସରସିଜେକ୍ଷଣେ !) ଦିବସ ପଦ୍ମ ପରି ପ୍ରଫୁଲ୍ଲ ନେତ୍ରନେ ! (ଅବସନରେ) ବସ୍ତ୍ରହୀନ—ଦିଗମ୍ବର, ମୋତେ (ତୋଷମତେ) ଆନନ୍ଦ ମନରେ (ନିରତେ) ସର୍ବଦା (ମୋହ) ମୋହିତ କର । ପରବର୍ତ୍ତୀ ଦୁଇ ପାଦର ମୂଳରୁ ଅ'କାର ଚ୍ୟୁତ କଲେ ହସ ରସି ଯେ କ୍ଷଣେ ତୋଷ ମତେ । ବଶନରେ···ଅର୍ଥ ସ୍ପଷ୍ଟ ।

ଅ-ପୂର୍ବ ଶୁ-ବର୍ଣ୍ଣେ ମୋ ହୃଦରେ ଆସ
ଅନୁଭିତରେ ତରେ ଭୟ ମୋ ନାଶ ଯେ ।
ଅଳପ ନେତ୍ରପ୍ରାନ୍ତେ ଶୁତ ରମଣି !
ଅନ୍ଧବଲ୍ଲୀ ଭୁଞ୍ଜାଇ ଦଅନ୍ତୁ ଆଣି ରେ । ୧୫
ଅନଙ୍ଗ-ରସନିଧି ତୁ ତ ପ୍ରମାଣ
ଅଟେ ଭ୍ରୂଲତା ବୀଚି ନୟନ ମୀନ ରେ ।
ଅସ୍ଫୁଟହାସ ସୁଧା, ଦନ୍ତ ରତନ
ଅମଳମୁଖ ଚନ୍ଦ୍ର ଉଦୟମାନ ରେ । ୧୬
ଅହି ରୋମାଳି, ସ୍ତନ ଉନ୍ନତ ଗିରି
ଅତନୁ ବୋହିତ ତୋ ଉରୁ ଗୁରୁଭୁଷି ରେ ।
ଅଙ୍ଗଭୂଷଣ-ଦ୍ୟୁତି ବାଡ଼ବାନଳ
ଅରି-ନିତମ୍ବ ଦ୍ୱୀପ ଅତି ମଞ୍ଜୁଳ ରେ । ୧୭
ଅର୍ଜ୍ଜୁନ ପୁଷ୍ପମାଳ ଫେନ ବଲ୍ଲଭ !
ଅଟେ ସୁକଣ୍ଠ ଶଙ୍ଖ, ଭଉଁରି ନାଭି ରେ ।

---

୧୫ । ଆସ, ମୋ ହୃଦରେ (ଅପୂର୍ବ 'ଶୁ' ବର୍ଣ୍ଣ—ଅର ପୂର୍ବରେ ଶୁ ବର୍ଣ୍ଣ ବା 'ଶୁଅ') ଶୟନ କର । ଅନୁଭିତରେ—ଅଣୁ ଭିତରେ ବା ଅଳ୍ପକାଳ ମଧ୍ୟରେ (ତରେ) ଶୀଘ୍ର ମୋ ଭୟ ନାଶକର । ହେ ରମଣି ! (ନେତ୍ର ପ୍ରାନ୍ତରେ) ଅପାଙ୍ଗରେ ଅଳ୍ପ (ଶୁତ) ଝଁକି (ମଧୁର କଟାକ୍ଷପାତ କର) 'ଶୁତ' ଶବ୍ଦ ହିନ୍ଦୀ ଭାଷାରୁ ଗୃହୀତ । (ଅନ୍ଧବଲ୍ଲୀ) ପାନ ଆଣି ମୁଁ ଭୁଞ୍ଜାଇ ଦଅନ୍ତି । ୧୬-୧୮ । ତୁ (ଅନଙ୍ଗ-ରସନିଧି) କାମସମୁଦ୍ର ଅଟୁ । ତୋର ଭ୍ରୂଲତା ସେ ଜଳଧିର (ବୀଚି) ତରଙ୍ଗ, (ନୟନ) ଆଖି, ତାର (ମୀନ) ମାଛ ଅଟେ । ଅସ୍ଫୁଟ ହାସ— ମନ୍ଦହାସ (ସ୍ମିତ) ତାର ଅମୃତ । (ସମୁଦ୍ରରୁ ଅମୃତର ଜନ୍ମ, ଏହା ପୁରାଣ ପ୍ରସିଦ୍ଧ) । ତୋର ଦନ୍ତ ତାହାର ରତ୍ନ । ତୋହର (ଅମଳ ମୁଖ)—ନିଷ୍କଳଙ୍କ ମୁଖ ତାର ଉଦୟମାନ ଚନ୍ଦ୍ର—ଉଇଁ ଆସୁଥିବା ଚନ୍ଦ୍ର । ତୋର ରୋମାଳି—ରୋମଲତା, ତାର ଅହି—ସର୍ପ । ତୋର ସ୍ତନ, ତାର (ଉନ୍ନତ ଗିରି)—ଉଚ୍ଚ ପର୍ବତ । ତୋ (ଉରୁ ଗୁରୁଭୁଷି)ଉରୁ ପ୍ରଦେଶର ଭଙ୍ଗୀ (ଅତନୁ ବୋଇତ) କାମର ଜାହାଜ । ତୋର(ଅଙ୍ଗ-ଭୂଷଣ-ଦ୍ୟୁତି)ତୋର ଦେହର ଅଳଙ୍କାରର ତେଜ (ବାଡ଼ବାନଳ) ସମୁଦ୍ର ଭିତରେ ଥିବା ଅଗ୍ନି । (ଅରି-ନିତମ୍ବ)—ଚକ୍ରାକାର ନିତମ୍ବ (ପିଣ୍ଡ) ଦ୍ୱୀପ ପରି । ଅତି ମଞ୍ଜୁଳ—ଅତି ସୁନ୍ଦର । ହେ ବଲ୍ଲଭ—ପ୍ରିୟେ । ତୋର (ଅର୍ଜ୍ଜୁନ ପୁଷ୍ପମାଳ)-ଧଳା ଫୁଲମାଳା, ତାର ଫେନ । ତୋର(ସୁକଣ୍ଠ)ଉତ୍ତମ କଣ୍ଠ

ଅଙ୍ଘ୍ରି-ମଞ୍ଜୁ-ମଞ୍ଜୀର-ସ୍ୱନ ତା ଡାକ
ଅର୍କଜ-ରଜ-ଚନ୍ଦନ ସିକତା ପଙ୍କ ରେ । ୧୮
ଅତନୁ-ତାପେ ଦହ୍ୱି ହେବାରୁ ଦେହ
ଅତି ସୁଖରେ ରସେ ବୁଡ଼ିଛୁ ମୁହିଁ ଯେ ।
ଅଣୁମାତ୍ର ଅନ୍ତର ହୋଇବ ନାହିଁ
ଅହର୍ନିଶି ଭାବନା ମୋହର ଏହି ରେ । ୧୯
ଅନୁଦିନେ ବଞ୍ଚନ୍ତି ଏ ସ୍ନେହ ଥୋଇ
ଅନୁସରନ୍ତି ଯଥା ଦେହକୁ ଛାଇ ରେ ।
ଅନୁଜ୍ଞାମାନ ଆନ କରନ୍ତି ନାହିଁ
ଅନୁକମ୍ପାରେ ମିଥେ ଲୋଭକୁ ବହି ଯେ । ୨୦
ଅଦ୍ରିକୁମାରୀ ଦିନେ ମନ-ତରଙ୍ଗେ
ଅନଙ୍ଗେ ମାତିଥିଲେ ବଲ୍ଲଭ ସଙ୍ଗେ ରେ ।
ଅକ୍ଷି ପଡ଼ିଲା ବର-କପର୍ଦ୍ଦେ ଯାଇଁ
ଅମର-ନଦୀ ଛନ୍ତି ଦେଖିଲେ ତହିଁ ଯେ । ୨୧

---

ତାର ଅର୍ଥ । ତୋର ନାଭି ତ'ର ଭଉଁରୀ । ତୋର (ଅଙ୍ଘ୍ରି-ମଞ୍ଜୁ-ମଞ୍ଜୀର-ସ୍ୱନ) ପାଦର ସୁନ୍ଦର ନୂପୁରର ଶବ୍ଦ ତାର (ଡାକ) ଗର୍ଜ୍ଜନ । ତୋର (ଅର୍କଜରଜ) କର୍ପୂର ଚୂନା-ତାର (ସିକତା) ବାଲି । ତୋର ଚନ୍ଦନ, ତାର ପଙ୍କ । ୧୯ । ମୋ ଦେହ—ଶରୀର । ଅତନୁତାପେ କାମ ସନ୍ତାପେ, (ଦହ୍ୱି ହେବାରୁ)—ପୋଡ଼ିବାରୁ (ମୁହିଁ)—ମୁଁ ଅତି ସୁଖରେ (ରସେ) ଶୃଙ୍ଗାରମୂଳ ଜଳରେ ବୁଡ଼ିଛୁ । (ଅଣୁମାତ୍ର) ଟିକିଏ ହେଲେ (ଅନ୍ତର) ଅଲଗା ହେବ ନାହିଁ । ମୋହର (ଅହର୍ନିଶି) ଦିନରାତି ଏହି ଭାବନା । ୨୦ । (ଏ ସ୍ନେହ ଥୋଇ) ଏ ପ୍ରକାର ସ୍ନେହ ରଖି, (ଅନୁଦିନେ) ସବୁଦିନେ ମୁଁ (ବଞ୍ଚନ୍ତି) ଜୀବନ ଧାରଣ କରନ୍ତି । ଦେହକୁ ଛାଇ ପରି ଅନୁସରିଥାନ୍ତି । ଅନୁକମ୍ପାରେ—ଅନୁଗ୍ରହ ବା କରୁଣାପରବଶ ହୋଇ । ମିଥେ—ପରସ୍ପର (ଲୋଭ) ମମତା ବହି (ଅନୁଜ୍ଞାମାନ) ଆଦେଶ ମାନ (ଆନ) ଅନ୍ୟଥା କରନ୍ତି ନାହିଁ । ୨୧ । ଅଦ୍ରିକୁମାରୀ—ପାର୍ବତୀ । ମନ ତରଙ୍ଗେ—ମନ ଉତ୍ସୁକରେ । ଅନଙ୍ଗେ-କାମକ୍ରୀଡ଼ାରେ । ବର-କପର୍ଦ୍ଦ—ସ୍ୱାମୀଙ୍କର ଜଟାଜୁଟ । ଅମର-ନଦୀ—ଗଙ୍ଗା ।

ଅମୃତ-ଚନ୍ଦ୍ରରୁଚି ବଚନ ତୋର
ଅଙ୍ଗଭୂଷଣଗଣ ଶ୍ରବଣ-କାର ଯେ ।
ଅସିତ ନୀଳବାସ ଭୂଷିତ ଅଙ୍ଗ
ଅଧର ନିନ୍ଦେ ବିମ୍ବ ବନ୍ଧୁଲି ରଙ୍ଗ ଯେ । ୨୨
ଅଣୁଶ୍ରୋଣିମଧ୍ୟମା ସ୍ଥାଣୁଉରଜା
ଅନଳଗାମୀ ଜାତ-ବଳଜରକା ଯେ
ଅଶେଷ ବାମାଶିର-ଶ୍ରୁଦ୍ଧକମଣି
ଅଙ୍ଘ୍ରି ଅସମ ଯାର ସୁର-ରମଣୀ ଯେ । ୨୩
ଅନାଇ ସୁର-ତରଙ୍ଗିଣୀ ଏ ତୋଷ
ଅମ୍ବିକା କ୍ରୋଧେ ହେଲେ ଅତି ଅଧୀର ଯେ ।
ଅଙ୍କୁ ଖସି ବସିଲେ ମହୀ ଉପରେ
ଅକ୍ଷି ପୂର୍ଣ୍ଣ ହେଲାକ ଲୁଅ-ଆପରେ ଯେ । ୨୪
ଅଧର ଥରଥର ଅରୁଣ ମୁଖ
ଅବନୀ ଚିରିବାକୁ ଉନ୍ମୁଖ ନଖ ଯେ ।
ଅଳକର ତିଳକ ପ୍ରକାଇ ଗୋଟି
ଅଳକାର ସୁମନ ନ ରଖେ କାଟି ଯେ । ୨୫

---

୨୨ । ଅମୃତଚନ୍ଦ୍ରରୁଚି—ଅମୃତମୟ ଚନ୍ଦ୍ରଙ୍କର କାନ୍ତି ପରି କାନ୍ତିଯୁକ୍ତା । ବଚନ ତୋର—ତମଙ୍କର କଥା । ଅଙ୍ଗଭୂଷଣଗଣ—ଦେହର ଅଳଙ୍କାରମାନ । ଶ୍ରବଣ-କାର—ନେହର ବନ୍ଦୀଘର । ଅସିତ ନୀଳବାସ—ଧଳା ଅତି ସରୁ ଲୁଗା । ତଦ୍ଦ୍ୱାରା (ଅଙ୍ଗ)—ଦେହ, (ଭୂଷିତ)—ଅଳଙ୍କୃତ । ଅଧର—ଓଷ୍ଠ । ବିମ୍ବ—ଗୋଲୁଖିଆଫଳ (କଇଁଚ କାକୁଡ଼ି ଫଳ) । ବନ୍ଧୁଲି—ବିପହରିଆ ଫୁଲ । ଅଙ୍ଗ—ଶରୀର । ଏଠାରେ ଭ୍ରାନ୍ତି ନାଁ ଅଲଙ୍କାର । ୨୩ । ଅଣୁଶ୍ରୋଣି-ମଧ୍ୟମା—ଅତି ସରୁ କଟି । ସ୍ଥାଣୁଉରଜା—ଶିବଲିଙ୍ଗ ପରି ପୃଥୁଳ ସ୍ତନବିଶିଷ୍ଟା । ଅଶେଷ…ମଣି—ସମସ୍ତ ସ୍ତ୍ରୀଜାତିର ମସ୍ତକସ୍ଥିତ ମଣି ପରି ଅର୍ଥାତ୍ ନାରୀଶ୍ରେଷ୍ଠା । ସୁରରମଣୀ—ଦେବ ସ୍ତ୍ରୀ, ଯାହାର (ଅଙ୍ଘ୍ରି-ଅସମ)—ପାଦତଳକୁ ସରି ନୁହନ୍ତି । ୨୪ । ସୁର-ତରଙ୍ଗିଣୀ—ଗଙ୍ଗାକୁ । ଏ ତୋଷ—ଏ ପ୍ରକାର ଉଜ୍ଜ୍ୱଳବେଶ ଦେଖି, ଅମ୍ବିକା—ପାର୍ବତୀ, କ୍ରୋଧରେ ଅତି ଅଧୀର ହେଲେ । ଅଙ୍କୁ—କୋଳରୁ । ମହୀ ଉପରେ—ଭୂଇଁରେ, ଅକ୍ଷି—ଆଖି । ଲୁଅ—ଲୁହ ( ଅଶ୍ରୁ ) । ଆପରେ—ଜଳରେ । ୨୫ । ଅରୁଣ—ରକ୍ତବର୍ଣ୍ଣ । ଅବନୀ ଚିରିବାକୁ—ଭୂଇଁରେ ଗାର ପକାଇବାକୁ (କ୍ରୋଧ ଓ ଲଜ୍ଜାବେଳେ ସ୍ତ୍ରୀମାନେ ଭୂଇଁରେ ନଖରେ ଗାର ପକାନ୍ତି ।) ଉନ୍ମୁଖ—ଉଦ୍ୟତ । ଅଳକର—କପାଳର । ତିଳକ-ଚନ୍ଦନ, କସ୍ତୁରୀ ପ୍ରଭୃତିର ଟୋପା । ଅଳକାର ସୁମନ—କେଶରେ ବନ୍ଧା ହୋଇଥିବା ଫୁଲ ।

ଅଣ୍ଡ ଯଷ୍ଟି ପ୍ରହାରେ ଯଥା ଅସ୍ଥିର
ଅଙ୍କୁଶଘାତେ ଦନ୍ତୀ ଯେସନ୍ତ ପ୍ରଖର ଯେ
ଅନାଇ ସେ କୋପନା-ସ୍ୱନ୍ତ ମହେଶ
ଅନ୍ତ କାତର ହୋଇ ମନ୍ତ ବିରସ ଯେ । ୨୬

ଅନଳନୟନ ବାଞ୍ଛାପ୍ରଦ ଶିବ
ଅକଳଙ୍କ ବଦନ ସିତାବପୁବ ହେ
ଅଚଳ-ବାସ ଏକାଚମ୍ବିତ ତେଜ
ଅଲୌକିକ ସ୍ୱନ୍ତ କେ ତା ଜାଣେ ଅଜ ହେ । ୨୭

ଗୋମୂତ୍ରିକା ବନ୍ଧ

| ଅ | ନ୍ତୁ | ର | ପ | କ୍ଷ | ନ | ର | ର | କ୍ଷ | କ୍ଷା | ଣ | କ |
|---|---|---|---|---|---|---|---|---|---|---|---|
| ଅ | ସୁ | ର | ର | କ୍ଷ | ବ | ର | ମୋ | କ୍ଷ | କ୍ଷ | ଣ | କ |

ଅନ୍ତୁରପକ୍ଷ ନରରକ୍ଷ-କ୍ଷଣକ
ଅସୁର ରକ୍ଷବର ମୋକ୍ଷକ୍ଷଣକ ହେ
ଅଜସ୍ର ଜଗଜ୍ଜନ ଜନ ଜନକ
ଅକ୍ଷେ ଅନାଥ ହୁଅ ତ ଅଶୁଅଜ ହେ । ୨୮

୨୬ । ଅଣ୍ଡ— ସାପ । ଯଷ୍ଟି ପ୍ରହାରେ—ବାଡ଼ି ଆଘାତରେ । ଅଙ୍କୁଶଘାତେ— ଅଙ୍କୁଶ ମାଡ଼ରେ । ଦନ୍ତୀ—ହାତୀ । ପ୍ରଖର-ବେଗରେ ଜରଜର । କୋପନାସ୍ୱନ୍ତ— କ୍ରୋଧଯୁକ୍ତା ପାର୍ବତୀଙ୍କର ଢଙ୍ଗ । ମହେଶ—ଶିବ । ବିରସ—ଦୁଃଖିତ । ୨୭ । ଅନଳନୟନ—ଅଗ୍ନି ଯାହାଙ୍କର ନେତ୍ର । ବାଞ୍ଛାପ୍ରଦ—କାମନା ପୂରଣକାରୀ । ଶିବ—ମଙ୍ଗଳପ୍ରଦ । ଅକଳଙ୍କ-ବଦନ—ନିର୍ମଳ-ମୁଖ । ସିତାବପୁବ—ଧବଳ ଶରୀର । ଅଚଳବାସ—ପର୍ବତବାସୀ । ଏକ—ଅଦ୍ୱିତୀୟ । ଆଚମ୍ବିତ—ବିସ୍ମୟ-ଉତ୍ପାଦକ । ତେଜ—ପ୍ରଭାବ । ଅଲୌକିକ—ଅଲୌକିକ (ଅସାଧାରଣ) । ସ୍ୱନ୍ତ —ପ୍ରକାର । ଅଜ—ଜନ୍ମରହିତ (ସମ୍ବୋଧନ) । ୨୮ । (ଅନ୍ତୁର ପକ୍ଷ) ଦସ୍ୟୁପ୍ରଭୃତି- ମାନଙ୍କର ସହାୟ (ଯେଉଁ ନର) ମନୁଷ୍ୟମାନେ, ସେମାନଙ୍କର (ରକ୍ଷାକର୍ତ୍ତା) ପାଳନ କର୍ତ୍ତା । (ଅସୁରରକ୍ଷବର) ବାଣ ପ୍ରଭୃତି ଅସୁର ଓ (ରକ୍ଷବର) ରାକ୍ଷସ- ଶ୍ରେଷ୍ଠମାନଙ୍କର (ମୋକ୍ଷ କ୍ଷଣକ)—ମୋକ୍ଷରୂପ ଉତ୍ସବପ୍ରଦ ।

ଅପର ସ୍ଥଳେ ମାନ ସ୍ତୁଟି ବଚନ
ଅର୍ପିତ କରନ୍ତେ ଶ୍ରୀ ବୈକୁଣ୍ଠେଶ ଯେ
ଅଯ୍ଯେ ଶଙ୍କର ହର ଗିରିଜାଧବ
ଅନ୍ତେ ଶେଷ ବଳଭଦ୍ର ଶରଣ ହେବ ହେ । ୨୯

—ଃ୦ଃ—

# ତ୍ରିଂଶ ଛାନ୍ଦ

## ମାନଭଞ୍ଜନ ସ୍ତୁତି

ରାଗ—କାମୋଦୀ

ଅମ୍ବିକାବିଳାସରସ ରସସୁଖାକର କର ମନେ ଧୀବରବର
ଅମୃତଛବିଧର-ଧର ଯାହାର ପୁର ପୁର ପରାଣହର ହର ସେ
ଉମାବର,
ଅନଙ୍ଗରେ କାତରତର
ଅତି ହେବାରୁ ତରତର
ଅର୍ପିତ କଲେ ବର-ବରମାକ ଉତ୍ତର ତରଳେ ହୋଇ ଜରଜର ସେ
ଉମାବର । ୧

---

### ତ୍ରିଂଶ ଛାନ୍ଦ

୧ । ଅମ୍ବିକାବିଳାସରସ—ପାର୍ବତୀଙ୍କ କ୍ରୀଡ଼ାରସ । ରସସୁଖାକର—ଶୃଙ୍ଗାରାଦି ରସଜନିତ ସୁଖର (ଆକର) ଆଧାର । ହେ (ଧୀବରବର) ପଣ୍ଡିତଶ୍ରେଷ୍ଠମାନେ ତାହାକୁ (ମନେକର) ସ୍ମରଣକର,ହେଜ । (ଅମୃତଛବିଧର) ଅମୃତର କାନ୍ତିପରି କାନ୍ତିକୁ ଧାରଣ କରିଥିବା (ଧର) ପର୍ବତ ଅର୍ଥାତ୍ କୈଳାସ ଯାହାର (ପୁର) ଗୃହ ଯେ (ପୁର-ପରାଣ-ହର) ତ୍ରିପୁରର ବିନାଶକାରୀ ଏବଂ ଯେ (ହର) ସଂହରଣ କରୁଥିବାରୁ ହରନାମରେ ଖ୍ୟାତ, ସେହି (ଉମାବର) ପାର୍ବତୀଙ୍କ ସ୍ୱାମୀ; ଶିବ; (ଅନଙ୍ଗରେ) କାମରେ, (କାତରତର) ଅତିଶୟ କାତର ହୋଇ, (ଅତି ତରତର) ଚଞ୍ଚଳମନା ହେବାରୁ, (ତରଳେ) ଅଧୈର୍ଯ୍ୟ ଭାବ, (ଜରଜର) ଅତି ଅସ୍ଥିର ହୋଇ (ବରବରମାକ) ବରବର୍ଣ୍ଣିନୀ—ଉତ୍ତମ ଜାତୀୟା ସ୍ତ୍ରୀ ପାର୍ବତୀଙ୍କୁ କହିବାକୁ ଲାଗିଲେ । 'ଯୋଷା ଯୋଷିଦାସିତା ବର୍ଣ୍ଣିନୀ ସ୍ତ୍ରୀ' ଇତି ହଳାୟୁଧ ।

ଅପୂର୍ବ ମୃଦୁଭାଷ ଭାଷନ୍ତ ରେ ସରସ — ରସଜାକ୍ଷି ବରଷ ରସ
ଅଙ୍କରେ ବସ ବଶ ତୋର ମୁଁ ଦାସ ନାଶ ନାଶକ ମାର ତ୍ରାସ ତ୍ରାସ ରେ

ପ୍ରାଣବନ୍ଧୁ,

ଅବ୍ଜ-ଆନନ ଆସ ଆସ

ଅଙ୍ଗଦେଶେ ନିବେଶ କେଶ

ଅରବିନ୍ଦ-ସଦୃଶ ଦୃଶ ଖେଳା ବିକାଶ କାଶ କୁମୁଦ ହସ ହସରେ

ପ୍ରାଣବନ୍ଧୁ । ୨

ଅଦୟ ହୋଇ କରି କରିଗତି ଏପରି ପରିଜନେ ବିସ୍ମର ସ୍ମର—
ଅଙ୍କ-କଟି ନାଗରି ! ଗରିଷ୍ଠ ମୋ ବଇରି ଈରଷା ମନେ ଧରି ଧରି ରେ

ପ୍ରାଣବନ୍ଧୁ,

ଅସ୍ତ୍ରମାନଙ୍କୁ ମାରି ମାରି

ଅଙ୍ଗ ଦେଲାଣି ଚିରି ଚିରି

ଅବ୍ଜାନନ ଗଉରି ଉରୀକୃତ ନ କରି କରିଛୁ ଏତେ ପରି ପରି ରେ

ପ୍ରାଣବନ୍ଧୁ । ୩

---

୨ । ଅପୂର୍ବ-ଅସାଧାରଣ । ମୃଦୁଭାଷ— ମଧୁର କଥା । ଭାଷନ୍ତ—କହୁଅଛନ୍ତ ରେ ସରସ ରସଜାକ୍ଷି—(ସରସ) ପ୍ରଫୁଲ୍ଲ (ରସଜ) ଜଳଜ-ପଦ୍ମ ପରି ଅକ୍ଷି ଯାହାର— ହେ ପ୍ରଫୁଲ୍ଲ ପଦ୍ମଲୋଚନେ । (ରସ) ଅନୁରାଗ, ସ୍ନେହକୁ, (ବରଷ) ବୃଷ୍ଟି କର (ଅଙ୍କରେ) କୋଳରେ (ବସ) ଉପବେଶନ କର; ମୁଁ ତୋର (ବଶ) ଅନୁଗତ (ଦାସ) ଭୃତ୍ୟ ଅଟେ । ନାଶକ—ବିନାଶକାରୀ, ଘାତୁକ । ମାରତ୍ରାସ—କାମଭୟ (ତ୍ରାସ) ନାଶକର । (ଅବ୍ଜଆନନ) ହେ ପଦ୍ମମୁଖି । (ଅଙ୍ଗଦେଶେ) ଶରୀରରେ (କେଶ) ଅଳକାବଦ୍ଧ, (ନିବେଶ) ଖଞ୍ଜି ଦିଅ । (ଅରବିନ୍ଦ-ସଦୃଶ) ପଦ୍ମତୁଲ୍ୟ (ଦୃଶ) ଆଖି, (ଚାର) ଖେଳା—କ୍ରୀଡ଼ା, ଚର୍ଯ୍ୟକ ଚଳନାଦି (ବିକାଶ) ପ୍ରକାଶ କର । (କାଶ) କାଶତଣ୍ଡୀ ଫୁଲ ଓ କୁମୁଦ—କଇଁପରି (ଧବଳ) ହସକୁ (ହସ) ଅର୍ଥାତ୍ ପ୍ରକାଶ କର । (ହସଟାଏ ହସି ଦେଲ ଇତ୍ୟାଦି ପ୍ରୟୋଗବତ୍) ।

୩ । ହେ ସ୍ଥୂଳଅଙ୍କ କଟି—ସ୍ଥୂଳ ଅଙ୍କ ପରି ସୂକ୍ଷ୍ମମଧ୍ୟା (ନାଗରି) ପାର୍ବତି! ହେ କରିଗତି) ଗଜଗମନେ ! (ଏ ପରିଜନେ) ଭୃତ୍ୟଠାରେ, (ଅଦୟ) ନିର୍ଦ୍ଦୟ-ହୋଇ, (ଏପରି ବିସ୍ମର ?) ବିସ୍ମର କରିବା ଉଚିତ କି ? ମୋ' (ବଇରି) କାମ, (ଗରିଷ୍ଠ) ଅତି ବଳବାନ୍ । ସେ ମନେ ମନେ ଈର୍ଷ୍ୟା ଧରି ଧରି ଅସ୍ତ୍ରମାନଙ୍କୁ, (ମାରି ମାରି) ବାରମ୍ବାର ପ୍ରେରଣ କରି, ମୋ ଅଙ୍ଗମାନଙ୍କୁ ଚିରିଚିରି ଦେଲାଣି । ହେ (ଅବ୍ଜାନନ) ଚନ୍ଦ୍ରାନନ ଗଉରି ! ତୁ (ଉରୀକୃତ) ସ୍ୱୀକାର ନ କରି ମୋତେ (ଏତେ ପରି) ଏତେ ପର କରୁଛୁ ପରା !

ଅବମାରେ ନ ଗାର ଗାର ମୁଁ ତୋ କଙ୍କର କରନା ଗଣ୍ଡେ କ'ର କର
ଅଠୁ ତୁ ପର ପୁର ପୁଲ୍କତେ ମୋତେ ମାତ ମାତଇ ମନେ କର କର ରେ

ପ୍ରାଣବନ୍ଧୁ,

ଅଶ୍ରୁ କରିଣ ଝର ଝର
ଅଧର କରୁ ଥର ଥର

ଅତି ସଘନେ ଜଉ ଉରଜେ ଭିଡ଼ ଧର ଧରଜା ମୋତେ ଡରଡର ରେ

ପ୍ରାଣବନ୍ଧୁ । ୪

ଅଞ୍ଜନପୁଞ୍ଜ-ଘନ-ଘନକେଶି ବମନ ମନ ନକର ଛନ ଛନ
ଅମାନ ଶ୍ୱାସ ଘନ ଘନ ନ ତେଜ ମାନ ମାନସେ ଆଉ ଧନ ଧ'ନରେ

ପ୍ରାଣବନ୍ଧୁ,

ଅମନ୍ଦେ ଶୁଣା ମନମନ
ଅଦ୍ୟ କରି ସୁମନ ମନ

ଅନୁଜ୍ଞା ଦିଅ ପାନ ପାନ କରାଇ ଆନ ଆ ନବୀନା ମୋଧେ ନ ଘେନ ରେ

ପ୍ରାଣବନ୍ଧୁ । ୫

---

୪ । ହେ (ଧରଜା) ପାର୍ବତୀ ! ତୁ (ଅବମାରେ) ଭୂଇଁରେ, (ନ ଗ୍ରାର) ଗାର ପକାଅ ନାହିଁ । ମୁଁ ତୋର (କଙ୍କର) ଭୃତ୍ୟ, ଏହା (ଗାର) ନିଶ୍ଚିତ ; (ଗଣ୍ଡେ) ଗାଲରେ, (କମ୍ବା) (କ'ର) ସସ୍ତକରେ, (କର) ହସ୍ତ, (କରନା) କର ନାହିଁ । ତୁ (ମୋର) ପୁର— ଗୃହ (ନଗୃହଂ ଗୃହମିତ୍ୟାହୁ ଗୃହିଣୀ ଗୃହମୁଚ୍ୟତେ) ଏଣୁ ଘରେ ଅଠୁପର । (ପୁଲ୍କତେ) ତୋ ସମ୍ମୁଖରେ, ମାର ମୋତେ (ମାତଇ) ମାରୁଛି, ଏହା ମନେକର । ତୁ (ଅଶ୍ରୁ) ଲୋତକ, ଝର ଝର କରି ଅଧରକୁ ଥର ଥର କରୁଛୁ । ଅତି (ସଘନେ) ନିବିଡ଼ ଭାବେ, (ଡର ଡର) ଅତିଶୀଘ୍ର, ମୋ (ଜଉକୁ) ବକ୍ଷକୁ (ଉରଜେ) ସ୍ତନରେ, ଭିଡ଼ି ଧର । ୫ । (ଅଞ୍ଜନପୁଞ୍ଜ) କଜ୍ଜ୍ୱଳ ରାଶି ଓ (ଘନ) ମେଘପରି (କଳା) ଓ (ଘନ) ଗହଳ କେଶବିଶିଷ୍ଟ । ହେ ପାର୍ବତୀ ! ମନକୁ, (ବମନ) ଦୁଃଖିତ କର ନାହିଁ । ମନକୁ (ଛନ ଛନ) ଚଞ୍ଚଳ କର ନାହିଁ । (ଅମାନ) ଅତିଦୀର୍ଘ, (ଶ୍ୱାସ) ନିଃଶ୍ୱାସ, (ଘନ ଘନ) ଚଞ୍ଚଳ ଚଞ୍ଚଳ, (ନ ତେଜ) ପରିତ୍ୟାଗ କର ନାହିଁ । ହେ ଧନ ! (ମାନସେ) ମନରେ, ଆଉ (ମାନ) କୋପ, (ଧ'ନ) ଧର ନାହିଁ । ଅମନ୍ଦେ ଅତିଶୀଘ୍ର, (ମନମନ) ଗଦଗଦ ଧ୍ୱନି, ଶୁଣାଅ । (ଅଦ୍ୟ) ଆଜ (ସୁମନ କରି) ମନକୁ-ପ୍ରସନ୍ନ କରି (ପାନ) ତାମ୍ବୁଲ, (ପାନ କରାଇ) ଖୁଆଇ ମୁଖରୁ (ଆନ) ଅଧର, (ଅନୁଜ୍ଞା') ଆଦେଶ ଦିଅ । ନବୀନା—ହେ ମୁଗ୍ଧେ, ଆ' ଏହା (ମୋଧେ) ବ୍ୟର୍ଥରେ (ନ ଘେନ) ଗ୍ରହଣ କର ନାହିଁ ।

ଅପସବବୃନ୍ଦରେ ଦରେ ମନ ନ ଧରେ ଧନ୍ଦେଶଜା ସ୍ନେହରେ ହରେ
ଅଛୁ କ ଜଗତରେ ଚଟେକ୍ଷଣୀ ବାମାରେ ମାରେ ତୋତେ ଭୂପରେ ପରେରେ

ପ୍ରାଣବନ୍ଧୁ,
ଅନା ଅନା ସୁଖରେ ଖରେ
ଅଛୁ ସେବାରେ ବାରେ ବାରେ

ଅଚନୁ-ରସଧିରେ ଧୀରେ ଭସି ଭସାରେ ସାରେଭଗତ ! ଆରେ ଆରେ ରେ

ପ୍ରାଣବନ୍ଧୁ । ୬
ଅନା ରଜନୀ-ଧବ ଧବଳକରେ ଭବ-ଭବନ-ଶୋଭା ଜୀବଜୀବ !
ଅତନୁଶର ନବ ନବମାଳକା ଶିବ ଶିବ କ ହେବ ଜୀବ ଯିବ ରେ

ପ୍ରାଣବନ୍ଧୁ,
ଅନିଷ୍ଟ କାମଦେବ ଦେବ
ଅବଶ୍ୟ ବନାଶିବ ଶିବ

୬ । ଅପସବବୃନ୍ଦରେ—ଅପସରାମାନଙ୍କଠାରେ, ମୋ ମନ (ଦରେ) ଅଳ୍ପ-ପରିମାଣରେ ମଧ୍ୟ, (ନ ଧରେ) ଲାଗେ ନାହିଁ, ରସେ ନାହିଁ, କେବଳ (ଧନ୍ଦେଶଜା) ଯାବଶ୍ରୀ (ସ୍ନେହରେ) ପ୍ରୀତିରେ ମୋ ମନକୁ (ହରେ) ହରଣ କରେ । (ଜଗତରେ) ବିଶ୍ୱରେ (ଚଟେକ୍ଷଣୀବାମାରେ) ଚଞ୍ଚଳନେତ୍ରା ସ୍ତ୍ରୀମାନଙ୍କ ମଧ୍ୟରେ (ଭୂପରେ) ପୃଥିବୀପୃଷ୍ଠରେ (ମାରେ—ମା ଲକ୍ଷ୍ମୀ) ଶୋଭାରେ (ତୋତେ ପରେ)—ତୋ'ଠାରୁ ଉତ୍କୃଷ୍ଟ ଭାବରେ (ଅଥବା ତୋହପର) କିଏ ଅଛି ? (ଖରେ) ଶୀଘ୍ର, ସୁଖରେ (ଅନା ଅନା) ଚାହଁ ଚାହଁ । ମୁଁ ତୋ ସେବାରେ—ସେବକ କାର୍ଯ୍ୟରେ, (ବାରେ ବାରେ) ବାରମ୍ବାର ରହିଅଛି । ଆରେ ପ୍ରାଣବନ୍ଧୁ ! ହେ (ସାରେଭଗତ) ଉତ୍କୃଷ୍ଟ କରୀପର ଗମନ ବିଶିଷ୍ଟା ! ତୁ (ଅତନୁରସଧିରେ) କାମସମୁଦ୍ରରେ ଧୀରେ ଭସି ଭସା । ତୋ ହୃଦୟରେ ଅଳ୍ପ କାମଭାବର ଉଦ୍ରେକ ଦେଖିଲେ ଏ ସେବକର ମନ ଅତି ଉତ୍ଫୁଲ୍ଲ ହେବ । ୭ । ହେ (ଜୀବ-ଜୀବ) ହେ ପ୍ରାଣାଧିକେ ! (ରଜନୀ-ଧବଙ୍କର) ଚନ୍ଦ୍ରଙ୍କର, (ଧବଳକରେ) ଧଳାକିରଣରେ ହୋଇଥିବା (ଭବ-ଭବନର) ପୃଥିବୀ ରୂପ ଗୃହର, ଶୋଭାକୁ (ଅନା) ଦେଖ । (ଅତନୁଶର) କନ୍ଦର୍ପ-ଶରସ୍ୱରୂପ, (ନବ) ନୂଆ, ପ୍ରସ୍ଫୁଟିତ ନବମାଳିକାକୁ ମଧ୍ୟ ଦେଖ । (ଶିବଶିବ) ହାୟ ହାୟ (ଖେଦକ୍ତି) କଅଣ ହେବ କେଜାଣି ?(ଜୀବ) ପ୍ରାଣ (ଯିବ) ଚାଲିଯିବ । କାମଦେବ, (ଅନିଷ୍ଟ) ଅମଙ୍ଗଳ ଫଳ ଦେବ । (ଅବଶ୍ୟ) ନିଶ୍ଚୟ ଶିବକୁ ଅର୍ଥାତ୍ ମୋତେ (ବନାଶିବ) ମାରିବ । ହେ ବନ୍ଧୁ ! ଆସ, ମୋର (ଅଙ୍କ) କୋଳରେ ବସ । (ଉଚିତଭାବ) ସୁଉଚିତହର୍ଷସୂଚକ ଭାବନାକୁ (ସ୍ନେହେ) ପ୍ରୀତିସହ (ଭାବ) ମନରେ କର, ଦୁର୍ଲ୍ଲଭ (ଯଶଃ)କୁ ଲାଭକର ।

ଅଙ୍କେ ମୋର ଆସ ବସ ବନ୍ଧୁ ଭଡଭାବ ଭାବ ସ୍ନେହେ ଦୁର୍ଲ୍ଲଭ ଲଭ ରେ
ପ୍ରାଣବନ୍ଧୁ । ୭

ଅଙ୍ଗନା ଅନା ଅନା ବଶ ଦାସ ନାଶ ନା ଘେନ ବାରେ ସୁମନା ମନା
ଅସ୍ୱେ ନଗ୍ନା ଘନା ଦୋଷେ ହେବ ନା ବିନାଶ ମୁଁ ହେଜ ଭାବନା ବନା ରେ
ପ୍ରାଣବନ୍ଧୁ,
ଅପାଙ୍ଗରଙ୍ଗେ ଅନା ଅନା
ଅନଙ୍ଗ କରେ ଚେନା ଚେନା
ଅବ୍ଜ-ହାସି ନାଶି ନା କି ସୁଖ-ମନା ମନାକୁଳେ ଭଷ'ନା ନା ନା ନା ନା ରେ
ପ୍ରାଣବନ୍ଧୁ । ୮

ଅତି ପରମରମଣୀୟ ଆରାମ ରାମନୟନା ଗୃହ୍ଣି କାମ କାମ
ଅଭାବେ ତମେତମ ଭଜୁ ତ ତମ-ତମ-କେଶି ! ଏ ନିଶି କାମ କାମ ରେ
ପ୍ରାଣବନ୍ଧୁ,
ଅନାଇଁ ଛୋ ଏ ତମତମ
ଅଙ୍ଗ ମୋ ହୋଏ ଦମଦମ

---

୮ । ରେ ଅଙ୍ଗନା, (ଅନା ଅନା) ଦେଖ ଦେଖ, (ବଶ) ବଶୀଭୂତ (ଦାସ) ଭୃତ୍ୟକୁ (ନାଶ ନା) ନାଶ କର ନାହିଁ । ହେ ସୁମନ (ବାରେ) ଥରେ ମାତ୍ର (ମନା ଘେନ) ବାରଣ ମାନ । ଅୟେ (ହେ) ନଗ୍ନା, ଘନା ଦୋଷେ ବିନାଶ (ହେବ ନା ?) ହେବ ଠିକ ? ଏହି କଥା ହେଜ (ଭାବନାକୁ) ଚିନ୍ତାକୁ (ବନା) ଛଆଡ଼ କର ଅର୍ଥାତ୍ ରଚନା କର । (ଅପାଙ୍ଗରଙ୍ଗେ) କଟାକ୍ଷଛଟାରେ ଗୃହ୍ଣି ଗୃହ୍ଣି ।(ଅନଙ୍ଗ) କାମ ମୋତେ (ଚେନା ଚେନା) ଠିକ ଠିକ(କଚ୍ଛେନ୍ଦ୍ରକରୁଛି । ହେ (ଅବ୍ଜହାସି) ଚନ୍ଦ୍ରହାସି (ନା) ପୁରୁଷକୁ ନାଶି (ସୁଖମନା) ଆନନ୍ଦମନା ହେବୁ କି ? ଅତଏବ (ମନାକୁଳେ) ମନ ଦୁଃଖରେ 'ନା ନା ନା ନା' ଏହି ପଦମାନ (ଭାଷନା) କହନା । ଅଥବା ମନ ଦୁଃଖରେ (ନା ନା ନା ନା) ଏଣୁତେଣୁ ଅନେକ ପ୍ରକାର କହନା । ୯ । ହେ (ରମନୟନା) ସୁନ୍ଦର ଲୋଚନେ ବା ମୃଗଲୋଚନେ, ଏ (ପରମରମଣୀୟ) ଅତି ମନୋହର (ଆରାମ) ଉପବନ, ବଗିଚ୍ଚାକୁ ଗୃହ୍ଣି (କାମ) ମଦନ (କାମଅଭାବେ) କୌଣସି କାର୍ଯ୍ୟ ନ ପାଇବାରୁ (ତମ ତମ ହେଉଛି) କମ୍ପୁଛି । (ହେ ତମ-ତମକେଶି) ଗାଢ଼ ଅନ୍ଧକାର ପରି କୃଷ୍ଣ କେଶବିଶିଷ୍ଟା ପ୍ରାବଙ୍ଗି ! ଏ (ନିଶି) ଆଜ ରାତିରେ (କାମ) ମଦନ (କାମ) କାର୍ଯ୍ୟ (ଭଜୁ ତ) ଲଭୁଁ 'ତ' (ଅନୁରୋଧ ବ୍ୟଞ୍ଜକ) ଛୋର ଏ (ତମ ତମ) କ୍ରୋଧଭାବ ଦେଖି ମୋର (ଅଙ୍ଗ) ଶରୀର (ଏଠାରେ ଗ୍ରନ୍ଥି) ଦମ ଦମ ହେଉଛି—ଥରୁଛି,

ଅଦ୍ୟ ବିଷମସମୟେ ନୁହ ବାମ ବାମ-ଅଙ୍ଗୀ ବିନାଶ ଖ୍ରାମଖ୍ରାମ ରେ
ପ୍ରାଣବନ୍ଧୁ । ୯

ଅତ୍ୟନ୍ତ ନତି ନତି ନୁତି-ଘରଷି ଚଣ୍ଡାଶାରଙ୍କ ଘେନ ମତି ମତି
ଅଜବ-ଗତି ଗତି କଲେ ପୀରତି ରତି ସୂଚଲ ନେହ ଶିତ ଶିତ ରେ
ପ୍ରାଣବନ୍ଧୁ,
ଅସମ ସେ ମୂରତି ରତି
ଅଂଶକୁ ହିଁ ଘରଷି ରତି
ଅତ ବିପତ୍ତି ପତି ଗୁଡ଼ଲେ ରତି-ରତିସ୍ନେହେ ହୁଅନ୍ତେ କତି କତି ସେ
ପ୍ରାଣବନ୍ଧୁ । ୧୦

ଅଘ-କାଳଭୁଜଗ ଜଗଦୀଶ ! ମୋ ଆଗ ଆଗ ନାଶ ଉଦ୍‌ବେଗ ବେଗ
ଅନ୍ତର କର ନାଗ-ନାଗଚର୍ମଧର ଗରଗଳ ମୁଦ ନାଗ-ନାଗ ହେ
ମହାପ୍ରଭୁ,

---

ଉଠୁଛି ଗଡ଼ୁଛି । ହେ (ବାମଙ୍ଗି) ସୁନ୍ଦରାଙ୍ଗି, ମୋ ପକ୍ଷେ (ବିଷମସମୟେ) ସଂକଟ କାଳରେ (ବାମ) ପ୍ରତିକୂଳ । ମାକ୍ଷମା (ନୁହ) ହୁଅ ନାହିଁ । ହେ (ବାମଅଙ୍ଗୀ) ସୁନ୍ଦରାଙ୍ଗି (ଖ୍ରାମ) ଶିବର (ଖ୍ରାମ) ଭୟ ନାଶ କର । ଶିବର ଭୟ ବିନାଶ କର । ୧୦ । (ଚଣ୍ଡାଶାରଙ୍କ) କାମଶତ୍ରୁ ମହାଦେବଙ୍କର ଅତ୍ୟନ୍ତ(ନତି-ନତି)ଅତି ବିନମ୍ର ନମସ୍କାର ଓ (ନୁତି-ଘରଷି) ସୁତିବାକ୍ୟ; (ମତି ମତି) ମନେ ମନେ, (ଘେନି) ଗ୍ରହଣ କରି,(ଅଜବଗତି) ମନ୍ଦଗମନା ପାର୍ବତୀ ଗତି କଲେ । ତାହାଙ୍କର ନେହର (ଶିତ ଶିତ) କମ୍ପନ (ପ୍ରୀତିମୟ) (ରତି) ଅନୁରାଗକୁ (ସୂଚଲ) ବ୍ୟକ୍ତକଲା । ସେ (ମୂର୍ତ୍ତି) ରୂପ (ଅସମ) ତାହାର ତୁଳନା ନାହିଁ । ସେହି ରୂପର ଏକ ଅଂଶକୁ, (ରତି) କାମସ୍ତ୍ରୀ ସମାନ ହୋଇଥିବାରୁ ତାହାର ନାମ 'ରତି' ଏହି (ଘରଷି) କଥା ପ୍ରଚଳିତ । ସେହି ପାର୍ବତୀ ସ୍ନେହରେ (ରତି ରତି) ସୁରତି ପ୍ରତି ସ୍ନେହଯୁକ୍ତା ହୋଇ (କତି କତି ହୁଅନ୍ତେ) ନିକଟ ନିକଟକୁ ଗମନ କରନ୍ତେ, (ପତି) ସ୍ୱାମୀ, ଶିବ (ବିପିତ୍ତି) ଦୁଃଖ (ଗୁଡ଼ଲେ) ସୁଖୀ ହେଲେ । ୧୧ । ହେ ଜଗଦୀଶ ! (ଆଗ) ପ୍ରଥମତଃ ମୋର (ଅଘ) ପାପ ରୂପ (କାଳଭୁଜଗ) କୃଷ୍ଣ ସର୍ପକୁ ଓ (ଆଗ) ଅପରାଧକୁ ନାଶକର । (ଉଦ୍‌ବେଗ) ଉଦ୍‌ବେଗର ପ୍ରଭାବକୁ, (ଅନ୍ତରକର) ଦୂର କର । ଆପଣ (ନାଗ) ସର୍ପ, (ନାଗଚର୍ମ ) ହସ୍ତିଚର୍ମ ସର୍ପ ଓ ହସ୍ତଚର୍ମ ଧାରୀ, (ଗରଗଳ) ବିଷକଣ୍ଠ (ନାଗ ନାଗ) ସର୍ପରାଜ ବାସୁକି ନାଗଶବ୍ଦ ଅନ୍ତରେ ରହିଲେ ପ୍ରଧାନକୁ ବୁଝାଏ । (ଆପଣଙ୍କର) ମୁଦ—ଅଙ୍ଗୁଳିର ଅଳଙ୍କାର ଅଟେ ।

ଅନ୍ୟ କରି ବିଯୋଗ-ଯୋଗ
ଅଛ ହେ ପ୍ରଭୁ ଯୁଗ ଯୁଗ
ଅନ୍ଧକାରି ଅନଙ୍ଗ-ନଗ-ବଜ୍ର-ସୁଭଗ ଭଗବାନ ବିରାଗ ରାଗ ହେ
ମହାପ୍ରଭୁ । ୧୧

ଅବନୀ ତୁମ୍ଭେ ଜଳ ଜଳଜାକ୍ଷ ଅନଳ ନଳ * ବାଶ୍ୱର ଗରଗଳ
ଅଟ ତୁମ୍ଭେ ଅନିଳ ନୀଳକଣ୍ଠ ସକଳ-କଳନ ଉଗ୍ରବଳ ଦଳ ହେ
ମହାପ୍ରଭୁ,
ଅବ୍‌ଜଦଳ-ଚଳଚଳ
ଅଂଶେ ମୋ ଆୟୁବଳ ବଳ
ଅତି ବ୍ୟାକୁଳ କୁଳ ଶୀର୍ଣ୍ଣ ଦୁର୍ବଳ ବଳଭଦ୍ର ଭୂପାଳ ପାଳ ପାଳ ହେ
ମହାପ୍ରଭୁ । ୧୨

---

ଆପଣ ବିଯୋଗ ଓ ଯୋଗକୁ (ଅନ୍ୟ) ବିପରୀତ କରି ଅର୍ଥାତ୍ ପ୍ରଳୟରୁ ସୃଷ୍ଟି ଓ ସୃଷ୍ଟିରୁ ପ୍ରଳୟ କରି (ଯୁଗେ ଯୁଗେ) ପ୍ରତିଯୁଗ ବିଦ୍ୟମାନ ଅଛନ୍ତି । (ଅନ୍ଧକାରି) ଅନ୍ଧକାସୁର ଶତ୍ରୁ (ଅନଙ୍ଗ) କାମରୂପ (ନଗ) ପର୍ବତର ଦଳନ ବିଷୟରେ ବଜ୍ର ପରି (ସୁଭଗ) ଦକ୍ଷ ସୁନ୍ଦର ଅଟନ୍ତି । (ଭଗବାନ) ଷଡ଼ୈଶ୍ୱର୍ଯ୍ୟ-ଶାଳୀ ଅଟନ୍ତି, ଆଉ ମଧ୍ୟ (ବିରାଗ) ବୈରାଗ୍ୟମୟ ଓ (ଅନୁରାଗ) ଅନୁରାଗମୟ ଅଟନ୍ତି । ୧୨ । ହେ [ଜଳଜାକ୍ଷ] ପଦ୍ମନେତ୍ର, [ଗରଗଳ] ବିଷକଣ୍ଠ ଶିବ, ତୁମ୍ଭେ [ଅବନୀ] କ୍ଷିତି [ମାଟି], ଜଳ, [ଅନଳ] ଅଗ୍ନି [ତେଜ] ନଳବିଶ୍ୱର [?]—ଆକାଶ [?]—[ଅନିଳ] ପବନ ଅଟ । ହେ ନୀଳକଣ୍ଠ, ତୁମ୍ଭେ [ସକଳ କଳନ] ସର୍ବସଂହାରକ, [ଉଗ୍ରବଳ] ଉତ୍କଟ ବଳଶାଳୀମାନଙ୍କ ଦଳନକାରୀ [ବିନାଶକ] [ଅବ୍‌ଜଦଳ] ପଦ୍ମପାଖୁଡ଼ା ପରି ଆଡ଼କୁ [ଚଳ] କାଇଚଳର ଚଳଅଂଶରେ ଅର୍ଥାତ୍ ହାତମୁଠାରେ ମୋ [ଆୟୁବଳ] ଆୟୁଷକୁ [ବଳ] ଗଢ଼ିଥାଅ, [ହାତରେ ଧରି ବାଟିଲ ବଳାଇ ପରି] । ଅତି [ବ୍ୟାକୁଳ] ଦୁଃଖ ବା ଦୁର୍ଗତି [ବ୍ୟାକୁଳତାର ଉତ୍ପାଦକ] [ହେତୁମାନ ଓ ହେତୁର ଅଭେଦ] ଦ୍ୱାରା [ଶୀର୍ଣ୍ଣ] ଶୁଷ୍କ ଓ [ଦୁର୍ବଳ] ବଳହୀନ, ବଳଭଦ୍ର, [ଭୂପାଳ] ରାଜାଙ୍କୁ [ପାଳ ପାଳ] ପାଳନ କର ।

---

* ଦ୍ୱିଷ୍କର [ଖ]

# ଏକତ୍ରିଂଶ ଛାନ୍ଦ

## ଶରଦ୍ ବର୍ଣ୍ଣନ

ରାଗ—ଶଙ୍କରାଭରଣ

ଅମଳ ହଶିଲେ ହଂଶ କମଳ ବିକାଶ
ଅଙ୍ଗନା ହାସ-ସଙ୍କାଶ ଶୋଭା ଫୁଟି କାଶ
ଅଚ୍ଛତର ନୀରଜଳ
ଅମୃତକର-କିରଣ ଅଧିକ ଉଜ୍ଜ୍ୱଳ । ୧
ଅଗସ୍ତି ବିଟପୀ ପ୍ରଫୁଲ୍ଲିତ ହେଲେ ସର୍ବ୍ବ
ଅନଙ୍ଗ ମନ୍ତ୍ରେ ବୃଷଭ ଧେନୁକୁ ଗୋଡ଼ାଇ
ଅମ୍ବୁ ନ କରେ ବରଷା
ଅମ୍ବୁଦ ଗର୍ଜ୍ଜନଭରେ ପୂର୍ଣ୍ଣ ହୋଏ ଆଶା । ୨
ଅହ ଶୀର୍ଣ୍ଣ ହୋଇ ହେଲେ ଚାତକ ବିରସ
ଅମିୟ-ପାନେ ଚକୋର ମନସ ଉଲ୍ଲାସ
ଅମୃତରୁ ସ୍ୱାଦୁ କ୍ଷୀର
ଅପୂର୍ବ ଚଳନ୍ତ ହେଲେ ପଥିକେ ବାହାର । ୩

---

### ଏକତ୍ରିଂଶ ଛାନ୍ଦ

୧ । ଅମଳ—ନିର୍ମଳ । ହଂଶ—ହଂସମାନେ । କମଳ ବିକାଶ—ପଦ୍ମବିକାଶ ହେଲା ଅର୍ଥାତ୍ ପଦ୍ମମାନେ ଫୁଟିଲେ । କାଶ-କାଶତଣ୍ଡିଫୁଲ ଫୁଟି (ଅଙ୍ଗନା ହାସ ସଙ୍କାଶ) —ସ୍ତ୍ରୀମାନଙ୍କର ହାସତୁଲ୍ୟ ଶୋଭା ପାଇଲା । ନୀରଜଳ (ଅଚ୍ଛତର) ଅତି ନିର୍ମଳ ହେଲା । ଅମୃତକର କିରଣ—ଚନ୍ଦ୍ରକିରଣ । ୨। ବିଟପୀ—ବୃକ୍ଷ । ପ୍ରଫୁଲ୍ଲିତ—ବିକଶିତ (ସର୍ବ୍ବ) ଅର୍ଥାତ୍ ଶରତ୍‌କାଳରେ । (ଅନଙ୍ଗ ମନ୍ତ୍ରେ) କାମ ମନ୍ତ୍ରଣାରେ । (ଅମ୍ବୁଦ)—ମେଘ, (ଅମ୍ବୁ)—ଜଳ ବରଷା କରେ ନାହିଁ । ଗର୍ଜ୍ଜନଭରେ—ମେଘର ଘଡ଼ଘଡ଼ି ଶବ୍ଦରେ । ଆଶା—ହଂସ ପୂର୍ଣ୍ଣ ହୁଏ ।

"ଶରଦି ଗର୍ଜନ୍ତି ନ ବର୍ଷନ୍ତି ବର୍ଷନ୍ତି ବର୍ଷାସୁ ନିଃସ୍ୱନୋ ଜଳଦଃ,
ଖଳୋ ବଦତି ନ କୁରୁତେ ସୁଜନସ୍ତୁ କରୋତ୍ୟେବ ।"

୩ । ଅହ—ଖେଦସୂଚକ ଅବ୍ୟୟ । ଚାତକ ପକ୍ଷୀମାନେ (ଶୀର୍ଣ୍ଣ ହୋଇ) ଦୁର୍ବ୍ବଳ ହୋଇ (ବିରସ) ଦୁଃଖିତ ହେଲେ (ବୃଷ୍ଟି ଅଭାବରୁ ପିଇବାକୁ ଜଳ ନ ପାଇ) ।

ଅରୁଣୋଦୟରୁ ସ୍ନାନ ସାରି ସାଧୁଜନେ
ଅନାହାର ଚାନ୍ଦ୍ରାୟଣ ଦୃଢ଼ଷ୍ଟ୍ୟ-ବିଧାନେ
ଅଭିଧୃତବ୍ରତ ଭଜି
ଅବ୍‌ଜ-ସ୍ଥାନେ ମୃତ୍ତିକା ଶଙ୍ଖମାନ ପୂଜି । ୪
ଅପୂଁଳା-ତୁଳସୀ-ସେବା ପଟମ୍ବରସମେ
ଅମେଧ୍ୟ ଆହାର-ମନ ଛାଡ଼ିଲେ ସଂଯମେ
ଅଙ୍ଗନାଏ ତୋଷଭରେ
ଅତି ହରଷରେ ପୂଜନ୍ତି ରମ୍ବା (ଲ ?) ଦାମୋଦରେ । ୫
ଅନନ୍ତ ଦୀପ ଜାଳନ୍ତି ଦେବତାଙ୍କ ଆଗେ
ଅୟୁତଲକ୍ଷ ତୁଳସୀ ଚଢ଼ାନ୍ତି ଶ୍ରୀଅଙ୍ଗେ
ଅନ୍ନ ନୂଆ ଚୂଡ଼ାମାନ
ଅଦନ ଲବଣୀ କଲେ ଭାଗ୍ୟବନ୍ତ ଜନ । ୬
ଅଦା ସାରୁ ବନ୍ତାକ କଦଳୀ କଳାମୂଗ
ଅପୂଁଳା ଓ୍ୱାଜ ଚେନ୍ନୁକ ସୁକୋମଳ ଶାଗ
ଅନୁଆନେ ଦଲେ ନେଡ଼ା
ଅଗସ୍ତି କୁସୁମଶାଗ ଯେ ଲୁଣଖଣ୍ଡା । ୭
ଅଷ୍ଟ-ଅର୍ଦ୍ଧ ବର୍ଗ ଦେବାକୁ ଏ ଋତୁ କ୍ଷମ
ଅତି ଧାନକନ ହିଁ ଏ କାଳେ ଦୁର୍ଣ୍ଣିଷମ (କାମ)
ଅହର୍ନିଶି କାମିକୁଳ
ଅନଙ୍ଗରଙ୍ଗେ ଅଙ୍ଗନା ସଙ୍ଗେ ହେଲେ ଭୋଳ । ୮

---

ଅମୀୟ—ଅମୃତ । (ଚାନ୍ଦେ) ପାନ ହେତୁ, ଚକୋରଙ୍କ, (ମାନସଚାଲୀଏ)ମନର ପ୍ରଫୁଲ୍ଲଭାବ ଜାତ ହେଲା । (ମେଘ ଆକାଶରେ ନ ଥିବାରୁ ଉଜ୍ଜ୍ୱଳ ଚନ୍ଦ୍ରକିରଣ ଫୁଟିଲା । ଚକୋର ଚନ୍ଦ୍ରକିରଣ ପାନକରେ, ଏହା କବିସମ୍ପ୍ରଦାୟ ସିଦ୍ଧ, ଯଥା—"ଜ୍ୟୋତ୍ସ୍ନାପେୟା ଚକୋରୈଃ ।") କ୍ଷୀର—ଦୁଧ । ଅୟନ ଚଳିଲା-ସୂର୍ଯ୍ୟଙ୍କର ଦକ୍ଷିଣାୟନ ଆରମ୍ଭ ହେଲା (ଅଥବା ଅୟନ ଚଳିବା ପଥିକେ—ବାଟଚାଲିବା ପଥିକମାନେ) ବାହାରିଲେ । ୪ । ଅରୁଣୋଦୟରୁ—ସିନ୍ଦୂର ଫାଟିଲା ବେଳୁ । ଚାନ୍ଦ୍ରାୟଣ—ବ୍ରତବିଶେଷ । ଅବ୍‌ଜସ୍ଥାନେ—ପଦ୍ମସ୍ଥାନ ଅର୍ଥାତ୍ ପୁଷ୍କରିଣୀ, ନଦୀମାନଙ୍କରେ ।୫। ରମ୍ବା—ରଇ—ଲକ୍ଷ୍ମୀରୂପିଣୀ ରାଧା । ଦାମୋଦର—ବିଷ୍ଣୁ । ୬ । ଅନନ୍ତ ଦୀପ—ଅଖଣ୍ଡ ଦୀପ । ଅଦନ—ଭକ୍ଷଣ । ୭ । ଅନୁଆନେ—ପ୍ରତ୍ୟେକେ ।୮। ଅଷ୍ଟ ଅର୍ଦ୍ଧ ବର୍ଗ—ଚତୁର୍ବର୍ଗ (ଧର୍ମ, ଅର୍ଥ, କାମ ଓ ମୋକ୍ଷ) ।

ଅମୃତ-ପ୍ରେମ ବଚନ ରଚନରେ ପୁଣି
ଅଙ୍ଗ ଥିବାଯାଏ ହେଲେ ଦୁହେଁ କାଣା କାଣି
ଅକଥନ ତାଙ୍କ ପ୍ରୀତି
ଅଇଲ ତ ନାହିଁ କହିବାକୁ ମୋ ଘରଣି । ୧୪

ଅଣୁଏ ଯେଉଁ କୁତୁକ ଜାଣି ଉତିପତି
ଅଛୁ ନିର୍ମାଣ କରି ତା ରତିଶାସ୍ତ୍ର ପୋଥି
ଅବଧି ବାଳ ହେବ ଟିଣି
ଅଧିକ ପ୍ରବଳ ପ୍ରୀତି କେ ଧାରିବ ଭଣି । ୧୫

ଅଷ୍ଟ ଏକ ନେତ୍ର ଶେଷ ଷଡ଼ଭୁଜ ପୂଣ
ଅବ୍ଜ ବେଣୀ କଳା ବିଭୂଷଣ ତିନି ଜଣ
ଅର୍ଚ୍ଚି ଗୃହ ଚରଣରେ
ଅହର୍ନିଶି ବଳଭଦ୍ର ଭଞ୍ଜ ଆଶେ କରେ । ୧୬

———

୧୩ । ଅପସର···ପ୍ରୀତିସ୍ୱରେ—ଅତି ପ୍ରୀତି ହେତୁ ବୃକ୍ଷକୁ (ଅପସର) ତକିଆରୂପେ ବ୍ୟବହାର କରନ୍ତି—ବକ୍ଷ ଉପରେ ମସ୍ତକ ସ୍ଥାପନ କରି ଶୟନ କରନ୍ତି । ଅସିତକଣ୍ଠ—ମହାଦେବ । ସାମ୍ୟରୁ—ନିଜ ସାଦୃଶ୍ୟ ହେତୁ (ମହାଦେବ ଅର୍ଦ୍ଧଚନ୍ଦ୍ର ମଣ୍ଡିତ ହୋଇଥିବାରୁ କୁଚରୂପ ନିଜ ମୂର୍ତ୍ତିଉପରେ ନଖଦ୍ୱାରା ଅର୍ଦ୍ଧଚନ୍ଦ୍ର ଦାନ କରନ୍ତି) । ୧୪ । ଘରଣି—ଘରଣୀ । ଅଧିକ—ଧନକର । ୧୬ । ଏ ପଦରେ ଗଙ୍ଗାଙ୍କ ସହିତ ହରଗୌରୀଙ୍କୁ ସ୍ତୁତି କରୁଅଛନ୍ତି । ଅଷ୍ଟଏକ ନେତ୍ର—ନଅ ଆଖି । ଅବ୍ଜ—ଚନ୍ଦ୍ର । ଅର୍ଚ୍ଚି—ଅର୍ଚ୍ଚନା କରି ।



# ଦ୍ୱାତ୍ରିଂଶ ଛାନ୍ଦ

## ହିମଋତୁ—ବର୍ଣ୍ଣନ

ରାଗ—ଭୂପାଳ

ଅନାଇଁ ଅନାଉଁ ଉଦେ ହିମଋତୁ
ଅଇଲା ଉତ୍ତର ଦିଗୁଁ ପରବତରୁଁ । ୧
ଅତନୁ ପାଇଲା ରାଜପଣେ ଶାଢ଼ୀ
ଅଶୀତ ଉପଦ୍ରବରେ ସ୍ନେହବଢ଼ି । ୨
ଅନଙ୍ଗ-ପ୍ରତାପ ଅଙ୍ଗନାଙ୍କ ପ୍ରୀତି
ଅଦ୍ୱିକ୍ଷପୁ ଅଦ୍ୱିକ୍ଷପୁ ଶୋଭା ଅନ୍ତ । ୩
ଅହ ଅମ୍ବୁ ରୁହ ଅପଘନମାନ
ଅ-ତନୁ ଅତି ମାଉସେ ଅଶୋଭନ । ୪
ଅମ୍ବୁକେଳି ଅଂଶୁକ ତେଜି ଗମନ
ଅସ୍ନିଗ୍ଧ-ଭୋଜନ ଅହଶେଷେ ସ୍ନାନ
ଅସାର ଦେଖିଲେ ଏହା ଧୀମନ୍ତ
ଅ-ଚତୁରେ ଅଚତୁରେ କଲେ ପ୍ରୀତି । ୫

---

### ଦ୍ୱାତ୍ରିଂଶ ଛାନ୍ଦ

୧ । ଉଦେ—ପୃଥିବୀରେ । ଉତ୍ତରଦିଗୁଁ ପରବତରୁଁ—ହିମାଳୟରୁ ୨ । ଅତନୁ—କାମ । ଅଶୀତ ଉପଦ୍ରବ-ଗ୍ରୀଷ୍ମ ଉପଦ୍ରବ ।୩। ଅନଙ୍ଗ ପ୍ରତାପ--କାମ-ପ୍ରଭାବ । ଅଙ୍ଗନାଙ୍କ ପ୍ରୀତି—ସ୍ତ୍ରୀମାନଙ୍କ ସ୍ନେହ । (ଅଦ୍ୱିକ୍ଷପୁ) ଅ-ଦ୍ୱିକ୍ଷପୁ—ଆଦ୍ୟ ଭାଗରେ ଅକାରଯୁକ୍ତ, ଏହି ଦୁଇବସ୍ତୁର ଶୋଭା (ଅଦ୍ୱି କ୍ଷପୁ ହେଲା) ସର୍ବୋତ୍କୃଷ୍ଟ ହେଲା । ୪ । ଅହ—ଦିନ । ଅମ୍ବୁରୁହ—ପଦ୍ମ । ଅପଘନ—ପ୍ରାଣୀମାନଙ୍କର ଶରୀର । ଏହି (ଅ-ତନୁ) ଅକାରାଦି ତିନି ବସ୍ତୁ (ମାଉସେ) ଶୁଷ୍କ ହେବାରୁ (ଅଶୋଭନ) ଅସୁନ୍ଦର ହେଲା । ଦିନର ପରିମାଣ କମିଲା, କାକର ପଡ଼ି ପଦ୍ମ ନଷ୍ଟ ହେଲା ଓ ଦେହ ସ୍ନିଗ୍ଧତା ଛାଡ଼ି ଖରଖରିଆ ହେଲା । ୫ । ଅମ୍ବୁକେଳି—ଜଳକ୍ରୀଡ଼ା । ଅଂଶୁକ ତେଜି ଗମନ—ଲୁଗା (ଶୀତବସ୍ତ୍ର) ନ ନେଇ କୌଣସି ସ୍ଥାନକୁ ଯିବା । ଅସ୍ନିଗ୍ଧ ଭୋଜନ— ଚିକ୍କଣ ଦ୍ରବ୍ୟର ଅଭାବରେ ଖାଇବା । ଅହଶେଷେ ସ୍ନାନ—ସନ୍ଧ୍ୟାବେଳେ ଗାଧୋଇବା । ଏହି ଅ-ଚତୁରେ—ଅକାରାଦି ଚାରିଗୋଟି ବସ୍ତୁକୁ (ଅସାର) ନିରର୍ଥକ ବୋଲି (ଦେଖିଲେ) ମନେକଲେ । କିନ୍ତୁ ଅଚତୁରରେ—ଅଜ୍ଞ ଲୋକମାନେ ଏଥିରେ (ପ୍ରୀତି କଲେ) ସ୍ନେହ ବଳାଇଲେ ।

ଅମ୍ବୁପେଟୀ ଅନଳ ଅମୃତକର
ଅମ୍ବୁ ଅଗୁରୁ-ଚନ୍ଦନ ଉପସ୍କର
ଅନ୍ୟତ ସେବିଲେ ଷଟଷଣ୍ଡକୁଳ
ଅ-ପ ଅରେ ଅପାଅରେ ମୂର୍ଖେ ଭୋଳ । ୬
ଅବନିଦ୍ରା ଅଙ୍ଗନା-କଳତ୍ର-ସ୍ପୃଷ୍ଟ
ଅଟବୀ-ବିହାର ଅନ୍ୟ ଦେଶେ ସ୍ଥିତି
ଅଗଣା-ଶୟନ ଅନାହାର ହେବା
ଅ-ଷଡ଼େ ଅଷଡ଼େ ବଶ ନଶିବବା । ୭
ଅମ୍ବବଲ୍ଲୀ ଅଙ୍ଗନା ଅନ୍ନପାଶନ
ଅନଳ ଅର୍କ ଅମ୍ବର-ତିରୋଧାନ
ଅଗୁରୁ ଧୂପ ଏ ଅବ ଉପସ୍କରେ
ଅ-ସାତ ଅଶାନ୍ତ ହେଲେ ମୂର୍ଖ ନରେ । ୮
ଅବଳା-କାମୁକ ଜର୍ଣ୍ଣ କୁତ ଦୋଳ
ଅଥ କୋକିଳ-ବଚନ ବାମସ୍ଥଳ
ଅପରେ କଞ୍ଜାକ୍ଷ-ଖେଳ କୁନ୍ଦହାସ
ଅଷ୍ଟ-କରେ ବ୍ରହ୍ମା ହେଲେ କେ ପୁରୁଷ । ୯

---

୬ । ଅମ୍ବୁପେଟୀ—ସମୁଦ୍ର । ଅନଳ—ପବନ । ଅମୃତକର—ଚନ୍ଦ୍ର । ଅମ୍ବୁ—ଜଳ । ଅଗୁରୁ ଚନ୍ଦନ ଉପସ୍କର—ଅଗୁରୁମିଶା ଚନ୍ଦନ ପ୍ରଭୃତି ଉପକରଣ । ଏହି (ଅ-ପାଅରେ) ଅକାରାଦ୍ୟ ପାଞ୍ଚଗୋଟି ବସ୍ତୁରେ (ଷଟଷଣ୍ଡକୁଳ) ଚତୁର ଲୋକମାନେ (ଅନ୍ୟତ) ମନ ଦେଲେ । (ଅପାଅରେ) ଖାଅ ନ ପାରି, ଉଗ୍ଗାରି ନ ପାରି ମୂର୍ଖମାନେ ଏଥିରେ ଭୋଳ ହେଲେ । ୭ । ଅବନିଦ୍ରା—ଭୂଇଁରେ ଶୋଇବା । ଅଙ୍ଗନା କଳତ୍ରସ୍ପୃଷ୍ଟ—ନାରୀ ସହିତ ପ୍ରଯୁକ୍ତ । ଅଟବୀବିହାର—ବନଭ୍ରମଣ । ଅନ୍ୟଦେଶ ସ୍ଥିତି—ବିଦେଶରେ ରହିବା । ଅଗଣାଶୟନ—ଦୁଆରେ (ଖୋଲା ଯାଗାରେ) ଶୋଇବା । ଅନାହାର ହେବା—ନ ଖାଇ ଶୋଇବା । ଏହି ଅକାରାଦ୍ୟ (ଷଡ଼) ଛଅ ବସ୍ତୁରେ । (ଅଷଡ଼େ) ଅଜ୍ଞ ଲୋକମାନେ (ନଶିବବା) ସହଦନ (ବଶ ହେଲେ) କ୍ଲିପ୍ତ ରହିଲେ । ଅମ୍ବବଲ୍ଲୀ—ପାନ । ଅଙ୍ଗନା—ସ୍ତ୍ରୀ । ଅନ୍ନପାଶନ—ଗରମ ଭୋଜନ । ଅନଳ—ଅଗ୍ନି । ଅର୍କ-ସୂର୍ଯ୍ୟ । ଅମ୍ବର-ତିରୋଧାନ—ଲୁଗା ଘୋଡ଼ି ହେବା । ଅଗୁରୁ ଧୂପ । ଏହି ଅକାରାଦ୍ୟ ସାତ (ଉପସ୍କର) ଉପକରଣରେ ମୂର୍ଖଲୋକମାନେ (ଅଶାନ୍ତ ହେଲେ) ଅସୁଖ ବୋଧକଲେ ।

ଅଜନା ଅଙ୍ଗ ଅଧର ଅଙ୍କରେଖା
ଅପାଙ୍ଗ ଅମୀୟ ବାଣୀ ଅଳ୍ପ ହାସ
ଅଦ୍ରି-କୂଟ ଅଚଳୁ ମନ୍ଦର ଭାଗ
ଅ-ନବ ଅନବରତେ କା ବେଶର ।୧୦
ଅସିତକଣ୍ଠ ଅପର୍ଣ୍ଣା ପ୍ରେମରଙ୍ଗେ
ଅନେକ କୁତୁକ କଲେ କ୍ରମକାଳେ ।୧୧
ଅଦ୍ରିସ୍ତନେ ପଡ଼ିଥାନ୍ତି ଶୀତ-ଉପେ
ଅଧର-ଅରୁଣ ଦେଖା ନିତ୍ୟ ହୋଏ ।୧୨
ଅଭୀଷ୍ଟେ କଲେ ସୁସ୍ନେହ ସମ୍ମାର୍ଜ୍ଜନା
ଅନ୍ୟ ନ ଓଢ଼ନ୍ତି ଅଙ୍ଗ-ତୂଳୀ ବସା ।୧୩

ତ୍ରୁଟ୍ୟାକ୍ଷର {
ଅଭ୍ରତନୁ ଜାତ-ଭବ ଶ୍ରୀନିବାସ
ଅକ୍ଷୟେ ଭୂତବିଳାସୀ ବୃଷବଶ
ଅଘନାଶୀ ସୁରଦ୍ୱେଷକ୍ଷଣପର
ଅନନ୍ତ ଆଦ୍ୟ ଉଦରେ ଅଂଗୋଚର ।୧୪

---

୯ । ଅବଳାର କାନ୍ତର ହେତୁ, ନର୍ତ୍ତି—ନାକ, କୁଚ—ସ୍ତନ, କୋଳ, କୋକିଳସଦୃଶ ବଚନ; କାମସ୍ଥଳ, ନଞ୍ଜ—ଚନ୍ଦ୍ରତୁଲ୍ୟ (ଅକ୍ଷି ର) ନେତ୍ର (ଖେଳ) ଚଳନ, କୁନ୍ଦତୁଲ୍ୟ ହାସ୍ୟ—ଏହି ଅଷ୍ଟକାଙ୍କେ—ଅକାରାଦ୍ୟ ଆଠଗୋଟି ବସ୍ତୁରେ ଯୁକ୍ତ ହୋଇ କୌଣସି ପୁରୁଷ (ବ୍ରହ୍ମା ହେଲେ) ବ୍ରହ୍ମା ସଦୃଶ ହେଲେ, ବ୍ରହ୍ମା ଅଷ୍ଟ କ ହାର—ଆଠଗୋଟି ନେତ୍ରଦ୍ୱାରା ଯୁକ୍ତ ହୋଇଥାନ୍ତି ।୧୦। (ଅ ନବରେ) ଅକାରାଦ୍ୟ ନଅଗୋଟି ବସ୍ତୁରେ (ଅନବରତେ) ସର୍ବଦା କାହାର (ବେଶର) କାରବାର ହେଲା । ୧୧ । ଅସିତ କଣ୍ଠ—ହର । ଅପର୍ଣ୍ଣା—ପାର୍ବତୀ । ୧୨ । ଅଦ୍ରିସ୍ତନେ —ପର୍ବତ ସଦୃଶ କୁଚରେ, ଅଧରରୂପଅରୁଣ—ଓଷ୍ଠରୂପ ସୂର୍ଯ୍ୟ, ଓଷ୍ଠବର୍ଣ୍ଣ ଓ ପ୍ରାତଃକାଳ ସୂର୍ଯ୍ୟବର୍ଣ୍ଣ ସମାନ ହୋଇଥିବାରୁ ଏପରି ରୂପଣ କରାଗଲା । ୧୩ । ଅଭୀଷ୍ଟେ—ଇଚ୍ଛା ସୁଖେ । ସସ୍ନେହ ସମ୍ମାର୍ଜ୍ଜନା—ଉତ୍ତମ ସ୍ନେହରୂପ ତୈଳର ଲେପନ । (ସ୍ନେହ ଶବ୍ଦ ତୈଳ ଓ ପ୍ରୀତି ଏହି ଦୁଇ ଅର୍ଥ ପ୍ରକାଶ କରୁଛି । ) ଅଙ୍ଗତୂଳି—ତୂଳିପରି କୋମଳ ଶଯ୍ୟାରୂପ ଶେଯ । (ନ ଓଢ଼ନ୍ତି)--ଘୋଡ଼ୁଅନ୍ତୁ ନାହିଁ ।୧୪। ବସ୍ତୁ ପ୍ରକ୍ଷ--ଅଭ୍ରତନୁ--ଯାହାଙ୍କର ଶରୀରକାନ୍ତି ମେଘ ପରି । ଜାତଭବ—ଯେ (ଭବ) ଜନ୍ମକୁ ଜିଣିଛନ୍ତି (ଅଜ) । ଶ୍ରୀନିବାସ—ଲକ୍ଷ୍ମୀଙ୍କର ନିବାସସ୍ଥାନ (ବିଷ୍ଣୁଙ୍କର ବକ୍ଷରେ ଲକ୍ଷ୍ମୀଙ୍କର ବାସ ପୁରାଣପ୍ରସିଦ୍ଧ ।) ଅକ୍ଷୟେ— ପୂର୍ଣ୍ଣରୂପେ । ଭୂତବିଳାସୀ-ଯେ ପଞ୍ଚଭୂତ ନିର୍ମିତ ଯାବତୀୟ ବସ୍ତୁରେ ବିଦ୍ୟମାନ ।

(ଅର୍ଥ ହୋଇବ ଏ ପଦ ଅଚ୍ୟୁତଙ୍କୁ
ଅବ୍ଧି ଖାସୁ ବର୍ଣ୍ଣ ହେଲେ ଈଶାନଙ୍କୁ)

ବନ୍ଧକର {ଅନନ୍ତ ପରମାନନ୍ଦ ସୁବ୍ରଜିତ
ଅସୁର ଦାନବବାର ଦୁଃଖ ଶାନ୍ତ

ଅବମାନ ସୂକ ବଳଭଦ୍ର ମତ
ଅବ୍ଧନିଶି ଚନ୍ଦ୍ରେ * ସିତ-ଗିରିପତ । ୧୫

---

ବୃଷବଶ—ଧର୍ମର ଅଧୀନ (ଧର୍ମ କଲେ ଯାହାଙ୍କୁ ଅକ୍ଲେଶରେ ପାଇ ପାରନ୍ତି ।) ଅଘନାଶୀ—ଅଘାସୁର ପାପର ବିନାଶକ । ସୁରବଜେକ୍ଷଣାଚର —(ସୁରବଜ) ଇନ୍ଦ୍ରଙ୍କୁ (ଈକ୍ଷଣ) ଅବଲୋକନ କରିବା ବିଷୟରେ ତତ୍ପର ।

ନୈଷଧ—"କାନୁଜେ ମମ ଜ୍ଞାନେ ଦନୁଜକଶ୍ଚୈ ଜାଗ୍ରତ ସ୍ୱଶରଣେ ଭଣତଛି ।"

ତଭ୍ରୁକାଙ୍କମୁପଧାୟୁ ଜୟାଙ୍କଂ କର୍ମଣା ସ୍ୱପିମି ଗାଡବଶଙ୍କଃ ।

ଅନନ୍ତ—ଅସୀମ । (ଆଦ୍ୟନ୍ତ) ବ୍ରହ୍ମାଙ୍କୁ, ମଧ୍ୟ (ଅଗୋଚର) ଅଜଣା । ଶିବପକ୍ଷେ —ଅତନୁଜିତ--କନ୍ଦର୍ପଜୟୀ । ଭବ-'ଭବ' ବୋଲି ଖ୍ୟାତ । ଶ୍ରୀନିବାସ-ଶ୍ରୀକଣ୍ଠ ଧାମଧାରୀ । ଅପ୍ୟେ—ହେ । ଭୂତବଳସୀ—ଭୂତଗଣଙ୍କ ସଙ୍ଗେ କ୍ରୀଡ଼ାକାରୀ । ବୃଷବଶ—ବୃଷଭଠାରେ ସ୍ନେହପରାୟଣ । ଅନାଶୀ—ଯାହାଙ୍କର ବିନାଶ ନାହିଁ । ସୂର—ସୂର୍ଯ୍ୟ । ଘଜ--ଚନ୍ଦ୍ର, ଏ ଦୁହେଁ ଯାହାଙ୍କର (ଈକ୍ଷଣ) ନେତ୍ର । ଯେ ପର--ଉତ୍କୃଷ୍ଟତମ ।

୧୫ । ଅନନ୍ତ ପରମାନନ୍ଦ କ ସୁବ୍ରଜିତ
ଅସୁର ଦାନବ ବାରଣ ଦୁଃଖଶାନ୍ତ ।

ଅବମାନାସୂକ--ରଜା । ମତ--ମନ । ଅବ୍ଧନିଶି--ଦିନରାତ୍ର । ସିତଗିରିପତ-- କୈଳାସର ପତି ।

* 'ଶିତ' ପାଠାନ୍ତର

# ତ୍ରୟସ୍ତ୍ରିଂଶ ଛାନ୍ଦ

## ଶିଶିର-ବର୍ଣ୍ଣନ

ରାଗ—ରସକଦମ୍ବ

ଅଛନ୍ତି ଶିଶିର ଋତୁ ମାର୍ଗଶିର ପୌଷ ଦେନି ମାସ ଶେଷ
ଅହ୍ନରେ ଅନ୍ଧ ର ପୂର୍ଣ୍ଣ ହେଲ ଘୋର ତୁଷାର ବରଷା ବଶେ ଯେ, ଅତି
ଅମ୍ବୁଜକୁ ପଡ଼ିଲ୍ଲ ବପତ୍ତି ସେ ,,
ଅମାବସେ ଯଥା ନିଶାପତି ସେ ,,
ଅମ୍ବୁ-ଯୋଗେ ଯେହ୍ନେ ଲୁଣ ଗତି ସେ ଅତି । ୧

ମଦ୍ଧ୍ୟଯମକ

ଅତନୁ ଶୀତରେ ସଂଯୋଗୀଙ୍କ ପୁରେ ଉଜ୍ଜ୍ୱଳ ଭାବେ ହସନ୍ତୀ
ଅତନୁ ଶୀତରେ ସଂଯୋଗୀଙ୍କ ପୁରେ ଉଜ୍ଜ୍ୱଳ ଭାବେ ହସନ୍ତ ସେ ଅନ୍ନ
ଅତି ସୁଲଭ ସ୍ତମ୍ଭ ଭବନ ସେ ଅନ୍ନ
ଅର୍ଦ୍ଧ ଶୀର୍ଣ୍ଣରୂପ ଚନ୍ଦ୍ରବର୍ଣ୍ଣ ସେ ,,
ଅନାଇଲ ମାତେ ହରେ ମନ ସେ ଅନ୍ନ । ୨

---

## ତ୍ରୟସ୍ତ୍ରିଂଶ ଛାନ୍ଦ

୧ । ଅହ୍ନରେ—ଦିନରେ । ତୁଷାର ବରଷାବଶେ—କାକର ବର୍ଷଣ ହେତୁ । ଅମ୍ବୁଜକୁ—ପଦ୍ମକୁ । ବପତ୍ତି-ବିପଦ (କାକର ବର୍ଷିଲେ ପଦ୍ମ ନଷ୍ଟ ହୋଇଯାଏ) । ଅମାବସେ—ଅମାବାସ୍ୟା ରାତିରେ । ନିଶାପତି—ଚନ୍ଦ୍ର । ଅମ୍ବୁଯୋଗେ—ପାଣି ମିଶିଲେ । ୨ । ଅତନୁ ଶୀତରେ—ଗାଢ଼ ଶୀତକାଳରେ । ସଂଯୋଗୀ—ଉଦ୍ୟମ ଶୀଳ ଲୋକଙ୍କ (ପୁରେ) ଗୃହରେ । ହସନ୍ତୀ—ନିଆଁ ଉହ୍ନେଇ । ଉଜ୍ଜ୍ୱଳଭାବେ—ଦାଉ ଦାଉ କରି (ଜଳୁଛି) । ଅତନୁ ଶୀତରେ—କାମଜନିତ କମ୍ପହେତୁ । ସଂଯୋଗୀଙ୍କ ପୁରେ—ନାୟିକା ନିକଟରେ ଥିବା ପୁରୁଷମାନଙ୍କ ନିକଟରେ । (ନାୟିକାମାନେ) ଉଜ୍ଜ୍ୱଳଭାବେ—ଶୃଙ୍ଗାର ରସରୁ ଜାତ ମାନସ ବିକାରରେ । ହସନ୍ତ—ହାସ କରୁଅଛନ୍ତି । ଅନ୍ନ—ଖାଦ୍ୟଦ୍ରବ୍ୟ । ସୁଲଭ—ଯାହା ସହଜରେ ମିଳେ । ସ୍ତମ୍ଭଭବନ—ସମସ୍ତଙ୍କ ଘରେ । ଚନ୍ଦ୍ରବର୍ଣ୍ଣ—ଚନ୍ଦ୍ରଙ୍କ କାନ୍ତି । ଅର୍ଦ୍ଧଶୀର୍ଣ୍ଣରୂପ—ଅଧାଅଧି ମଳିନ ।

ଅଗୁରୁ ଧୂପେ ଧୂପିତ କରି ବାସ କେଉଁ ରସିକ ପୁରୁଷ
ଅନ୍ନାଳାପ୍ୟନମାନ ମୁଦ୍ରି ମନ୍ଦିରେ ମଦିରନୟନାବଶ ସେ ଅଙ୍ଗେ
ଅଙ୍ଗୀ କଲା ଅଙ୍ଗନାକୁ ରଙ୍ଗେ ସେ ,,
ଅନୁଲକ୍ଷି ହେଲା ଚନ୍ଦ୍ର ସଙ୍ଗେ ସେ ,,
ଅନଙ୍ଗକୁ ଜୟ କଲା ରଙ୍ଗେ ସେ ଅଙ୍ଗେ । ୩

ଅଗାରେ ଅଳପ ରନ୍ଧ୍ର ଥିଲେ ଗଳି ପଶଇ ଶିଶିର ଚୋର
ଅଙ୍ଗରୁ ନିଦ୍ରା-ମୁଦ୍ରା ହରେ ତା ଡରେ ନଟେ ହୋଇ ଥରଥର ତା-ଅଡ଼େ
ଅଙ୍କ ଭିତରେ କେ ବେକ ଭିଡ଼େ, ତା—ଅଡ଼େ
ଅଜୀବନ ହେଲା ପରି ପଡ଼େ, ତା— ,,
ଅମ୍ବୁଜାକ୍ଷୀ ନ ଥିବାରୁ କୋଡ଼େ, ତା—ଅଡ଼େ । ୪

ଅପାର ଦୂରେ ଥାଇଁ କେଉଁ ବିଦେଶୀ କପାଳେ ମାରଇ କର
ଅଧର-ଚଳଦଳ-ଦଳ; କରକା ପରାଏ ଅଙ୍ଗ କାକର, ତା— ଅକ୍ଷି
ଅଶ୍ରୁ-ବରଷା ହେବ କି ଲକ୍ଷି ତା— ,,
ଅନଙ୍ଗର କାଣ୍ଡ ନୋହେ ଲେଖି ତା— ,,
ଅଙ୍ଗଯାକେ ଯାଗା ନାହିଁ ରଖି ତା— ଅକ୍ଷି । ୫

ଅଇଲା କେଉଁ ପରବାସୀ ବାସରେ ସୁବାସି-ବଦନ ଚୁମ୍ବି
ଅଙ୍ଗୁଳି ନାଶରେ ପକାଇ ହସରେ ବୋଲେ କାମ ଗଲା କାହିଁ, ଯେ ଅଦ୍ୟ
ଅତନୁର ଛଡ଼ାଇବ ମଦ୍ୟ ଯେ ,,
ଅସ୍ତ୍ରଶସ୍ତ୍ରରେ ହେବ ନିର୍ବେଦ, ଯେ ,,
ଅଗ୍ରେ ବାଜିବଟି ବୀରବାଦ୍ୟ, ଯେ ଅଦ୍ୟ । ୬

---

୩ । ଧୂପିତ କରି—ସୁବାସିତ କରି । ବାସ—ଗୃହ । ଅନ୍ନାଳାପ୍ୟନ—ଝରକା । ମୁଦ୍ରି—ବନ୍ଦକରି । ମଦିରନୟନାବଶ—ସ୍ତ୍ରୀଠାରେ ଆସକ୍ତ । ଅଙ୍ଗୀକଲା—ଗ୍ରହଣ କଲା । ଅନୁଲକ୍ଷିହେଲା—ସମାନ ବୋଲି ମନେକଲା । ରଙ୍ଗେ—ଅନାୟାସରେ ।
୪ । ଅଗାରେ—ଗୃହରେ । ରନ୍ଧ୍ର—ଛିଦ୍ର । ଶିଶିର ରୂପ ଚୋର । ନିଦ୍ରାରୂପ (ମୁଦ୍ରା) ଟଙ୍କା । ଅଜୀବନ—ମୃତ । ଅମ୍ବୁଜାକ୍ଷୀ—ପଦ୍ମନୟନା । ୫ । ଅପାର ଦୂରେ—ବହୁଦୂରେ । ଚଳଦଳଦଳ—ଅଶ୍ୱତ୍ଥ ପତ୍ର । କରକା—କୁଆପଥର । ଅକ୍ଷି—ଆଖି । ଅଶ୍ରୁବରଷା—ବୋହୁଥିବା ଲୁହ । ୬ । ବାସରେ—ଗୃହରେ । ସୁବାସୀ—ସୁବାସିନୀ ସ୍ତ୍ରୀ । ବଦନ—ମୁଖ । ମଦ୍ୟ—ମଦ, ଗର୍ବ । ନିର୍ବେଦ—ହତବୁଦ୍ଧି ।

ଅଙ୍ଗନା କେ ଆଖି ଡେରିଥିଲା ରଖି କାନ୍ତ ଆଗମନ ଲୁବ୍ଧି
ଅର୍କ ଅସ୍ତାଚଳେ ଚଳନ୍ତେ ନିଷ୍ଠଳେ କର ପାଦ ଗଲା ରହି, ତା—ଅକ୍ଷେ
ଅଶ୍ରୁ ପୂର୍ଣ୍ଣ ଶିବ-ନାମ ମୁଖେ, ତା ,,
ଅଙ୍ଗେ କାମ-କାଣ୍ଡ ଲକ୍ଷେ ଲକ୍ଷେ; ତା— ,,
ଅବ୍ଧି-ଫଳ ଫୁଟିପଡ଼େ ବକ୍ଷେ, ତା ଅକ୍ଷେ । ୭

ଅପୂର୍ବ ଚତୁରୀ ଅଟେ କେ ଚାତୁରୀ-ଗିର ପଥିକକୁ କହେ
ଅଗାରେ ନ ରହି ବାହାରେ କାହିଁ ମହିଳା ନାହିଁ କି ଗୃହେ, ହେ ଅବା
ଅଙ୍ଗେ ଲାଗି ନାହିଁ ମନୋ ଭବା ହେ ,,
ଅନୁମାନ ତ ଅମୂଲ୍ୟ ଯୁବା ହେ ,,
ଅନୁରୂପେ ନୋହେ ପ୍ରିୟା କିବା ହେ ଅବା । ୮

ଅମ୍ବୁଜାକ୍ଷୀ-ଗିରେ ଯୁବା କହେ ଆରେ ମନ ମୋହିନୀ ଜୀବନ
ଅମ୍ବୁଦ-ଜୀବନ ବଞ୍ଚିନେ କି ଆନ ଜଳ କରେ ସ୍ତୋକ ପାନ ରେ ଅଳି

---

୭। ଅଙ୍ଗନା—ସ୍ତ୍ରୀ। ଆଖିକୁ ଡେରି ରହିଥିଲା—ଲୁବ୍ଧି ବସିଥିଲା। ଅର୍କ—ସୂର୍ଯ୍ୟ ଅସ୍ତାଚଳେ—ଅସ୍ତପର୍ବତକୁ। ନିଷ୍ଠଳେ···ରହି—ହାତଗୋଡ଼ ଯେ ଯେଉଁଠି ରହିଗଲା, ଚଳିଲା ନାହିଁ। ଅକ୍ଷେ-ଆଖିରେ। ଶିବ-ମହାଦେବ। ଶିବ କନ୍ଦର୍ପକୁ ଦାହ କରିଥିଲେ; ତେଣୁ ତାଙ୍କ ନାମ ଉଚ୍ଚାରଣ କଲେ କେଜାଣି ବା କାମ ଭୟରେ ଛାଡ଼ିଯିବ, ଏହି ଆଶାରେ ଶିବ ନାମ ଉଚ୍ଚାରଣ କରୁଥିଲା। କାମକାଣ୍ଡ—କାମବାଣ। ଅବ୍ଧିଫଳ—ମୁକ୍ତା। ବକ୍ଷେ—ଛାତିରେ। ବିରହତାପରେ ହାର ମୁକ୍ତାସବୁ ପୋଡ଼ି ହୋଇ ଫୁଟି ପଡ଼ୁଥିଲା, (ଏହା କବି ପ୍ରୌଢ଼ୋକ୍ତି ସିଦ୍ଧ)।
୮। କୌଣସି ପଥିକକୁ କେହି ଅପୂର୍ବ ଚତୁରୀ—ଅତି ଚତୁରୀ ସ୍ତ୍ରୀ। ଚାତୁରୀଗିର—ଭଙ୍ଗୀ କଥା କହୁଛି। ଅଗାରେ-ଘରେ (ଏ ଶୀତ କାଳରେ) ନ ରହି କୁଆଡ଼େ ଯାଉଛ? (ମହିଳା) ସ୍ତ୍ରୀ ଘରେ ନାହିଁ କି? ଅଥବା ତୁମ୍ଭ ମନରେ (ମନୋଭବ) କାମ, ଲାଗି ନାହିଁ କି, ଜାତ ହୋଇ ନାହିଁ କି? ଅନୁମାନ କରେ; ତୁମ୍ଭେ ତ ଅତି ସୁନ୍ଦର ଯୁବକ। (ଅମୂଲ୍ୟ ପଦଟି ଏଠାରେ ହୀନ ଅର୍ଥକୁ ବିପରୀତ ଲକ୍ଷଣାରେ ବୁଝାଉଅଛି)! ତୁମ୍ଭ ପ୍ରିୟା (ଅନୁରୂପ) ମନ ମାନିବା ମାଫି ନୁହେଁ କି?
୯। ଅମ୍ବୁଜାକ୍ଷୀ ଗିରେ—ପଦ୍ମନେତ୍ରା ସ୍ତ୍ରୀର ବଚନ ଶୁଣି। ଯୁବା କହିଲା, ହେ ମନୋମୋହିନୀ! (ଜୀବନ) ପ୍ରାଣ। ଅମ୍ବୁଦଜୀବନ—ମେଘପାଣି। ବଞ୍ଚିନେ—ବ୍ୟଞ୍ଚିତ। ସ୍ତୋକ—ଚାତକ। ଆନ ଜଳ—ନଦୀ ପୁଷ୍କରିଣୀ ପ୍ରଭୃତିର ଜଳ ପାନ କରେ କି? (ସର୍ବଂସହାପତିତମମ୍ବୁ ନ ଚାତକାନାଂ) ଅଳି ଭ୍ରମର। ଅରବିନ୍ଦେ—

ଅରବିନ୍ଦେ ପିନା କରେ କେଳି ରେ ଅଳି
ଅନ୍ୟ ସୁମନେ କି ମନ ମିଳି ରେ ,,
ଅକୁଚଂକୁ ଯାଏ ସିନା ଖେଳି ରେ ଅଳି ! ୯

ଅଧରୁ ଅମୃତ ପିଆଇ ରେ ମିତ ଖଣ୍ଡି ଫୁଲ-କାଣ୍ଡ ଜ୍ୱର
ଅପାଙ୍ଗ-ଭଙ୍ଗୀରେ କୋମଳ-ଅଙ୍ଗି ରେ କଲୁଣି ତ ଜର ଜର ରେ ଅଳ୍ପ
ଅଙ୍ଗୀକାର ସ୍ନେହ-ଗିରକଳ୍ପ ରେ ,,
ଅଙ୍ଗ ଛୋଡ଼ର କରଇଁ ତଳ୍ପ ରେ ,,
ଅଛୁ ପୁଣ୍ୟ କରି କଳ୍ପ କଳ୍ପ ରେ ଅଳ୍ପ । ୧୦

ଅଜନ-ସ୍ଥାନରେ ମିଳି କେଣେ ଜନେ ସଫଳ କଲେ କାମନା
ଅସ୍ଥାନରେ କେଉଁ ପାନ୍ଥକୁ ଅନାଇଁ ବସେ ରସିକା ସୁମନା ହେ ଅହେ
ଅନ୍ଧକାର ଘୋଟେ ନିଶି ପ୍ରାୟେ ହେ ,,
ଅଛି କାନ୍ତ କାହିଁ ଜାଣି ନୋହେ ହେ ,,
ଅଛି ଏ କାଳେ ଏକା ମୁଁ ଗୃହେ ହେ ଅହେ । ୧୧

ଅପର୍ଣ୍ଣା-ରତନ ଅଙ୍ଗ ସୁଯତନ ପ୍ରଫୁଲ୍ଲ ଶିରୀଷଫୁଲ
ଅନ୍ଧକାରି-ଛବି ଘନବୃଷ୍ଟି ଘରି ପ୍ରକଟ ନେତ୍ରୁଁ ଅନଳ ସେ• ଅଥ

---

ପଦ୍ମରେ, ସିନା, (କେଳି) କ୍ରୀଡ଼ା (ମଧୁପାନାଦିରୂପ) କରେ, ଅନ୍ୟ (ସୁମନରେ) ଅନ୍ୟ ପୁଷ୍ପରେ ତାର ମନ ମିଳେ କି ? (ଅକୁଚଂକୁ) ଅଶରଣ କେଳକୁ ସିନା ଠିକଏ ଖେଳଯାଏ ।୧୦। ଅଧରୁ—ଓଷ୍ଠରୁ । ଖଣ୍ଡି—ନାଶକରି । ଫୁଲକାଣ୍ଡଜ୍ୱର —କାମ ସନ୍ତାପ । ଅପାଙ୍ଗ ଭଙ୍ଗୀରେ—କଟାକ୍ଷ ଛଟାରେ । ଜରଜର— ଅସ୍ତବ୍ୟସ୍ତ । ଅଳ୍ପ ଅଙ୍ଗୀକାର— ଅଳ୍ପକେ ରାଜି ହେବା । ସ୍ନେହଗିର ପ୍ରାୟ— ସେ ହ ବଚନ ସଙ୍ଗେ ସମାନ । (ତୁ ଯାହା କଥାରେ ସ୍ନେହ ପ୍ରକାଶ କରୁଛୁ ତାହା ଛୋଡ଼ର ସ୍ୱୀକାରକୁ ଜଣାଇଦେଉଛୁ) । ତଳ୍ପ - ଶଯ୍ୟା । କଳ୍ପ କଳ୍ପ-ବହୁ ଯୁଗ । ୧୧ । ଅଜନ-ସ୍ଥାନରେ—ନିର୍ଜନ ଯାଗାରେ । କାମନା—ଅଭିଳାଷ । ସଫଳ କଲେ—ପୂର୍ଣ୍ଣ କଲେ । ଅସ୍ଥାନରେ—କାଠରେ । ପାନ୍ଥ—ବାଟୋଇ, ବିଦେଶୀ । ସୁମନା—ବିଦୁଷୀ ସ୍ତ୍ରୀ । ଅହେ— ଦିବସରେ । ଏ ସ୍ୱୟଂଦୂତି ନାୟିକା । ୧୨ । ଅପର୍ଣ୍ଣା—ପାର୍ବତୀଙ୍କର । ରତନ ଅଙ୍ଗ—ଉତ୍କୃଷ୍ଟ ଦେହ । (ସୁଯତନ ପ୍ରଫୁଲ୍ଲ) ଅତି ଭଲଭାବେ ଫୁଟିଥିବା ଶିରୀଷ ଫୁଲପରି କୋମଳ । ଅନ୍ଧକାରି—ମହାଦେବ (ଙ୍କର) ଛବି—କାନ୍ତି । ଘନବୃଷ୍ଟି—ବାଦଲ ବର୍ଷା ପରି । ଏହା ଘରି (ଶିବଙ୍କର ଲଲାଟସ୍ଥ) ନେତ୍ରରୁ, (ଅନଳ) ଅଗ୍ନି (ପ୍ରକଟ ହେଲେ କି ?)ପ୍ରକାଶ ପାଇଲେ କି ?

ଅଙ୍ଗହୀନ-ମୁଖ-ପଦ୍ମ ଅସ୍ତ ସେ     ଅଥ
ଅନ୍ତଃକରଣ କୃଷିକ ସୁସ୍ଥ ସେ     ,,
ଅନୁଭୂତ ଏ ଋତୁ ସମସ୍ତ ସେ     ଅଥ । ୧୨

ଅପୂର୍ବ ପଣା ନ୍ୟାସ୍ତବଳ ଗଞ୍ଜଣା ଆଦି ଖେଳ କଉତୁକ
ଅମୃତି ବୀଣା ମର୍ଦ୍ଦଳ ତାଳ ବଂଶୀ ନାଟ ବହୁରୂପ ଯାକ ସେ ଅନେ୍ହ
ଅସାଧାରଣେ ମଣନ୍ତି ଦୁହେଁ ସେ     ,,
ଅବା ବେଶ କରୁଥାନ୍ତି ସ୍ନେହେ ସେ     ,,
ଅଣୁମାତ୍ର ଭିନ୍ନ ହେବା ନୋହେ ସେ     ଅନେ୍ହ । ୧୩

ଅବଶେଷେ ପୁଣି ରତନ କର୍କଶୀ ବେଣୀ ସଜ ହୋଏ ଲୋଡ଼ା
ଅଙ୍ଘ୍ରିକ ନୂପୁର ପତ୍ରାବଳୀସାର କସ୍ତୁରୀ କାଳ ସଜଡ଼ା ସେ ଅଡ଼ା
ଅତରରେ ବାସ ଉଛୁଳାଇବା ସେ     ,,
ଅସମରେ ଲୁଧୂମ ଗୁନ୍ଥିବା ସେ     ,,
ଅଳତାକୁଁ ଗେଳ ରଖିଥିବା ସେ ଅଡ଼ା । ୧୪

ଅସ୍ତଗତେ ଭାନୁ କେଳିପୁର-ତନୁ କର୍ମମାନ ହୋଏ ତରେ
ଅନଙ୍ଗ-ନିଶାଣ ଠାଣେ ଦେଇ ଗୁଣ ଦିଏ ଫୁଲକୋଦଣ୍ଡରେ ସେ ଅଂସେ

---

ଏହି କାକର-ବୃଷ୍ଟିରେ (ଅଙ୍ଗହୀନ) କାମର ମୁଖରୂପ ପଦ୍ମ, (ଅସ୍ତ) ବିକ୍ଷିପ୍ତ ହୋଇଗଲା । ଅନ୍ତଃକରଣ ରୂପ (କୃଷିକ) କୃଷକ ସୁସ୍ଥ ହେଲା । ଏହିରୂପେ ଋତୁର ସମସ୍ତ କଥା ଶିବ ପାର୍ବତୀ ଅନୁଭବ କଲେ । ଶିଶିର ଫୁଟିବା, କାକର ପଡ଼ିବା, ଅଗ୍ନି ସେବା କରିବା, ପଦ୍ମ ନାଶ ହେବା, କୃଷକମାନେ ଶସ୍ୟ ଅମଳରେ ସୁସ୍ଥ ହେବା, ଶିଶିର ଋତୁର ସ୍ୱଭାବ । ୧୩ । ଅମୃତି—ବୀଣା ସଦୃଶ ବାଦ୍ୟ ଯନ୍ତ୍ର ବିଶେଷ । ଅନେ—ବନରେ । ଅସାଧାରଣ—ଅଲୌକିକ (ଅଣୁମାତ୍ର) ତିଳେ ହେଲେ ଅଲଗା ହୁଅନ୍ତି ନାହିଁ । (ଦୁହେଁ—ଶିବ ଓ ପାର୍ବତୀ) ।୧୪। ଅବଶେଷେ—ସନ୍ଧ୍ୟାବେଳେ । ରତ୍ନକର୍କଶୀ-ରତ୍ନରେ ନିର୍ମିତ ଅଣ୍ଟାର ଅଳଙ୍କାର (ଘାଗୁଡ଼ି) ବେଣୀ—ଜୁଡ଼ା । ଅଙ୍ଘ୍ରି—ପାଦ । ପତ୍ରାବଳୀ···ସଜଡ଼ା—···ମକରୀ ଇତ୍ୟାଦି ରଚନା କରିବା ପାଇଁ କସ୍ତୁରୀର କାଳି ସଜାଡ଼ିବା । ବାସ—ଘର । ଉଛୁଳାଇବା ସୁବାସ—ଦ୍ରବ୍ୟ ଦ୍ୱାରା ସୁଗନ୍ଧିତ କରିବା । ୧୫ । ଅସ୍ତଗତେ ଭାନୁ—ସୂର୍ଯ୍ୟ ଅସ୍ତ ହୋଇଗଲେ । କେଳିଗୃହ ତନୁ—ଶୟନଗୃହ ଭିତର । (ଅନଙ୍ଗ) କାମ (ନିଶାଣ) ବାଦ୍ୟଯନ୍ତ୍ର ବିଶେଷ (ଢେଙ୍କୁରା) । (ଠାଣେ ଦେଇ) ଅତି ଜୋରରେ ବଜାଇ (ଫୁଲ କୋଦଣ୍ଡରେ) ଫୁଲନିର୍ମିତ ଧନୁରେ ଗୁଣ ଦିଏ (ଅଂସେ) କନ୍ଧରେ (ତୂଣୀର) ଶର ରଖିବାର ଯାଗା କଷେ—ବାନ୍ଧେ । ଅଶୋକାଦି-ଅଶୋକ ପ୍ରଭୃତି

ଅଛି ସନ୍ତାପ ତୂଣୀର କଷେ ସେ    ଅଂସେ
ଅଶୋକାଦି ଶର ଯହିଁ ବସେ ସେ    ,,
ଅଳ୍ପ ଟଙ୍କାରି ଧନୁ ଆକର୍ଷେ ହେ    ଅଂସେ । ୧୫

ଅହର୍ମୁଖ ଯାଏ ଯୁଝି ରହୁଥାଏ ଆନ କେହ୍ନ ବୁଝି ସିନା
ଅଦେହ କରିବା ଆଖି ଦେଖି ସେହ୍ନ ବୋଲି ପଳାଏ ସୁମନା ସେ ଅଡ଼
ଅଲଜ୍ଜ ତା ଆଉ ଢଳ ବେଢ଼ି ସେ    ,,
ଅହ ନୋହୁଁ ପୁଣି ଯାଏ ଭିଡ଼ି ହେ    ,,
ଅବା ଧନୁ କଡ଼ା ଯାଏ ଛୁଡ଼ି ହେ    ଅଡ଼ । ୧୬

ଅଣୋକଙ୍କିଣୀ ପ୍ରମତ୍ତବାଣୀ କମ୍ବୁଶବ୍ଦ ନୂପୁର-ନାଦ
ଅନାବୃତ୍ତ ଉତ ବେଳୁଁ ବେଳ ଅତି ପ୍ରବଳ ମିଥେ ବିବାଦ ହେ ଅର୍ତ୍ତି
ଅବମାର ହୋଏ ଦ୍ରୁତଗତି ସେ    ,,
ଅନ୍ତର୍ଯ୍ୟାମୀ ଜାଣି ତା ନିବର୍ତ୍ତି ସେ    ,,
ଅଚନ୍ତ୍ୟ ଯେ କୃପାମୟ-ମୂର୍ତ୍ତି ହେ    ,, । ୧୭

ଅଜନ ସ୍ଥାନ ଏ ଯେଣୁ ବିଳାସ କଲେ କେଳି ଭୋଗପାଇଁ
ଅପୂତ କୋଟି କଳ୍ପରେ ଯେଉଁଷେହ ଅନ୍ୟଥା ହେବାର ନାହିଁ ହେ ଅର୍ଥ
ଅମୃତାଦ ଦେବାକୁ ସମର୍ଥ ହେ    ,,
ଅବଲୋକନେ କୃତାର୍ଥ କରେ ସେ    ,,
ଅଲଗାରେ ରଖଇ ଅନର୍ଥ ହେ    ଅର୍ଥ । ୧୮

---

(ଅଶୋକ, ଅରବିନ୍ଦ, ଚୂତ, ନବମାଳିକା, ନୀଳୋତ୍ପଳ) । ଟଙ୍କାରି—ପରୀକ୍ଷା ପାଇଁ ଗୁଣକୁ ଅଳ୍ପ ଟାଣି ଛାଡ଼ିଦେଇ । ୧୬ । ଅହର୍ମୁଖ ଯାଏ—ସକାଳ ଯାଏ । ଆନ କେହ୍ନ—ମହାଦେବଙ୍କ ବ୍ୟତୀତ ଅପର କେହ୍ନ । ଅଦେହ କରିବା ଆଖି — ଦେହଶୂନ୍ୟ ଅର୍ଥାତ୍ ଭସ୍ମ କରି ଦେଇଥିବା ଆଖି । 'ସେହ୍ନ ବୋଲି'—"ଏ ତ ସେହ୍ନ ପୂର୍ବାନୁଭୂତ ଆଖି" ଏହା କହି । ସୁମନା—ବୁଦ୍ଧିମାନ୍ । ଅଡ଼—ଜିଦ୍ କରି । ଅଲଜ୍ଜ—ଲଜ୍ଜାଶୂନ୍ୟ । ବେଢ଼ି—ଆକ୍ରମଣ କରି । ଅହ ନୋହୁ—ଦିନ (ସକାଳ) ନ ହେଉଣୁ । ଭିଡ଼ିଯାଏ-ଦ୍ରୁତଗତିରେ ପଳାଏ ।୧୭। ପ୍ରମତ୍ତ ବାଣୀ—ରତିକାଳୀନ ହୁଙ୍କାରବଦ ଶବ୍ଦ । କମ୍ବୁଶବ୍ଦ-କମ୍ବୁତୁଲ୍ୟ କଣ୍ଠର କୂଜନ । ନୂପୁରର —ପାଦଭୂଷଣର । ନାଦ—ଶବ୍ଦ । ଅନାବୃତ୍ତ—ଅବିରାମ । ମିଥେ—ପରସ୍ପର । ଅର୍ତ୍ତି—ପୀଡ଼ା, ଦୁଃଖ । ୧୮ । ଅଜନ— ଜନଶୂନ୍ୟ । କଳ୍ପରେ—ଯୁଗରେ । ଅମୃତାଦ—ମୋକ୍ଷ ପ୍ରଭୃତି । ଅବଲୋକନେ —ଦେଖିଲେ··· ।

ଅଟେ ସୀତାଙ୍ଗେର କେଉଁ ଦେବବର ଆସନର ନାମ କହ
ଅନ୍ଧକାରି-ଧ୍ୱଜ ନାମ କହ ଦ୍ୱିଜ ଜାତି କନିଷ୍ଠ କେ ଭାଷ ସେ ଅର୍ଥ
ଅଗ୍ର ଦ୍ୱି ବର୍ଣ୍ଣ ମଧ୍ୟରେ ନ୍ୟସ୍ତ ସେ ,,
ଅନ୍ତ ବେନି ବର୍ଣ୍ଣ ପଦ ଅନ୍ତ ସେ ,,
ଅବମାଣ ଭଞ୍ଜନମ ଶତ୍ରୁ ସେ ଅର୍ଥ । ୧୯

—o—

# ଚତୁସ୍ତ୍ରିଂଶ ଛାନ୍ଦ

## ବସନ୍ତ-ବନବିହାର
## ଓ
## ଉକ୍ତି-ପ୍ରତ୍ୟୁକ୍ତି

ଅନ୍ତ ହେଲା ଶୀତ— ଶିଶିର ବସନ୍ତ
ଋତୁ ଉପଗତ ହୋଇଲା
ଅନ୍ତକ-ଅପୁରୁ ଆଳପ ଅଳପ
ଗନ୍ଧ ଶୀତବାତ ବହିଲା
ଅଙ୍କୁର—ଭରେ ତରୁ ଶୋଭା ପାଇଲା
ଅଶୋକ ନିଆଳୀ କଞ୍ଚନ ପାଟଳୀ—
ଆମ୍ବ-କଳି-ଆଳି ଧଇଲା । ୧

---

୧୯ । କେଉଁ ସୀତାଙ୍ଗେର—ରାବଣ ଅଟେ । ଦେବବର—(ବ୍ରହ୍ମା) ଆସନର ନାମ କଣ ?—ଜଳଜ (ପଦ୍ମ) । ଅନ୍ଧକାରି (ଶିବ) ଙ୍କର ଧ୍ୱଜ—ସଙ୍କେତ କଣ ? —ବୃଷଭ । କେ (କଏ) ଦ୍ୱିଜଜାତି (ବ୍ରାହ୍ମଣାଦି) ମଧ୍ୟରେ କନିଷ୍ଠ (ସାନ)—ଶୂଦ୍ର । ପ୍ରଥମର ଦୁଇଅକ୍ଷର 'ବ' 'ଳ' ମଧ୍ୟରେ ଓ ଶେଷ ଦୁଇବର୍ଣ୍ଣ 'ଭ' 'ଦ୍ର' ଉତ୍ତର ପଦର (ଅନ୍ତରେ) ଶେଷରେ—(ବଳଭଦ୍ର) । ଅବମାଣ—ରାମ ।

—o—

## ଚତୁସ୍ତ୍ରିଂଶ ଛାନ୍ଦ

୧ । ଅନ୍ତ ହେଲା—ଶେଷ ହେଲା । ଶୀତ-ଶିଶିର—ଶୀତଗୁଣବିଶିଷ୍ଟ ଶିଶିର । ଅନ୍ତ ହେଲା—ଶେଷ ହେଲା । ବସନ୍ତ(ଉପଗତ ହେଲା)ପହଞ୍ଚିଲା । ଅନ୍ତକ ଅପୁରୁ—ଯମଙ୍କ ଦିଗରୁ ଅର୍ଥାତ୍ ଦକ୍ଷିଣରୁ । ଗନ୍ଧଶୀତବାତ—ସୁଗନ୍ଧ ଶୀତଳ ପବନ । ଅଙ୍କୁର ଭରେ—ପ୍ରଚୁର ନୂତନ ପତ୍ରଦ୍ୱାରା (ପ୍ରବାଳଃ ପଲ୍ଲବାଙ୍କୁରଃ ଇତି ହଳାୟୁଧଃ) ପଲ୍ଲବାଙ୍କୁର ପରିବର୍ତ୍ତେ କେବଳ ଅଙ୍କୁର ପଦ ଅନୁପ୍ରାସ ଅନୁରୋଧରେ ଲିଖିତ । ତରୁ—ଗଛ । କଳଆଳି—କଢ଼ସମୂହ ।

ଅବାକ କୋକିଳ          ମୁକୁଳ କବଳ
କରି କଳବାଣୀ କହିଲା
ଅଶନି କଡ଼ଡ଼          ପଡ଼ିଲା କି ମାଡ଼ି
ବା ରସ୍ମିଙ୍କି ପ୍ରତେ ହୋଇଲା
ଅଙ୍କରେ, ଧୀରିକୁ ଧରି କେ ବସିଲା
ଅଗଣାକୁ କେନ୍ତ          ବାହାରିଲା ନାହିଁ
ଦର୍ପକ ଦର୍ପ ପା ବନ୍ଧିଲା । ୨
ଅମୃତୁଁ ମଧୁର          ମଧୁ ପିଇଁ ପିଇଁ
ଅଳିକ ଅସର ନୋହିଲା
ଅନ୍ତରେ ନାନା ସୁ—          ମନାରେ ସେ ରସି
କଞ୍ଜ-କୋଳେ ନିଶି ଶୋଇଲା
ଅସିତ, କାନ୍ତି କି ଚକ୍କଣ ପାଇଲା
ଅନାଇଁ ଅନାଇଁ          ତା ଶିଥିଳ ପେଟ
ଅଳ୍ପ-ଆସକୁ ଧଇଲା । ୩

---

୨ । ଅବାକ—ମୂକ (ଶବ୍ଦ କରୁ ନ ଥିବା) । ମୁକୁଳ—ବଉଳ । କବଳ—ଭକ୍ଷଣ । କଳବାଣୀ—ଅବ୍ୟକ୍ତ ମଧୁର ଧ୍ୱନି (କୁହୁ ରବ) । ଅଶନି—ବଜ୍ର । ଅଙ୍କରେ—କୋଳରେ । ଧୀରିକୁ—ଧୀରସ୍ୱଭାବା ସ୍ତ୍ରୀକୁ । ଅଗଣାକୁ—ଦୁଆରକୁ (ବାହାରକୁ) । ଦର୍ପକ ଦର୍ପ—କାମର ଦର୍ପ । ବନ୍ଧିଲା ପା—ପଗ (?)

୩ । ଅମୃତୁଁ—ଅମୃତଠାରୁ । ମଧୁ—ଫୁଲର ରସ । ଅଳିକ—ଭଅଁରକୁ ! ଅସର—ଅବସର, ବେଳ । ଅନ୍ତରେ ବନରେ । ନାନା ସୁମନାରେ—ନାନାବିଧ ଫୁଲରେ । ରସି—ଆସକ୍ତ ହୋଇ । ନିଶି—ରାତିରେ । କଞ୍ଜକୋଳେ—ପଦ୍ମକୋଳରେ ଶୋଇଲା । ଶଠ ପୁରୁଷ ଯେପରି ନାନା (ସୁମନା) ସ୍ତ୍ରୀମାନଙ୍କ ସଙ୍ଗେ ବନଯାକ କ୍ରୀଡ଼ା କରି ରାତିକୁ ନିଜ ସ୍ତ୍ରୀ ନିକଟରେ କଟାଏ, ସେହିପରି । (ଚକ୍କଣ) ସ୍ନିଗ୍ଧ ଅସିତ କାନ୍ତି—କଳା ବର୍ଣ୍ଣକୁ ପାଇଲା (ଅତି ଚକ୍କଣ କଳାବର୍ଣ୍ଣ ଦିଶିଲା) । ଅନାଇଁ ଅନାଇଁ—ଦେଖୁଁ ଦେଖୁଁ (ଅଳ୍ପକ୍ଷଣ ମଧ୍ୟରେ) ତା'—ଭଅଁରର । (ଶିଥିଳ) ଖାଙ୍କା ପଡ଼ିଥିବା ପେଟ (ଅଳ୍ପ ଆଶକୁ ପାଇଲା) କ୍ରମେ କ୍ରମେ ମୋଟା ହେବାକୁ ଲାଗିଲା । 'ଆଶ' ଶବ୍ଦକୁ କବି ବହୁସ୍ଥଳରେ ସାଦୃଶ୍ୟ ଅର୍ଥରେ ବ୍ୟବହାର କରିଅଛନ୍ତି ।

ଅନଙ୍ଗ-ସଡ଼ଙ୍ଗ— ପରାଏ ସୁରଙ୍ଗ
ପକ୍ଷେ ବନ ଶୋଭା ବହିଲା
ଅବଧ୍ୟ ବଇରୀ ବଧ ସଧ କରି
କାମରଜା ଛନ୍ଦି ବସିଲା
ଅନାଇ, ଋଷୀ କେ ଆସନୁଁ ଖସିଲା
ଅବଳା-ଚରଣ ଛନଯେ ଧରଣ
ଶରଣ ରଖ ଗୋ ଭାଷିଲା । ୪

ଅଧରୁ ପୀୟୂଷ ପିଇ କେ ପୁରୁଷ
ପ୍ରାଣପ୍ରିୟା କୋଳେ ପଶିଲା
ଅଚ୍ଛ ତାରତର ମୁକୁର-ମୁଖରେ
ସୁଖରେ ଚୁମ୍ବ ନିବେଶିଲା
ଅଙ୍ଗରେ, ଝଳାଲ ପରି କେ ମିଶିଲା
ଅମାନ ଗୁମାନ ଗୁଡ଼ି କେଉଁ ମାନ—
ବଶ ପତିରସେ ରସିଲା । ୫

ଅମୃତକର କ— ରଣ ଚଦ୍ଧଟରେ
ଶୁଦ୍ଧମା ନିଶି ବକାଶିଲା
ଅବର୍ମା-ଅଙ୍ଗନା ଅଙ୍ଗରେ ରଙ୍ଗରେ

---

୪ । ଅନଙ୍ଗ—କାମ । ସଡ଼ଙ୍ଗ ଅସ୍ତ୍ର ବିଶେଷ । ସୁରଙ୍ଗ ପକ୍ଷେ—ଲାଲବର୍ଣ୍ଣ ପଦରେ । ଅବଧ୍ୟ—ଯାହାକୁ ମାରି ପାରି ନାହିଁ । ବଇରୀ-ଶତ୍ରୁ । ବଧ-ବିନାଶ । ସଧ କରି—ଅଭିଳାଷ କରି । ଋଷୀ—ଯୋଗୀ । ଆସନୁଁ ଖସିଲା—ପଦ୍ମ; ସ୍ୱସ୍ତିକାଦି ଯୋଗାସନକୁ ଛାଡ଼ି ଖସିଲା । ଅବଳାଚରଣ—ସ୍ତ୍ରୀ ପାଦକୁ । ୫ । ଅଧରୁଁ—ଓଷ୍ଠରୁ । ପୀୟୂଷ—ଅମୃତ । ଅଚ୍ଛ—ନିର୍ମଳ । ତାରତର—ଅତି ଉଜ୍ଜ୍ୱଳ । ମୁକୁର ମୁଖରେ—ଦର୍ପଣ ପରି ଚକ୍ ଚକ୍ ହେଉଥିବା ନାୟିକାର ମୁଖରେ । ନିବେଶିଲା—ଦାନ କଲା । ଅଙ୍ଗରେ—ଦେହରେ । ଝଳାଲପରି—ଧାତୁ ଦ୍ରବ୍ୟ ଯୋଡ଼ିହେଲା ପରି । ଅମାନ—ଅସୀମ (ଯାହାର ପରିମାଣ ନାହିଁ) । ମାନବଶ—ମାନିନୀ । ପତିରସେ—ସ୍ୱାମୀ ସହ ଅନୁରାଗରେ । ରସିଲା—ଆସକ୍ତ ହେଲା । ୬ । ଅମୃତକର—ଚନ୍ଦ୍ର । କିରଣଚଦ୍ଧଟ—କିରଣର ଉଜ୍ଜ୍ୱଳତାରେ (ଶୋଭାରେ) ଶୁଦ୍ଧମାନିଶି—ଶୁକ୍ଳପକ୍ଷ ରାତି । ବିକାଶିଲା—ଶୋଭା ପାଇଲା । ଅବର୍ମାଅଙ୍ଗନା—ପୃଥିବୀରୂପ ନାୟିକା । ରଙ୍ଗରେ—କ୍ରୀଡ଼ା ଛଳରେ । ଅଙ୍ଗରେ—ଦେହରେ ।

କର୍ପୂର-ରଜ କି ଘଷିଲା
ଅରୁଣ, ଉଦୟ ଶୋଭା ତ ନ ଶିଲା
ଅବଳ ପ୍ରଫୁଲ୍ଲ ମୁଖ ଶୁଖିଯିବା
ଦେଖି କି ରଜନୀ ହସିଲା । ୬

ଅନଙ୍ଗ ଦମ୍ପତି— ପ୍ରୀତି-ରଜତ କି
ରସା-ନିକଷରେ କଷିଲା
ଅନୁରାଗି-ପ୍ରିୟ ପ୍ରିୟା-ପ୍ରେମ-ପୟ — *
ପୟୋଧି କି ପୂର ପଶିଲା
ଅବା ସେ, ଚକୋର ମୁଖ ଉଲ୍ଲସିଲା
ଅର୍ଜୁନାଭିସାରୀ— ବାଳ ମାଳାର କି
ପୂରୁବ ପୁଣ୍ୟ ପ୍ରକାଶିଲା । ୭

ଅନାୟତ୍ତ ବଶେ ପ୍ରିୟ କେ ପ୍ରବାସେ
ପଡ଼ ପ୍ରିୟା ପ୍ରୀତି ଭାଳିଲା

---

କର୍ପୂରରଜ କର୍ପୂର ଚୂନ ଘଷିଲା କି ? (ଉତ୍ପ୍ରେକ୍ଷା) । ଅରୁଣ ଉଦୟ ଶୋଭା ତ ନାଶିଲା ଉଦୟ କାଳର (ଅରୁଣ) ରକ୍ତବର୍ଣ୍ଣ ଶୋଭାକୁ ନାଶିଲା, ରକ୍ତିମାକୁ ଶୁଭ୍ର ଧବଳ କଲା । (ଅବଳର) ଚନ୍ଦ୍ରର ପ୍ରଫୁଲ୍ଲ ମୁଖକୁ ଶୁଖିଯିବାର ଦେଖି (ରଜନୀ) ରାତ୍ରି ହସିଲା କି ? (ଉତ୍ପ୍ରେକ୍ଷା) । ୬ । ଅନଙ୍ଗ— କାମ, (ଦମ୍ପତି) ସ୍ତ୍ରୀ ପୁରୁଷର, (ପ୍ରୀତି) ସ୍ନେହରୂପ—(ରଜତକୁ) ରୂପାକୁ, (ରସା-ନିକଷରେ) ପୃଥିବୀ ରୂପକ କଷଟି ପଥରରେ କଷିଲା । (ରଜତକୁ କଷିବା ଅସମ୍ଭବ ହେଲେ ମିଥ୍ୟା ଉତ୍ପ୍ରେକ୍ଷା ବିଷୟ ହୋଇଥିବାରୁ ସମ୍ଭାବନା ମାତ୍ର) । ଅନୁରାଗୀ ପ୍ରିୟ ପ୍ରିୟା—ପ୍ରଣୟୀ ନାୟକ ନାୟିକା । ପ୍ରେମ-ପୟଃପୟୋଧି—ପ୍ରୀତିରୂପ ଜଳର ସମୁଦ୍ର । ପୂର ପଶିଲା—ଉଚ୍ଛୁଳି ପଡ଼ିଲା କି ? ଚକୋର ପକ୍ଷୀର ମୁଖ (ଉଲ୍ଲସିଲା) ଉଦ୍‌ଗତ ହେଲା କି ? (ଅର୍ଜୁନାଭିସାରୀ) ଶୁକ୍ଳ ଅଭିସାରିକା (ବାଳାମାଳା) ସ୍ତ୍ରୀମାନଙ୍କର (ପୂରୁବ ପୁଣ୍ୟ) ପୂର୍ବଜନ୍ମାର୍ଜିତ ସୁକୃତ ଅବା ପ୍ରକାଶ ପାଇଲା କି ? ୮ । (ଅନାୟତ୍ତବଶେ) ଅଣଆୟତ୍ତ ହୋଇ, କେହି (ପ୍ରିୟ) ନାୟକ, (ପ୍ରବାସେ) ବିଦେଶରେ, ପଡ଼ (ପ୍ରିୟାପ୍ରୀତି) ନାୟିକାର ପ୍ରୀତିକୁ, ଭାଳିଲା—ଚିନ୍ତାକଲା ।

* ଜୟ

ଅପାର ସ୍ୱେଦରେ ଲେଖକୁ ଉଦରେ
ଲେଖି ସମାଠାକୁ ଗୃହଲା
ଅତରେ, ପୁର କେ କାନ୍ତାର ମିଳଲା
ଅଠାକାଠି ପର କାନ୍ତା-କଡ କର
ପଡ଼ ତହିଁରୁ ନ ଚଳଲା । ୮
ଅଳର ଝଙ୍କାର ଶୁଣି କେଉଁ ପର—
ବାସୀ ମୃତଠାରୁ ବଳଲା
ଅନଙ୍ଗର ଦକେ କର୍ଣ୍ଣ-କବାଟ କେ
କର-କଳଣୀରେ କଳଲା
ଅଙ୍ଗ ତା, ମଳୟଜ-ଜଳେ ଜଳଲା
ଅନିଳ ପରଶ ଅନଳ ସଦୃଶ
ପର କଷ୍ଟେ ଅବକଳଲା । ୯

---

(ଅପାର ସ୍ୱେଦରେ) ଅତି ସ୍ୱେଦରେ (ଉଦରେ) ନିର୍ଜନ ସ୍ଥାନରେ (ଲେଖକୁ) ଚିଠାଉକୁ ଲେଖି (ସମାଠାକୁ) ସ୍ୱୀ ନିକଟକୁ (ଗୃହଲା) ପଠାଇଲା । (ଅତରେ) ଅବଳମ୍ବେ (କେ) କୌଣସି ବିଦେଶୀ (କାନ୍ତାର) ନାୟିକାର (ପୁର) ସମୀପରେ ମିଳଲା । କାନ୍ତା କଡ କର ଅର୍ଥାତ୍ ସ୍ତ୍ରୀ ନିକଟକୁ ଗମନ କର ଅଠାକାଠି ପର (ତହିଁରେ) ପଡ଼ ତହିଁରୁ ଚଳଲା ନାହିଁ । (ପକ୍ଷୀ ଅଠାକାଠିରେ ଫସିଲେ ନିଶ୍ଚଳ ରହିଲ ପରି କାନ୍ତା-ସମୀପ-ରୂପ ଅଠାକାଠିରେ ପଡ଼ି ତହିଁରୁ ଚଳିପାରିଲ ନାହିଁ) ୯ । (କେଉଁ ପ୍ରବାସୀ) ବିଦେଶୀ (ଅଳର) ଭ୍ରମରର (ଝଙ୍କାର) ନାଦ ଶୁଣି ମୃତ ବ୍ୟକ୍ତିଠାରୁ ବଳିପଡ଼ିଲା । (ଅନଙ୍ଗର) କାମର (ଦକେ) ଭୟରେ (କର୍ଣ୍ଣକବାଟ) କର୍ଣ୍ଣରୂପ କବାଟକୁ କରରୂପ କଳଣୀରେ କଳଲା ଅର୍ଥାତ୍ ହାତରେ କାନକୁ ବନ୍ଦ କଲା । ତାହାର ଅଙ୍ଗ (ମଳୟଜ-ଜଳେ) ଚନ୍ଦନ ପାଣିରେ ଜଳଲା । (ବିରହ କାଳରେ ଶୀତଳ ଉପଚାର ମଧ୍ୟ ସନ୍ତାପ ଦାୟକ) । (ଅନିଳ ପରଶ) ଦେହରେ ପବନ ବାଜିବା (ଅନଳ ସଦୃଶ) ଅଗ୍ନି ପରି ଅତି କଷ୍ଟେ (ଅବକଳଲା) ସହିଲା ବା ମନେ କଲା ।

ଅଟବୀ-ବିହାର ଆଶେ ନାରୀବର
କେହୁ ବର ସଙ୍ଗେ ଚଳିଲା
ଅକଥନ ସ୍ନେହ— କଥା କଥନରେ
କର୍ଣ୍ଣ-କଳୁଷ ପଖାଳିଲା
ଅମୂଲ୍ୟ—ଛଳରେ ପତି କେ ଛଳିଲା
ଅନାଅ * ହେ ବନ୍ଧୁ ତୁମ୍ଭର ଏ ବଧୂ—
କରେ ପରି ମନ ବାନ୍ଧିଲା । ୧୦

( ଶ୍ଳେଷୋକ୍ତି )

ଅଙ୍ଗୁଳି ଦେଖାଇ ସଖୀକୁ ଲଗାଇ
ପାନ୍ଥକୁ କେ କହେ ଶ୍ଳେଷରେ
ଅନା ଏ ମୋହନା ସୁନାରୀ ସୁମନା—
ବର ନାହିଁ ଏହା ବାସରେ
ଅଟେ ଏ, ଖୁରୁ ସୁନ୍ଦରୀ ପରବାସୀ
ଅଛୁ କି ଶରଧା ଏହାର ପୁରକୁ
ଯିବା ଆସ ରସି କହସି । ୧୧

---

୧୦ । (କେହୁ) କୌଣସି । (ନାରୀବର) ଉତ୍ତମା ନାରୀ । (ଅଟବୀ ବିହାର ଆଶେ) ବନ ବିହାର କରିବା ଆଶାରେ । (ବରସଙ୍ଗେ) ସ୍ୱାମୀ ସହିତରେ । (ଚଳିଲା) ବାହାରିଲା । (ଅକଥନ) ଅକଥନୀୟ, ଯାହା କହିହେବ ନାହିଁ । (ସ୍ନେହ କଥା କଥନରେ) ପ୍ରେମପୂର୍ଣ୍ଣ କଥାର ଉଚ୍ଚାରଣରେ । (କର୍ଣ୍ଣ-କଳୁଷ) କାନର ପାପକୁ । (ପଖାଳିଲା) ଧୋଇଲା । (ଅମୂଲ୍ୟ ଛଳରେ) ଅଦ୍ଭୁତ ଛଳ କଥାରେ କେହି ସ୍ତ୍ରୀ ପତିକି (ଛଳିଲା) ଭଙ୍ଗୀରେ କହିଲା । ହେ ବନ୍ଧୁ ! ଅନାଅ, ତୁମ୍ଭର ମନ ଏ (ବଧୂକରେ) ବନ୍ଧୁକ ବୃକ୍ଷରେ ବନ୍ଧାଇଲା ପରି ! ଅନ୍ୟ ପକ୍ଷେ —ଏ(ବଧୂ) ସ୍ତ୍ରୀର, (କରେ) ହାତ ମୁଠରେ ତୁମ୍ଭ ମନ ରହିଲା ପରି । ୧୧ । କେହି ସ୍ତ୍ରୀ (ଅଙ୍ଗୁଳି ଦେଖାଇ) ଆଙ୍ଗୁଠି ଦେଖାଇ (ସଖୀକୁ ଲଗାଇ) ସଖୀକୁ କହିବାର ଛଳକରି (ପାନ୍ଥକୁ) କୌଣସି ପଥିକକୁ (ଶ୍ଳେଷରେ) ଦ୍ୱ୍ୟର୍ଥ ବଚନଦ୍ୱାରା (କହଇ) କହୁଛି । ସୁନାରୀ ପୁଷ୍ପ ପକ୍ଷେ—ରେ ସଖି ! ରେ (ମୋହନା) ରୂପରେ ମନୋହାରିଣୀ ସୁନାରୀ (ସୁମନାବର) ଉତ୍ତମ ସୁନାରୀ ପୁଷ୍ପକୁ (ଅନା) ଦେଖ । ଏହାର ବାସ ନାହିଁ । ଏ (ଖୁରୁ) ସୁନ୍ଦର ସୁନ୍ଦରୀନାମକ ବୃକ୍ଷର (ପରବାସୀ) ପରରେ ବାସ କରୁଛି ପରବର୍ତ୍ତୀ (କହସି) କହତ, ତୁମର ଶରଧା ଅଛି କି ? ଏହାର (ପୁରକୁ) ନିକଟକୁ (ରସି) ଅନୁରକ୍ତା ହୋଇ ଯିବା ଆସ ।

( ଛଳଶ୍ଳେଷ )

ଅବଳାକୁ ଲକ୍ଷି ଛଳରେ ତା' ସଖୀ
ପଥିକକୁ ଦେଖି କହୁଛି
ଅତି ସୁକୁମାରୀ ମୋ ଏ ସହଚରୀ
ନିସିକାମ ପୀଡ଼ା ପାଉଛି
ଅପାର—ଉପାୟେ ଏ ଊଣା ନୋହିଲା
ଅଳ୍ପ ଅଛି ଧନ— ତଥି କ କରିବା
ଏକାନ୍ତରେ ବାଇ ହୋଇଲା । ୧୨ ।
ଅନାଇ ଚତୁର ବୋଇଲା ଏହାର
ମଣିବନ୍ଧ ଗତି ପାଇଲେ ।
ଅନୁସର କରି ପୁଷ୍ପାଶୁଗ ଭୟ
କରିବା ସମସ୍ତ ହୋଇଲେ

---

ପଥିକପକ୍ଷେ—ଏ (ମୋହନା) ମନୋହରଣୀ (ସୁନାଗ୍ରୀ) ଉତ୍ତମ ସ୍ତ୍ରୀ ।(ସୁମନାକର) ବିଦୁଷୀ, କମଳଲୋଚନା (ବର) ସ୍ୱାମୀ ଏହାର (ବାସରେ) ଗୃହରେ ନାହିଁ । ଏ (ସ୍ଥିରୁ ସୁନ୍ଦରୀ) ଅତି ସୁନ୍ଦରୀ ଓ (ପ୍ରବାସି) ଉତ୍କୃଷ୍ଟ ବସନଧାରଣୀ ବା ଉତ୍କୃଷ୍ଟ ଗୃହବର୍ଣ୍ଣା, କିମ୍ବା ପରର—ଅନ୍ୟର ବାସୀ (ବାସୀତା) ସ୍ତ୍ରୀ ଅଟେ । ହେ ରସିକ ! ତୁମ୍ଭର ଶରଧା ଅଛି କି ? ଆସ, ଏହାର (ପୁରକୁ) ଗୃହକୁ ପସି ଯିବା । ୧୨ । କୌଣସି ପଥିକକୁ ଦେଖି ଅବଳାକୁ (ଲକ୍ଷି) ଉପଲକ୍ଷ୍ୟ କରି ତାହାର ସଖୀ ତାହାକୁ ଛଳରେ କହୁଛି—ମୋର ଅତି ସୁକୁମାରୀ ଏ (ସହଚରୀ) ସଖୀ (ବେଗ ବରେ) (ନିସିକାମ) ନିଷ୍କାମ, ଯାହା କାମରୁ ଅର୍ଥାତ୍ କାମନାରୁ ବହିର୍ଭୂତ ଅସ୍ୱକର୍ମୀୟ (ପୀଡ଼ା) ବ୍ୟଥା ପାଉଛି । (ଅପାର) ଅନେକ ଉପାୟରେ ଭଲ ହୋଇଲା ନାହିଁ । ତାହାର (ଧନ) ଶରୀରର ତେଜ (ଅଳ୍ପ ଅଛି) କମି ଗଲାଣି (ତଥି) ତହିଁକି, ସେଥିକୁ (କ କରିବା) କଅଣ କରିବା । ସେ (ଏକାନ୍ତରେ) ଅତ୍ୟନ୍ତ ଭାବେ (ବାଇ) ବାତୁଳୀ ହୋଇଲା । ଅନ୍ୟ ପକ୍ଷେ—ମୋର ଏ ସହଚରୀ ଅତି (ସୁକୁମାରୀ) କୋମଳାଙ୍ଗୀ, ଏ (ନିଶି) ରାତିରେ କାମପୀଡ଼ା ପାଉଛି । (ଅପାର ଉପାୟେ) ଅନେକ ଉପାୟରେ (ଚନ୍ଦନ ବୋଳିବା, ପଦ୍ମଦଳରେ ଶୁଆଇବା ଇତ୍ୟାଦି) ଏ ପୀଡ଼ା ଊଣା ହେଉ ନାହିଁ । ଏହାର (ଧନ) ଟଙ୍କାହ ଅଳ୍ପ ଧନ ଅଛି । ସେଥିକି କଅଣ କରିବା ? ଏ (କାନ୍ତରେ) ସ୍ୱାମୀପାଇଁ, (ବାଇ ହେଲଣି) ପାଗଳୀ ହୋଇ ଗଲାଣି । ୧୩। ସେହି ଚତୁର ପଥିକ (ଅନାଇ) ଗୁହିଁ କହିଲା, ଏହାର (ମଣିବନ୍ଧ ଗତି) ବୁଢ଼ା ଅଙ୍ଗୁଠିର ମୂଳର ଗତି ଅର୍ଥାତ୍ ନାଡ଼ୀର ଗତି (ପାଇଲେ) ଜାଣି ପାରିଲେ (ଅନୁସର କରି) ବିଚାର କରି

ଅଧରୁ ସରସ ମଧୁ ପିଆଇବ
ଅବଶ୍ୟ ଏ ପଥି— ଜାଣ ଯତନରେ
ରତି ବେଦନା ନ ରହିବ । ୧୩
ଅନାଇଁ ଏମନ୍ତ ସୁଖଦ ବସନ୍ତ
ଚିତ୍ତୁ ଉମାକାନ୍ତ ଜନ୍ମତେ
ଅନ୍ତିକ କାନନ ଅନ୍ତିକୁ ଗମନ
କରିବାକୁ କାନ୍ତ'-ସଙ୍ଗତେ
ଅନୁଜ୍ଞା—କଲେ ସଖୀଗଣମାନଙ୍କୁ
ଅନୁରୂପ ବେଶ ହୃଷ୍ଟ ଦିବା ଆସ
ଗଜଗାମୀଙ୍କୁ ଘେନି ବନକୁ । ୧୪
ଅଟାରେ ସେ ନାରୀ ରୁଚିର କବରୀ
ବାନ୍ଧି ରୁଚିରୁ ଚୀର ପିନ୍ଧିଲେ
ଅଷ୍ଟରତ୍ନ-ପୁଷ୍ଟ— ଅଳଙ୍କାର ହୃଷ୍ଟ
ହୋଇ ସେ ଅଙ୍ଗରେ ଖଞ୍ଜିଲେ
ଅଞ୍ଜନ—କଞ୍ଜନୟନରେ ରଞ୍ଜିଲେ

---

(ସମସ୍ତ ହୋଇଲେ) ଦେଖ ହୋଇଲେ "ପୁଷ୍ପାଶୁଗନାମକ" ଔଷଧ ପ୍ରୟୋଗ କରିବା । (ଅଧରୁ) ଔଷଧ ଅଧେ ପାନ କଲ ଓଷ୍ଠରୁ ସରସ ମଧୁ—ବିଶୁଦ୍ଧ ମଦ୍ଯ ପିଆଇବ । ଯତ୍ନରେ—ଅତି ସାବଧାନରେ ଏହି (ପଥି) ପଥ୍ୟ କର । ଅବଶ୍ୟ (ରତିବେଦନା) ଅଳ୍ପ ଟିକଏ ହେଲେ ବେଦନା ରହିବ ନାହିଁ । ଅନ୍ୟପକ୍ଷେ—ଚତୁର ଏହା ବୋଇଲା, ରମଣୀ ବନ୍ଧଚେତି ପାଇଲେ—ମନୋଦୁଃଖ ଅବସ୍ଥାକୁ ପାଇଲେ (ବନ୍ଧସ୍ତ୍ୟାଧୌଚ ବନ୍ଧନେ ଇତି ମେଦ୍ଦ୍ୱମା, ପୁଂସ୍ୟାଧିର୍ମାନସୀ ବ୍ୟଥା,' ଇତ୍ୟମର) (ସମସ୍ତ ହୋଇଲେ) ଶପଥ କଲେ ଏହାକୁ (ଅନୁସରି) ମତାନୁବର୍ତ୍ତୀ ହୋଇ, 'ପୁଷ୍ପ ଶୁଗରସ' କାମରସ (କ୍ରୀଡ଼ା)କରିବା । ଏ ଅଧରୁ—ଓଷ୍ଠରୁ ସରସ ମଧୁ ପିଆଇବ । ଅବଶ୍ୟ ଏ ପଥିକର—ବାଟୋଇର (ମୋର)ଯତନରେ(ରତି-ବେଦନା) ରତିପାଇଁ ହେଉଥିବା ଦୁଃଖ ରହିବ ନାହିଁ । ୧୪ । ଏମନ୍ତ—ଏ ପ୍ରକାର । ସୁଖଦ—ସୁଖକର । ଉମାକାନ୍ତ—ମହାଦେବ । ଅନ୍ତିକ କାନନ ଅନ୍ତିକୁ—ନିକଟରେ ଥିବା ବନ ମଧ୍ୟକୁ । କାନ୍ତା ସଙ୍ଗତେ—ପ୍ରିୟା ସଙ୍ଗରେ । ଅନୁଜ୍ଞା—ଆଦେଶ । ତାଙ୍କର ନାନା ଶ୍ରେଣୀର ସଖୀ ଥିବାରୁ ବହୁତ୍ୱ ବାଚକ 'ଗଣ' ପଦରେ 'ମାନଙ୍କୁ' ବ୍ୟବହାର କରାଯାଇଛି । ୧୫ । ରୁଚିରକବରୀ—ସୁନ୍ଦର ଜୁଡ଼ା । ରୁଚିରୁ ଚୀର—ସୁନ୍ଦର ଲୁଗା । ଅଷ୍ଟରତ୍ନ ପୁଷ୍ଟ—ଅଷ୍ଟ ରତ୍ନରେ ବହୁଳଭାବେ ଖଚିତ । କଞ୍ଜ ନୟନରେ—ପଦ୍ମତୁଲ୍ୟ ଆଖିରେ ।

ଅରୁଣ-କରଣ ଚରୁଣ ଅରୁଣ
ଓଷ୍ଠେ ନାଗବଲ୍ଲୀ ଭୁଞ୍ଜିଲେ । ୧୫

ଅଚଳ ମର୍ଦ୍ଦଳ ଧରି ଦେଦଳ—
ନଚୁନାକେ ତାଳଗତରେ

ଅମୃତକ ଘେନ ଚେଉଁ ମତିମତ୍ତ
ମିଳନ ପାର୍ବଣ-କନ୍ତରେ
ଅଂସରେ— ବୀଣା ବନ୍ଧି କେଉଁ ପ୍ରବୀଣା

ଅଳପ ଆଳାପ କରଣ କଳାପ—
କେଶୀ ମିଳାଉଅଛି ଗୁଣା । ୧୬

ଅଧ ମଧ୍ୟ ଊର୍ଦ୍ଧ୍ୱ ତିନି ଗ୍ରାମ ଶୁଦ୍ଧ
କରି କେ ରାଗ ମିଳାଉଛି

ଅତି ଉଚ୍ଚ ଗାନ— ରେ କେ କମ୍ପମାନ
ପଡ଼ିମାନ ମୁଣ୍ଡେ ଦେଉଛି
ଅଧରେ—ବଂଶୀ ବସାଇ କେ ବାଉଛି

ଅତୁଳ ବର୍ତ୍ତୁଳ ତାଳ କରତାଳ
ଧରି କେ * ଝଞ୍ଜ ଝମକାଉଛି । ୧୭

---

(ଅରୁଣ କରଣ ଚରୁଣ ଅରୁଣ) ରକ୍ତବର୍ଣ୍ଣ କରଣକୁ ଧାରଣ କରିଥିବା ଅତି ପ୍ରଖରର ସୂର୍ଯ୍ୟପରି ରକ୍ତବର୍ଣ୍ଣ ଓଷ୍ଠରେ (ନାଗବଲ୍ଲୀ) ପାନ ।୧୬। ତାଳଗତରେ —ତାଳ ଅନୁସାରେ ଗୋଡ଼ ପକାଇ । ମତିମତ୍ତ—ବୁଦ୍ଧିମତ୍ତ । ଅଂସରେ— କାନ୍ଧରେ—ପ୍ରବୀଣା— ପ୍ରଗଳ୍ଭ ନାୟିକା । ଆଳାପ କରି—ତାନମାନସହିତ ସ୍ୱର ସାଧନା କରି । କଳାପକେଶୀ—ମୟୂରପୁଚ୍ଛ ପରି କେଶଯୁକ୍ତା । ଗୁଣା ମିଳାଉଅଛି—ମୁଖ ଖୋଲିଇ ଆଳାପ କଲାପରେ ଇତସ୍ତତଃ ହୋଇଥିବା ଗୁଣା (ନାସାଳଙ୍କାରକୁ) କୁ ସଜ ତ ଦେଉଛି । ୧୭ । ଅଧ, ମଧ୍ୟ, ଊର୍ଦ୍ଧ୍ୱ ତିନି ଗ୍ରାମକୁ —ଉଦାର, ମୁଦାର ଓ ତାର ଏହି ତିନି ସ୍ୱରକୁ ଶୁଦ୍ଧ କରି କୌଣସି ସ୍ତ୍ରୀ ରାଗ ମିଳାଉଅଛି । ଅତି ଉଚ୍ଚରେ ଗାନ କରିବା ଦ୍ୱାରା କେହି କମ୍ପମାନ ହୋଇ ମୁଣ୍ଡରେ ପଡ଼ି ମାନ ଦେଉଛି । ଝଞ୍ଜ—ଝର୍ଝର ନାମକ ବାଦ୍ୟ ।

* ଝାରି

ଅମୃତ-କରଣ— କଳା-ଆଭରଣ

  କାନ୍ତାଙ୍କର ଧରି ଝଟିଲେ

ଅନୁଚରସ୍ତବାର ଆଲଟ୍ ଗୁମ୍ଫରେ

  ଛଡ଼ ହାସ ଧରି ଚହିଲେ

  ଅଙ୍ଗନା-କେତୁ ଦୁଳଦୁଳୀ ବଦଅନ୍ତି

ଅଗ୍ରେ କେଉଁ ନାସ୍ତି ଜଇ ପରସ୍ପରେ

  ପଦ୍ମଣ୍ଡ ମଟାଇ ନଅନ୍ତି । ୧୮

ଅଟବୀ ଦେଶରେ କୁତୂକ ରସରେ

  ପଇବେଶ ଯାଉଁ ହୋଇଲେ

ଅନ୍ୟୋଽନ୍ୟରେ ଛଳ ଇଙ୍ଗିତ ମଞ୍ଜୁଳ

  ବଚନ ରଚନ କଳ୍ପିଲେ

  ଅବଳା—ଯାଇଁ କେ କୁସୁମ ତୋଳନ୍ତି

ଅତ୍ୟନ୍ତ ଚତୁର କେ ବାଣୀ-ଚତୁର

  ଆର ସଜନୀ କା ଛଳନ୍ତି । ୧୯

(ଶ୍ଳେଷ)

ଅନାରେ ଏ ଚୂତ- ବିଟପୀ ତୁ ମିତ୍ର

  କା ଶୋଭା ବକୁଳବଣ୍ଟରେ

ଅଜ୍ଞାତ ହେଲେ ପ— ସ୍ବର ଏକା ମୋତେ

  ଲେଖନ୍ତି ସୁମନସ ଗଣରେ

---

୧୮ । ଅମୃତକରଣ-କଳାଆଭରଣ—ଚନ୍ଦ୍ରକଳା ଯାହାଙ୍କର ଅଳଙ୍କାର ଅର୍ଥାତ୍ ଶିବ । ଅନୁଚରସ୍ତବାର—ସେବକାସମୂହ ।୧୯। ଅଟବୀ ଦେଶରେ—ବନ ମଧ୍ୟରେ । ମଞ୍ଜୁଳ—ମନୋହର । ବାଣୀଚତୁର—କଥା କହିବାରେ ପଟୁ । ୨୦ । ହେ ମିତ୍ର ! ଅନା ଏ (ଚୂତ ବିଟପୀ) ଆମ୍ବଗଛ (ବକୁଳବଣ୍ଟରେ) ବଉଳଥିବା ଗଛମାନଙ୍କ ମଧ୍ୟରେ କି (ଶୋଭା) ସୁନ୍ଦର ଦିଶୁଛି । ମୋତେ (ଅଜ୍ଞାତ ହେଲେ)ଜଣା ନ ଥିଲେ ମତେ ପଚାର । ଏହାକୁ(ସୁମନସ ଗଣରେ)ଫୁଲବାଣ ମଧ୍ୟରେ (ଲେଖନ୍ତି) ଗଣନା କରନ୍ତି । ତହୁଁ (ଅପର) ଅନ୍ୟ ସ୍ତ୍ରୀ, (କାନ୍ତି) ଖୋଜ ଖୋଜ ପ୍ରଶ୍ନ-ଉତ୍ତର କହୁଛି । (ଅସଂଖ୍ୟ ସଂଖ୍ୟ) ଅଗଣିତ (ମଧୁପଠାରେ) ଭ୍ରମରମାନଙ୍କ ନିକଟରେ (ସୁବ୍ରତଦ ସ୍ତ୍ରୀ) ସ୍ବାଦ (ମଧୁ ରୂପ) ଦାନ କରୁଛି ତବ (ସୁବ୍ରତ୍ ଶବ୍ଦ

ଅପର—ପ୍ରତିଉତ୍ତର କହେ ବାଃତ୍ତି
ଅସଂଖ୍ୟ-ସଂଖ୍ୟ ମ—                    ଧପଠାରେ ପର
ସୁରତ—ଦାସ୍ୱିମା ହୋଇଛୁ । ୨୦
(ଶ୍ଳେଷ)
ଅବଳା ନାସ * କ—                    ଳଣା ତୁ କରନ୍ତି
ଶ୍ରମରେ ନ ଜନ୍ତୁ କପାଇଁ
ଅତି ସୁଖୀ ହେବୁ                    ସେବନେ ସେ ବନେ
ଥିବ ଏକାନ୍ତେ ଖୋଜ ଯାଇଁ
ଅନୁବ—ଦେ ତୁ ସାର-ରୂପା ପିବାରେ
ଅକ୍ଷି-ଅଲକ୍ଷିତ                    କଥା ଯେ ଘଟାଉ
ଅଛୁ ତୁ ହଟକର ମୋରେ । ୨୧
(ଶ୍ଳେଷାଶସ୍ତ୍ର ପ୍ରଶ୍ନୋତ୍ତର)
ଅନଙ୍ଗର ଶର                    କ ପ୍ରମାଣ ତାର
ଅଶୋକ * ସମ କେ ସୁନ୍ଦର
ଅବଳା କାନ୍ତ କ *                    ଗ୍ରହଣେ ଲଭନ୍ତ *
ଦୁଇ ମୂଦରେ କ ସୁନ୍ଦର

---

ଯ ବନାଙ୍କ ଓଡ଼ିଆରେ ମିଠାଗୁଣ ଅର୍ଥରେ ବ୍ୟବହୃତ ହୁଏ) । ଅନ୍ୟପକ୍ଷେ—ମିତ ଏ(ଚତୁବଟଷୀ)କୂଳଚ୍ୟୂତ(ବନ୍ଟପୀ)କୁଳଟା, ତୁ କ ଶୋଭନ— ସ୍ୱଭାବ ସ୍ୱଭାବତଃ (କୁଳବଣ୍ଟ) ସାଧ୍ୱୀ । ମୋ ହୃଦୟରେ (ଅଜ୍ଞା) ଜ୍ଞାନଶୂନ୍ୟା ହେଲେ ଅର୍ଥାତ୍ ମୋ ହୃଦୟ ଜାଣି ନ ଥିଲେ ପଶୁଭ । ମୋତେ (ସୁମନ) ସଜ୍ଜନମାନେ (ସଜ୍ଜରେ) ସଜ୍ଜମାନଙ୍କ ମଧ୍ୟରେ ଗଣନ୍ତି । ତନ୍ତୁ ଅନ୍ୟ ସ୍ତ୍ରୀ କହନ୍ତି, ଯେ ଅସଂଖ୍ୟ-ସଂଖ୍ୟ (ମଧୁପ) ନ୍ଦ୍ୟପାୟୀ ଲୋକ ନିକଟରେ (ସୁରତଦାୟିନୀ) କାମକ୍ରୀଡ଼ା ପ୍ରଦାନ କାରିଣୀ ହୋଇଛୁ, ସେ ବନ୍ଟପୀ ନୁହେଁ ଆଉ କଅଣ ? ୨୧ । ଶ୍ରମରେ—(ଶରମ) ଲଜ୍ଜାରେ ଓ କ୍ଳାନ୍ତ ହେତୁ । ସେବନେ ସେ ବନେ—ଏକ ବନ ପରେ ଅପର ବନରେ ଓ ସେ ବନ ଦେଶରେ ସେବା ନରବା ଦ୍ୱାରା । ଅନୁବଦେ—ଉତ୍ତର କଲ । ତୁ ସାରରୂପା ପିବା—ତୁ ଉତ୍କୃଷ୍ଟ ରୂପବତୀ, ଆସ ପିବା, ଅନ୍ୟପକ୍ଷେ—ତୁ ସାର-ରୂପାଜୀବା—ଉତ୍କୃଷ୍ଟ ବେଶ୍ୟା ।

୨୨ । ପ୍ରଶ୍ନପକ୍ଷେ—ଅନଙ୍ଗର ଶରର କ ପ୍ରମାଣ ? (କେତେ ପରିମାଣ ଅର୍ଥାତ୍ ସଂଖ୍ୟା) ଉତ୍ତର—(ହାତଟେକବା ଛଳରେ) ପାଞ୍ଚ ଆଙ୍ଗୁଠି ଦେଖାଇ ପାଞ୍ଚ ବୋଲି କହିଲ ।

* କେଳାଶା, 'ବା' କ ଆଶା  * କାନ୍ତ ନିଗ୍ରହଣେ, କାନ୍ତ ବିଗ୍ରହଣେ (ଖ)

ଅଙ୍ଗନା— ଶୁଣି ଡାକନ୍ତେ ତୋଳ ପାଣି
ଅଚ୍ଛରେ ସଂଖ୍ୟ ଉପମା ନାମ ଭୂଷା
ଶ୍ଳେଷ ଏ ପ୍ରଶ୍ନ ସଖୀ ଜାଣି । ୨୨
ଅଣୁଭାର ସହ୍ୟ ନ ପାରଇ ସହି
ଗିରି ତୋଳିବାକୁ ଯେ କ୍ଷମ
(ଆଦ୍ୟ) ଅମ୍ବୁଜ ଶୋଭା ଯେ ଫୁଟିଲେ ନ ଦିଶେ
କୁଟିଳ ହୋଇ ମନୋରମ
ଅର୍ଜ୍ଜୁନ— କୃଷ୍ଣ ଅରୁଣ ଶୋଭା ଧରେ
ଅଟଇ ସେ ବିଷ କାହାକୁ ପୀୟୂଷ
ଗୁଣ କରଇ କାହାଠାରେ । ୨୩

ପ୍ର—ଅଶୋକ ସମ (ପର) କେ (କଏ) ସୁନ୍ଦର ?
ଉ—ହାତ ।
"ପଦ୍ମମଶୋକାଙ୍କୁର ପାଣି ପଲ୍ଲବେ ଇତି" (କାଳିଦାସ)
ହସ୍ତ ଅଶୋକ ପଲ୍ଲବ ସହିତ ତୁଳିତ ହୁଏ ।

ପ୍ର—(ଅବଳା) ସ୍ତ୍ରୀମାନେ କ (ଗ୍ରହଣେ) କଅଣ ଗ୍ରହଣ କରିବାଦ୍ୱାରା (କାନ୍ତ) ସ୍ୱାମୀଙ୍କୁ ଲଭ କରନ୍ତି ?
ଉ—ପାଣି (ହାତ) ।
ପ୍ର—ଦୁଇ (କ ହାତ ସଂଖ୍ୟା ଦୁଇ) ?
ଉ—ହାତ ।
ପ୍ର—(ମୂଦରେ) ମୁଦଦ୍ୱାରା (କ) କଅଣ (ରୁଚିର) ସୁନ୍ଦର ?
ଉ—ହାତ ।

କୌଣସି ଅଙ୍ଗନା (ସ୍ତ୍ରୀ) ଏହି ପ୍ରଶ୍ନ ଶୁଣି (ଉତ୍ତର ଦେବା ଛଳରେ) ପାଣି (ତୋଳ) ହାତ ଟେକି ଡାକନ୍ତେ ତାହାର ସଖୀ (ଅଚ୍ଛରେ) ତତ୍‌କ୍ଷଣାତ ଜାଣିପାରିଲେ 'ଏ ପ୍ରଶ୍ନ ସଂଖ୍ୟ(?)ଉପମା ନାମକ(ଭୂଷା) ଅଳଙ୍କାର ଶ୍ଳେଷ ଅଟେ ।' ୨୩ । ଯେ (ଗିରି ତୋଳିବାକୁ) ପର୍ବତ ଟେକିବାକୁ (କ୍ଷମ)-ସମର୍ଥ, ସେ (ଅଣୁଭାର) ଫୁଲପରାଗର ଭାରକୁ ସହିପାରୁ ନାହିଁ । (ଅମ୍ବୁଜଶୋଭା)—ପଦ୍ମପରି ଶୋଭା ଦିଶେ, ଅମ୍ବୁଜ ଫୁଟିଲେ ସମସ୍ତଙ୍କୁ ଦେଖାଯାଏ; କିନ୍ତୁ ଏ ଫୁଟିଲେ ଦିଶେ ନାହିଁ । ପୁଣି (ଅର୍ଜ୍ଜୁନ) ମଧ୍ୟମ ପାଣ୍ଡବ, (କୃଷ୍ଣ) ବାସୁଦେବ, (ଅରୁଣ) ସୂର୍ଯ୍ୟ, ଏମାନଙ୍କ ଶୋଭାକୁ ଧରେ । ସେ ପୁଣି କେଉଁଠି ବିଷ କେଉଁଠି (ପୀୟୂଷ) ଅମୃତ ପରି କାର୍ଯ୍ୟ କରେ । ସ୍ପଷ୍ଟାର୍ଥ – ଯେଉଁ ସ୍ତ୍ରୀ ସାମାନ୍ୟ ଭାର ସହିପାରୁ ନାହିଁ, ସେ କୁଚରୂପ ପର୍ବତକୁ ବହିଛି । ଆଖି ପଦ୍ମପରି ସୁନ୍ଦର, ସେ ଯେବେ (ଫୁଟିଯାଏ) ନଷ୍ଟହୁଏ, ତେବେ ଦିଶେ ନାହିଁ । ସେ (ଅର୍ଜ୍ଜୁନ) ଧଳା,(କୃଷ୍ଣ)କଳା ଓ (ଅରୁଣ) ରକ୍ତବର୍ଣ୍ଣ ଶୋଭାକୁ ଧାରଣ କରେ । ସଂଯୋଗୀ ପକ୍ଷରେ ତାହା ଅମୃତ ଓ ବିଯୋଗୀ ପକ୍ଷରେ ବିଷତୁଲ୍ୟ ।

ଅହିଲତା ରସ  ଯୋଗରେ ପୀୟୂଷ
ବୃଷ୍ଟି କରଇ ଅରୁଣ
ଅତି ଅଳପ ସେ  ଅତନୁ ସୁରସେ *
* ତିନ୍ତିଯାଏ ଅନ୍ତଃକରଣ
ଅବଳା—ଏ କସ କହି ପୁଚ୍ଛେ କେହି
ଅପାଙ୍ଗ-ତରଙ୍ଗେ  ସ୍ମିତ-ରସ-ରଙ୍ଗେ
ଗୃହିଁାନ୍ତେ ପ୍ରଶଂସଇ ସଖୀ । ୨୪

ଅଳସ ଭଙ୍ଗନ୍ତେ  କଳସସ୍ତନୀ କେ
ସ୍ତନମୂଳୁ ବାସ ଖସୁଛି
ଅଳ୍ପ ଈଷି ଈଷି  ହସି ନେହ ଖୋସି
କପାଳରେ, ମନ୍ଦେ ହସୁଛି
ଅଙ୍ଗୁଳ—ତିଳକ ସା ଫୁଲ ଆସୁଛି
ଅଧରକୁ ଅରେ  ଅରେ ଦଶନରେ
ଭଡ଼ କ ଶୋଭନ ହସୁଛି । ୨୫

---

୨୪ । ଅରୁଣ—ସୂର୍ଯ୍ୟ । ଅହିଲତା ଯୋଗରେ—ସର୍ପଯୋଗରେ (ଲମ୍ବ ହୋଇଥିବାରୁ ସର୍ପକୁ ଲତା ସଙ୍ଗେ ରୂପଣ କରାଯାଇଛି) । (ପୀୟୂଷ) ଅମୃତ ବୃଷ୍ଟି କରୁଛି । ସେ ଅମୃତ ଅତି ଅଳ୍ପ ହେଲେ ହେଁ ତାହାର ଅତନୁ (ସୁରସେ) ଅଧିକ ଜଳରେ (ଅନ୍ତଃକରଣ) ହୃଦୟ ତିନ୍ତିଯାଏ । ଏହି ଅସମ୍ଭବ ପ୍ରଶ୍ନ ଶୁଣି କେହି ଅବଳା (ସ୍ତ୍ରୀ) ଏ କସ ? ଏହା କଅଣ ବୋଲି ପଚାରନ୍ତି । ତହୁଁ ଅପର ସ୍ତ୍ରୀ (ଅପାଙ୍ଗତରଙ୍ଗେ) ଚଞ୍ଚଳ କଟାକ୍ଷରେ ଓ (ସ୍ମିତରସରଙ୍ଗେ) ମନ୍ଦହାସରେ ଗୃହିଁବାରୁ ସଖୀ ତାହାକୁ ପ୍ରଶଂସା କଲା । ସ୍ପଷ୍ଟାର୍ଥ (ଅରୁଣ) ରକ୍ତବର୍ଣ୍ଣ ହୋଇଥିବା (ଅଧର) ଓଷ୍ଠ (ଅହିଲତା ଯୋଗେ) ପାନ ସହିତ ମିଶି (ପୀୟୂଷ) ମନ୍ଦହାସରୂପ ଅମୃତ ବୃଷ୍ଟି କରୁଛି । ସେ ମନ୍ଦହାସ ଅତି ଅଳ୍ପ ହେଲେ ସୁଦ୍ଧା ତାହା ଫଳରେ (ଅତନୁସୁରସେ) କାମରସରେ (ଅନ୍ତଃକରଣ) ହୃଦୟ ପର୍ଯ୍ୟନ୍ତ ତିନ୍ତି ଯାଉଛି (ଜଡ଼ିତ ହୋଇଯାଉଛି) । ଗୂଢ଼ ପ୍ରଶ୍ନର ଉତ୍ତର କାର୍ଯ୍ୟରେ ଦେଖାଇଦେବାରୁ ସେ ପ୍ରଶଂସା କଲା । ୨୫ । ଦଶନରେ—ଦାନ୍ତରେ ।

* ସତସେ ' * ଚନ୍ତୁ ।

ଅନଙ୍ଗ ବଶନ୍ତୁ କେହ୍ନି ଭୂରୁ ଗୂରୁ
✳ ଗୃପ ନୃତ୍ୟ ନଟେଳ କହୁଛି
ଅଲକ୍ଷ୍ୟ କଟାକ୍ଷ ଖର ଶର ସନ୍ଧି
ଶ୍ରବଣ ଲଖକୁ ପେଷୁଛି
ଅଖିଳ—ସାର-ଶୋଭ-ସୃଷ୍ଟି ନାଶୁଛି
ଅଛି ଯେ ତା ଦେଖି ଜାଣିଛି ତା ଆଖି
ଜକ୍ଷିବାକୁ ତ ନ ଆଟୁଛି । ୨୬
ଅନୁରାଗ-ସଙ୍ଗ- ଅପାଙ୍ଗେ ଅନାଇ
ଭ୍ରମାକୁ କରନ୍ତୁ ଈଶାନ
ଅନା ଏ ନିଆଳୀ ଫୁଲ ବନମାଳୀ
ପ୍ରାଏ ହେଉଛି ପ୍ରାଣଧନ
ଅର୍ଜ୍ଜୁନ—ଭାବରେ ପ୍ରଫୁଲ୍ଲିତ ହୋଇ
ଅନେକ କଳ ପ୍ରକାଶୁଅଛି କୁରୁ-
ପତିଭାବରେ ଶତ୍ରେ ବନ୍ଧି । ୨୭
ଅବକଳ କଳ- କଣ୍ଠି ! ଏ କୋକିଳ
ଜାୟା-ଜୀବ-ବ୍ରତ କଟିଛି

---

୨୬ । ଭୂରୁ ଗୂରୁ ଗୃପ ନୃତ୍ୟ – ଭ୍ରୂଲତା ରୂପକ ସୁନ୍ଦର ଗୃପର ନାଚ । ଅଖିଳ—ସମସ୍ତ ପ୍ରକାର । ସାର ଶୋଭସୃଷ୍ଟି—ଉତ୍କୃଷ୍ଟ ସୌନ୍ଦର୍ଯ୍ୟ ସମୂହ ।

୨୭ । ଅନୁରାଗସଙ୍ଗ—ଅନୁରାଗ ଯୁକ୍ତ । ଅପାଙ୍ଗେ—ନେତ୍ରପ୍ରାନ୍ତଭାଗରେ । ଈଶାନ—ଶୀଘ୍ର । ଏ ନିଆଳୀ ଫୁଲ (ବନମାଳୀ) କୃଷ୍ଣଙ୍କ ପରି (ଶୋଭନ) ସୁନ୍ଦର ହୋଇଛି । ନିଆଳୀପକ୍ଷେ - (ଅର୍ଜ୍ଜୁନ ଭାବରେ) ଧବଳ ରୂପରେ (ପ୍ରଫୁଲ୍ଲିତ ହୋଇ) ପ୍ରସ୍ଫୁଟିତ ହୋଇ (କୁରୁପତିଭାବରେ) କୁରୁ-ପ୍ରଭ-ବରେ—କୁରୁବକ ବା କୁରୁବନ୍ଦର ଉତ୍କୃଷ୍ଟ କାନ୍ତିକୁ (ଧବଳତାକୁ) (ଶତ୍ରରେ) ଦେହରେ (ବନ୍ଧି) ଧାରଣ କରି ଅନେକ (କଳୀ) କଳି ପ୍ରକାଶ କରୁଅଛି । ('ଶତ୍ର' ପଦ ଶ୍ଳେଷାନୁରୋଧରେ ଦେହ ଅର୍ଥରେ ବ୍ୟବହୃତ) । ବନମାଳୀ—କୁରୁବଂଶୀୟ ମାନଙ୍କର (ପତିଭାବେ) ଶତ୍ରୁରୂପେ ଅନେକ (କଳ) ଯୁଦ୍ଧ ପ୍ରକାଶ କରିଥିଲେ ।

୨୮ । (କଳକଣ୍ଠି) ହେ ମଧୁରଭାଷିଣୀ ! ଅବକଳ—ଦେଖ, ଏ କୋକିଳ (ଜାୟାଜୀବବ୍ରତ) ଏକପତ୍ନୀ ବ୍ରତ କରିଛି ( ସ୍ୱ ସ୍ତ୍ରୀ ବ୍ୟତୀତ ଅପର ନାୟିକା ଗ୍ରହଣ ନ କରିବାର ନିୟମ କରିଛି) । କିନ୍ତୁ ଏଣେ (ବିଟପୀଙ୍କୁ) ବୃକ୍ଷକୁ,

✳ ଗୃପ ନୃତ୍ୟ ଛଳେ କଷୁଛି

ଅବଲମ୍ବନ କ— ଷଟ୍ପଦୀଙ୍କି କରଣ
କୁହୁକ କଳ ପ୍ରସ୍ଫୁରୁଛି
ଅତନୁ—ରଜାକୁ ଏ ଗୁଣ ଦେଖାଇ
ଅଛି ମୁକୁଳ କେ— କଳ-କବଳକୁ
ଖଞ୍ଜା କରିନେଲ୍ଲ ଲେଖାଇ । ୨୮

ଅଳିକ ଶୃଙ୍ଗା ଏ କଳକ ଧାଇଁଛି
ସୁମନ ପତ୍ରେ ପାଦ ମାରି
ଅହର୍ନିଶି ମଧୁ ପିଇବାରୁ ବନ୍ଧୁ !
ଜ୍ଞାନ ନାହିଁ ଦେହେ ଏହାର
ଅଲଗା—ହୋଇ ଆସ ରସସାଗର !
ଅବଜ ବୋଲି ଆସି ତୋର ମୁଖ-ଶଶୀ
ଢାଅଇଟି ବସି ବଦାସି । ୨୯

---

ଅନ୍ୟପକ୍ଷେ—ଷଟ୍ପଦୀ ସ୍ତ୍ରୀଙ୍କୁ (ଅବଲମ୍ବନ କରି)ଆଶ୍ରୟ କରି (କୁହୁକ-କଳ)—କୁହୁରବ ରୂପ ଅବ୍ୟକ୍ତ ଧ୍ୱନି, ଅନ୍ୟପକ୍ଷେ—ଅବ୍ୟକ୍ତ ଧ୍ୱନିରୂପ କୁହୁକ ପ୍ରସ୍ଫୁର କରୁଅଛି (ଇନ୍ଦ୍ରଜାଲ ବିଦ୍ୟାରେ ଯେପରି ଚକ୍ଷୁବନ୍ଧନ କରି ମିଛକୁ ସତ କରିଦିଅନ୍ତି, ଏ ସେହିପରି ଲୁକାଟାଗଣଙ୍କ ସଙ୍ଗେ ଅଶିଷ୍ଟ ବ୍ୟବହାର କରି ମୁଗ୍ଧା ସ୍ତ୍ରୀ ପାଖେ ନିଜକୁ ସତ ବୋଲି ପ୍ରମାଣିତ କରୁଛି) । (ଅତନୁରଜା) କାମରଜା ଏ ଗୁଣ ଦେଖାଇ (ଅଛି ମୁକୁଳ) ସୁନ୍ଦର ଆମ୍ବ ବଉଳର (କେବଳ କବଳକୁ) ଅର୍ଥାତ୍ ସେ ଏକମାତ୍ର ଆମ୍ବ ବଉଳ ଖାଉଥିବ, ଏହି ପ୍ରକାର ଲେଖାଇ ଖଞ୍ଜା କରିନେଲ୍ଲ । (ଆମ୍ବ ବଉଳ ଖାଇବାକୁ ଇଜାରା ନେଇଛି) ।

୨୯ । ପ୍ରିୟେ ! ଏ (ଅଳିକ) ଭଅଁରକୁ ଦେଖ, ସେ (ସୁମନ ପତ୍ରେ) ଫୁଲ ଉପରେ (ପାଦ ମାରି) ଗୋଇଠା ମାରି (କଳକ) କଢ଼ନାକଟକୁ ଧାଇଁଛି । ହେ ବନ୍ଧୁ ! ଏ (ଅହର୍ନିଶି) ଦିନରାତି (ମଧୁ) ଫୁଲମଦ୍ଦ ପିଇବାରୁ ଏହା ଦେହରେ ଜ୍ଞାନ ନାହିଁ । ଅତଏବ ହେ (ରସସାଗର) ରସନିଧି ! ତୁ (ଅଲଗା ହୋଇ ଆସ) ତା ପାଖରୁ ଦୂରକୁ ଚାଲିଆସ । (ଅବଜ)ପଦ୍ମ ବୋଲି ଆସି ତୋର(ମୁଖ-ଶଶିକୁ) ଚନ୍ଦ୍ରମୁଖକୁ (ବଦାରି ଢାଅଇଟି କି) କାଳେ ବଦାରିଦେବ ।

(ମଧୁପ) ମଦୁଆ ଲୋକେ, (ସୁମନ ପତ୍ରେ) ବିଦ୍ୱାନ୍ ଲୋକ ଉପରେ ଗୋଇଠା ମାରି କଳକରିବା ପାଇଁ ଧାଆଁନ୍ତି । ତାର କାଣ୍ଡଜ୍ଞାନ ନ ଥାଏ । ଆହୁରି ମଧ୍ୟ ମଦ୍ୟପାୟୀ ଲୋକ ସୁଯୌବନା ସ୍ତ୍ରୀକୁ ପରିତ୍ୟାଗ କରି ଅଜାତରଜାର ଅନୁସରଣ କରିବା ଅଜ୍ଞାନତାର ଫଳ ।

ଅପାଙ୍ଗ ଭଙ୍ଗୀରେ କାନ୍ତକୁ ମଧୁରେ
କହନ୍ତ ଅଚଳ—ଦୁଲାଳୀ
ଅନାଅ ବିଟପୀ ପୁଷ୍ପ ଛଳେ ହସି
ତୁମ୍ଭଙ୍କୁ କରୁଛନ୍ତ ଅଳି ।
ଅଳି ନା—ହେ କଳି କରନ୍ତ ମୋ ସଙ୍ଗେ
ଅଟ ଯେ କପର୍ଦ୍ଦୀ ସୁମନସ-ଭୋଗ
କରିବା ହେଉ କି ନା ରଙ୍ଗେ । ୩୦

ଅଟବୀ ଯାକରେ ଲତା ମଧୁଭରେ
ପ୍ରଫୁଲ୍ଲିତ ହୋଇ ଅଛନ୍ତ
ଅଥ ଦ୍ୱିଜବୃନ୍ଦ ମଧୁରେ ଆନନ୍ଦ
ହୋଇ କୋଳାହଳ କରନ୍ତ
ଅଳିଏ—ମଧୁରସରେ ଛନ୍ତ ମାତ୍ତ
ଅଟେ ମଧୁକାଳ ମଧୁପର-ବାଳ
ଏ ମଣ୍ଡଳେ ପୁଣି ନୃପତ୍ତ । ୩୧

---

୩୦ । (ଅଚଳଦୁଲାଳୀ) ପାର୍ବତୀ (ମଧୁରେ) ମଧୁରସ୍ୱରରେ (ଅପାଙ୍ଗଭଙ୍ଗୀରେ) କଟାକ୍ଷରେ କାନ୍ତଙ୍କୁ ଏହିଁ କହୁଛନ୍ତ—ପ୍ରିୟେ ! ଅନାଅ—ଦେଖ (ବିଟପୀ) ବୃକ୍ଷ ଓ କୁଳଟା ସ୍ତ୍ରୀ ପୁଷ୍ପଛଳେ ହସି ତୁମ୍ଭଙ୍କୁ (ଅଳି) ନିବେଦନ କରୁଅଛନ୍ତ, ମୋ' ସଙ୍ଗରେ (ଅଳିନାଦରେ) ଭଅଁର ଦେ ଛଳରେ (କଳି) କଜିଆ କରୁଛନ୍ତ ସପତ୍ନୀ (ଦ୍ୱେଷ ରଖି) । ତୁମ୍ଭେ ତ (କପର୍ଦ୍ଦୀ) ମହାଦେବଙ୍କର ଅପରନାମ, ଅନ୍ୟପକ୍ଷ—ଧନବାନ୍ ଅଟ, ଅତଏବ (ସୁମନସଭୋଗ) ଫୁଲକୁ ଭୋଗ ଅର୍ଥାତ୍ ଆଘ୍ରାଣ କରିବା ହେଉ କି ନା । ଅନ୍ୟପକ୍ଷେ - ତୁମ୍ଭେ ଧନୀଲୋକ ହୋଇଥିବାରୁ ବିଟପୀ ସ୍ତ୍ରୀକୁ (ସୁମନ) ଉତ୍ତମ ମନରେ ସମ୍ଭୋଗ କର । ୩୧ । (ଅଟବୀଯାକରେ) ବନର ସର୍ବାଂଶରେ, ଲତାମାନେ (ମଧୁଭରେ) ପୁଷ୍ପମଧୁର ଆଧିକ୍ୟ ହେତୁ (ଅନ୍ୟପକ୍ଷେ—ଲତା ସଦୃଶୀ ସ୍ତ୍ରୀମାନେ ମଦ୍ୟରେ) ପ୍ରଫୁଲ୍ଲିତ ହୋଇଅଛନ୍ତ । ଦ୍ୱିଜବୃନ୍ଦ—ପକ୍ଷୀମାନେ (ଅନ୍ୟପକ୍ଷେ—ବ୍ରାହ୍ମଣମାନେ), (ମଧୁରେ) ମନୋହର ରବରେ (ଅନ୍ୟପକ୍ଷରେ—ମଦ୍ୟରେ) ଆନନ୍ଦରେ କୋଳାହଳ କରୁଅଛନ୍ତ । (ଅଳିଏ) ଭ୍ରମରମାନେ, (ମଧୁରସରେ) ଫୁଲରସରେ (ଅନ୍ୟକ୍ଷ—ମଧୁରେ—ମଦ୍ୟରେ) ମାତ୍ତଛନ୍ତ । (ମଧୁପରବାଳ) ମଧୁଦୈତ୍ୟର ଶତ୍ରୁ ଶ୍ରୀକୃଷ୍ଣଙ୍କର ପୁତ୍ର (କାମ), (ଅନ୍ୟପକ୍ଷେ ମଧୁପ—ମଦ୍ୟପର ପୁଅ) (ଏ ମଣ୍ଡଳେ) ରାଜ୍ୟରେ (ନୃପତ୍ତ) ରାଜା ।

ଅନୁମାନ ହୋଏ ଏ ଯେଣୁ ପିକା ଏ
ବନରେ ଆଉ ଜାତ ନାହିଁ
ଅଙ୍ଗନାକୁ କୋଳେ ଲୁଚଇ ଏ କାଳେ
ବନେ ଭ୍ରମାଇ ଶୁଣୁଥାଇ
ଅତନୁ—ଦକା ଲଗିଲଣି ମୋହର
ଅଳ୍ପ ପରହାସେ ଏମନ୍ତ ଭାଷି ସେ
ଗୃହାନ୍ତେ କୋଳ କଲେ ହର । ୩୨

ଅନ୍ତ ହେଲା ବନ— ବଧିର ବର୍ଣ୍ଣ ଏ
ଏ ଛାନ୍ଦ ହୃଦାନନ୍ଦ କର
ଅହି-ଅସି-ଅର— ଶୂଳ ଶକ୍ତିଧାର
ଅର୍ଦ୍ଧ-ଶଶାଙ୍କ-ଶୋଭିଶିର
ଅଙ୍ଗନା—ଅଙ୍ଗ, ଅନ୍ତକ ଦୈତ୍ୟ-ଯମ
ଅବମାଶ ବଳ— ଭଦ୍ର ଅଘକାଳୀ—
ଅନ୍ଧାରକୁ ସେ ପୂର୍ଣ୍ଣସୋମ । ୩୩

———

୩୨ । ଏଣୁ ଅନୁମାନ ହେଉଛି, (ଏ ଯେଣୁ) ଏହି ହେତୁରୁ (ଏ ବନେ) ଏହି ବନରେ ଆଉ (ଜାତ) ମାଳତୀଫୁଲ (ଅନ୍ୟପକ୍ଷେ – ବ୍ରାହ୍ମଣାଦି ଜାତି) ନାହିଁ । (ଏକାଳେ) ଏହି ବସନ୍ତ କାଳରେ ଅଙ୍ଗନାକୁ-ସ୍ତ୍ରୀକୁ କୋଳରେ ଲୁଚାଇ (ବନେ) ବନରେ(ଭ୍ରମାଇ)ବୁଲାଇବା ଉଚିତ, ଏହା ଶୁଣୁଥାଇଁ(ଅନ୍ୟପକ୍ଷେ- ଏ'-ବସନ୍ତକାଳ କାଳେ—କୃଷ୍ଣସର୍ପମାନଙ୍କୁ, ଅଙ୍ଗ—ସୁନ୍ଦର ତାକୁ-କୋଳେ—ଜଇହୁଙ୍କା ମଧ୍ୟରେ ଲୁଚାଏ, ଭ୍ରମାଇ—ବୁଲାଏ, ଏହା ଶୁଣୁଥାଇଁ) । ମୋହର,(ଅତନୁଦକା)କାମଭୟ (ଅନ୍ୟପକ୍ଷେ—ଅଧିକ ଭୟ) ଲଗିଲଣି—ଜାତ ହେଲଣି । ୩୩ । ହୃଦାନନ୍ଦକର —ମନର ଆନନ୍ଦ ଦାୟକ, ଅହି—ସର୍ପ, ଅସି—ଖଣ୍ଡା, ଅର—ଚକ୍ର, ଅର୍ଦ୍ଧଶଶାଙ୍କ--ଅର୍ଦ୍ଧଚନ୍ଦ୍ର । ଅଙ୍ଗନାଅଙ୍ଗ—ସ୍ତ୍ରୀ ଯାହାଙ୍କର ଅର୍ଦ୍ଧାଙ୍ଗ । ଅଘକାଳୀ-ଅନ୍ଧାରକୁ—ପାପରୂପ କାଳୀଅନ୍ଧାର'—ଗାଢ଼ (କୃଷ୍ଣବର୍ଣ୍ଣ) ଅନ୍ଧାର ପକ୍ଷେ, ପୂର୍ଣ୍ଣସୋମ—ପୂର୍ଣ୍ଣଚନ୍ଦ୍ର ।

———

# ପଞ୍ଚତ୍ରିଂଶ ଛାନ୍ଦ

ରାଗ—ଭୂପାଳ

ଅଥ ଶୁଣ ହେ ଗୁଣ-ନିପୁଣଗଣ
ଅତି କୁତୁକେ ବର୍ଣ୍ଣନ୍ତି ବେଦନ ଜଣ * । ୧
ଅନୁରାଗ-ଅମ୍ବୁଦ-ସମୟ ପାଇ
ଅହର୍ନିଶି ରତି-ବଲ୍ଲୀ ପଲ୍ଲବଇ । ୨
ଅନ୍ୟୋଽନ୍ୟରେ ଆଶ୍ରିତ ଦୁହିଁଙ୍କ ତନୁ
ଅନିବାରେ ବଢ଼େ ଏଣୁ ଦିନୁ ଦିନୁ । ୩
ଅଙ୍କ-ଆଲବାଳ ପଶି ଶୋଭାପାଏ
ଅଷ୍ଟ ସାତ୍ତ୍ୱିକ-ପିଣ୍ୟାକ ପାଉଥାଏ । ୪
ଅମୃତରୁ ଶୀତ-ବାଣୀ-ପାଣି ପାଇ
ଅଙ୍ଗମ୍ଳାନ ତାପ-ତପ୍ତି ନ ଲଗଇ । ୫
ଅନ୍ତରିତା-ପଶୁ ଜୀବ ତ୍ରାସ-ଭୟେ
ଅନୁକ୍ଷଣେ ଭୁଜଭିଡ଼ା-ବାଡ଼ ଉଟେ । ୬
ଝଞ୍ଜାଭାବ ପଲ୍ଲବନିକରେ ଶୋଭା
ଅବାମତା-କଢ଼ି ; ରତି-ପୁଷ୍ପଗଭା । ୭

---

## ପଞ୍ଚତ୍ରିଂଶ ଛାନ୍ଦ

୧ । ଗୁଣନିପୁଣଗଣ—ଗୁଣିବ୍ୟକ୍ତିମାନେ । ବେଦନଜନ—ଦୁହେଁ । (ଶିବ, ଗୌରୀ) । ୨। ଅନୁରାଗ-ଅମ୍ବୁଦ ସମୟ—ପ୍ରୀତିରୂପକ ବର୍ଷାକାଳ । ଅହର୍ନିଶି—ସର୍ବଦା । ରତିବଲ୍ଲୀ—ରତିରୂପକ ଲତା । ପଲ୍ଲବଇ—ନୂତନ ପତ୍ରରେ ଶୋଭିତ ହୁଏ ।୩। ଅନ୍ୟୋଽନ୍ୟରେ—ପରସ୍ପର । ଅନିବାରେ—ଅବାଧରେ । ୪ । ଅଙ୍କ-ଆଲବାଳ—କୋଡ଼ରୂପ ମନ୍ଦା । ଅଷ୍ଟସାତ୍ତ୍ୱିକ-ସ୍ତମ୍ଭ-ସ୍ୱେଦ, ରୋମାଞ୍ଚ, ସ୍ୱରଭଙ୍ଗ, ବେପଥୁ, ବୈବର୍ଣ୍ଣ୍ୟ, ଅଶ୍ରୁ, ପ୍ରଳୟ (ମୂର୍ଚ୍ଛା) । ପିଣ୍ୟାକ—ପିଡ଼ିଆ ।୫। ଶୀତ—ଥଣ୍ଡା । ବାଣୀପାଣି—ବଚନରୂପ ଜଳ । ଅଙ୍ଗମ୍ଳାନ ତାପତପ୍ତି—କାମସନ୍ତାପର ତେଜ । ନ ଲଗଇ—ବାଧେ ନାହିଁ । ୬ ଅନ୍ତରିତା···ଭୟେ—ବିଚ୍ଛେଦରୂପ ପଶୁ ଖାଇଯିବା ଭୟରେ । ଅନୁକ୍ଷଣେ ସର୍ବଦା । ଭୁଜଭିଡ଼ା—ଆଲିଙ୍ଗନ ରୂପ ବାଡ଼ ଉଣ୍ଠଥାଏ । ୭ । (ଝଞ୍ଜାଭାବ) ନିର୍ମଳ ଭାବ ରୂପ (ପଲ୍ଲବନିକରରେ) ପତ୍ରସମୂହରେ ଶୋଭାପାଏ । (ଅବାମତା) ପ୍ରସନ୍ନଭାବ ରୂପ (କଢ଼ି) ପୁଷ୍ପକଳିକା । ରତିରୂପ (ପୁଷ୍ପଗଭା) ପେନ୍ଥା ।

ଅକ୍ଷି ଆବ୍ଦ ଦକ୍ଷ ମାଳାକାରେ ଜଗି
ଅନ୍ତଃକରଣ ଦେବତା ପୁଷ୍ପ ଭୋଗୀ । ୮
ଅତି ମତ୍ତେ ମନୋଭୃଙ୍ଗ ମଧୁ ଲଭେ
ଅଥ ଦ୍ୱିଜ-ଦ୍ୱିଜେ ଥାନ୍ତି ରସ ରଙ୍ଗେ । ୯
ଅର୍କୋଦୟୁଁ ଉଦୟ ହେବା ଯାଏ
ଅହୋରାତ୍ର ନେତ୍ର ନିମେଷମାତ୍ର ନୋହେ । ୧୦
ଅଶନହିଁ ନ ରୁଚଇ ଖଟେ ମାତି
ଅନ୍ୟ ତପସ୍ୱେ ତପ ଏ ଘେନେ ମତି । ୧୧

ଅପର୍ଣ୍ଣାର ମନୋରଥ ପୂର୍ଣ୍ଣ ହେବ
ଅମରାଳଙ୍କ ଉଦ୍‌ବେଗ ନାଶ ଯିବ । ୧୨

ଅସୁରେଶ ତାରକା ହୋଇବ ହତ
ଅବଶ୍ୟ ତ ଏତେ କଥା ଅପେକ୍ଷା ତ । ୧୩

ଅଷ୍ଟ-ଆଖି ରଖିଛୁ ଏ କର୍ମ ଚିନ୍ତ
ଅଦ୍ରି ନନ୍ଦନୀ ସୁଯୋଗେ ଗର୍ଭବନ୍ତ । ୧୪

ଅର୍ଦ୍ଧଭାର ଅବନୀର ଊଣା ହେଲା
ଅପସର ଇନ୍ଦ୍ର ବସି ନଚ୍ଚଇଲା । ୧୫

ଅଗ୍ନି ତେଜୋବନ୍ତ ରୂପ ପ୍ରକାଶିଲେ
ଅରୁଣଙ୍କି କବଚ ଧାରଣ କଲେ । ୧୬

---

୮ । ଅକ୍ଷ ଆବ୍ଦ—ଚକ୍ଷୁଆବ୍ଦ ଇନ୍ଦ୍ରସ୍ୱରୂପ ମାଳାକାର ମାନେ—ମାଳିମାନେ ତାକୁ ଜଗିଥାନ୍ତି । (ଅନ୍ତଃକରଣ ଦେବତା) ହୃଦରୂପ ଦେବତା ସେ ପୁଷ୍ପକୁ ଭୋଗ କରେ । ୯ । (ଅତିମତ୍ତେ) ଅତି ଉନ୍ମତ୍ତ ହୋଇ ମନରୂପକ (ଭୃଙ୍ଗ) ଭଅଁର ମଧୁପାନ କରୁଛି । (ଦ୍ୱିଜ ଦ୍ୱିଜେ) ଦନ୍ତରୂପ ପକ୍ଷୀମାନେ (ରସ ରଙ୍ଗେ) କ୍ରୀଡ଼ା-କୌତୁକରେ ଥାନ୍ତି । ୧୦ । (ଅର୍କୋଦୟୁଁ) ସୂର୍ଯ୍ୟୋଦୟ କାଳରୁ (ସକାଳୁ) ପୁନର୍ବାର ସକାଳଯାଏ । ଅହୋରାତ୍ର—ଦିନରାତି । ନେତ୍ର—ଆଖି । ନିମେଷମାତ୍ର ନୋହେ—ପଲକ ସୁଦ୍ଧା ପଡ଼େ ନାହିଁ । ୧୧ । ଅଶନହିଁ—ଭୋଜନ ମଧ୍ୟ । ଅନ୍ୟ ତପସ୍ୱୀଙ୍କୁ 'ଏ ତପ'ମନ ଏହିପ୍ରକାରେ ଘେନେ । ୧୨ । ଅପର୍ଣ୍ଣାର—ପାର୍ବତୀର । ମନୋରଥ—ଅଭିଳାଷ । ଅମରାଳଙ୍କ—ଦେବତାମାନଙ୍କର । ୧୩ । ଅସୁରେଶ—ଅସୁର ରାଜା ତାରକାସୁର । ୧୪ । ଅଷ୍ଟ ଆଖି—ବ୍ରହ୍ମା । ଅଦ୍ରି-ନନ୍ଦନୀ—ପାର୍ବତୀ । ୧୫ । ଅବନୀର—ପୃଥିବୀର । ପୂର୍ବରୁ ଦେବତାମାନେ ତାରକାସୁରଦ୍ୱାରା ପୀଡ଼ିତ ହୋଇ ନିସ୍ତେଜ ହୋଇଥିଲେ । ତାହାର ବିନାଶକ କାର୍ତ୍ତିକେୟ ଜନ୍ମହେବାର ସମ୍ଭାବନା ଦେଖି ସେମାନେ ଆନନ୍ଦିତ ହେଲେ ।

ଅତି ଉଦ୍‌ବେଗ ହୋଇଲେ ସାଧୁଜନେ
ଅହିରାଜ ମସ୍ତି ବଦ୍ଧେ ଅଚମନେ । ୧୭
ଅବି ଅଂଶ ଋଷି ମନ ହେଲା ଥୟେ
ଅବକଳଲେ ବସ୍ତୁ ବସି ଲୟେ । ୧୮
ଅତି ଅଭେଦ୍ୟ ତାରକାସୁର-ଗୃହେ
ଅନ୍ତକର ଅପାଙ୍ଗ-ପତନ ହୋଏ । ୧୯
ଅଙ୍ଗନାର ଦକ୍ଷିଣ ନେତ୍ର ତା ସ୍ଫୁରି
ଅତୁଲହିଁ ତା କରକୁ ହେଲା ଘାରି । ୨୦
ଅଷ୍ଟ ଦିଗପାଳେ କଷ୍ଟ ଯିବ ଜାଣି
ଅସୁରଙ୍କ ଆସ୍ୟ ହେଉଗଲା କାଳି । ୨୧
ଅଥ ଦଶମ ମାସ ସମ୍ପୂର୍ଣ୍ଣ ହେଲା
ଅଦ୍ରି-କୁମାରୀ କୁମାର ଜନ୍ମ ହେଲା । ୨୨
ଅନୁସରି ବୃହସ୍ପତି ପୂର୍ବେ ଥିଲେ
ଉଦ୍ର ମାସ ଧନ ଲଗ୍ନେ କୋଷ୍ଠୀ କଲେ । ୨୩
ଅତି ବେଗେ ହରଙ୍କୁ କହନ୍ତି ଯାଇ
ଅବା କେ ପାରିବ ତାଙ୍କ ସୁଖ କହି । ୨୪
ଅୟେ ଅକ୍ଷରକ୍ଷଣ ମୋକ୍ଷଦାତା
ଅନ୍ତ କରି ଭଞ୍ଜରାଜ-ଭବ-ଚିନ୍ତା । ୨୫

———

୧୭ । ଅଚମନେ—ଦୁଃଖିତ ନ ହୋଇ । ଅହିରାଜ—ବାସୁକି । ୧୯ । ଅନ୍ତକର—ଯମର । ଅପାଙ୍ଗ—ଆଡ଼ଦୃଷ୍ଟି । (ତା ଅଙ୍ଗନାର) ତା ସ୍ତ୍ରୀର ଦକ୍ଷିଣ ନେତ୍ର ଫେଡ଼ିଲା । ସ୍ତ୍ରୀମାନଙ୍କର ଡାହାଣ ଅଙ୍ଗ ଅପ୍ରଶସ୍ତ । ୨୦ । ଅତୁଲ—ଖଡ୍ଗ । ୨୧ । ଆସ୍ୟ—ମୁହଁ । ୨୩ । ଉଦ୍ର—ବର୍ଷ । ୨୫ । ଭବଚିନ୍ତା—ପୁନର୍ଜନ୍ମ ବିଷୟକ ଚିନ୍ତା ।

# ଷଟ୍‌ତ୍ରିଂଶ ଛାନ୍ଦ

—୧—

ଅନ୍ଧକରିପୁ-ବପୁ ଭସ୍ମପୁଞ୍ଜେ ଶୋଭା

ଅଧର ସୁନ୍ଦର ହାସେ ଅଧିକ ମୁଖ ବିକାଶେ
ଶରଦ-ସମ୍ପୂର୍ଣ୍ଣ-ଶଶିପ୍ରଭା ସେ । ଘୋଷା ।
ଅସିତକଣ୍ଠ-କୁମାର ଜାତ ଶୁଣି ତୋଷଭର
ଚିତ୍ତ ପ୍ରମୁଦିତ ସୁଖଭରେ
ଅନେକ ଧନ ବ୍ରାହ୍ମଣେ କନକ ରତ୍ନ ଭୂଷଣେ
ଦାନ କଲେ ଅତି ହରଷରେ ସେ । ୧
ଅଯୁତ ଅଯୁତ ପଟ୍ଟ— ଅମ୍ବର ରଜକ ଭୁଠ
ଲୁଟାଇ ଭଣ୍ଡାରୁ ଦେଲେ ଭରି
ଅନ୍ନଦାନ ଜଳସତ୍ର ବିପୁଳ-ଗୃହ ପବିତ୍ର
ଦ୍ୱିଜେ ଦେଲେ ଶତ ଶତ କରି ସେ । ୨
ଐରାବତ ସମାନ ଗଜମାନ ଦେଲେ ଦାନ
ବନ୍ଦୀ ଗୁଣିଗଣ ଗଣକରେ
ଅବନୀ-ଭାଗ ଅନେକ ଦେଲେ ବିପ୍ରେ ମହାବାକ୍ୟ
କରି ଦେଶକାଳପାତ୍ର-ବରେ ସେ । ୩
ଅଣାଇ ବ୍ରହ୍ମଙ୍କୁ ଚର— ବେଗେ ପେଷିଲେ ସତ୍ୱର
ବୈକୁଣ୍ଠ-ଭୁବନେ ବ୍ରହ୍ମବାସେ
ଅମର-ଯକ୍ଷ କିନ୍ନର ଗନ୍ଧର୍ବ ଅସୁର ନର
ନାଗ ଶିଷ୍ଟ ମୁନି ଋଷି ପାଶେ ସେ । ୪
ଅମୂଲ୍ୟ-ରତନ-ବାସ— ମାନଙ୍କେ ମଣ୍ଡାଇ ହାସ
ଗୀତବାଦ୍ୟ ନୃତ୍ୟ କୁତୂହଳେ
ଅଭୀଷ୍ଟ ପୂର୍ଣ୍ଣ ହୋଇଲା ନୃପ ବଳଭଦ୍ର କଲା
ପ୍ରଭୁଙ୍କୁ ଦର୍ଶନ ଏହି କାଳେ ସେ । ୫

---

## ଷଟ୍‌ତ୍ରିଂଶ ଛାନ୍ଦ

୧ । ଶରଦ···ପ୍ରଭା—ଶରତ୍‌କାଳୀନ ପୂର୍ଣ୍ଣିମାଚନ୍ଦ୍ରର କାନ୍ତି ପରି କାନ୍ତିବିଶିଷ୍ଟ । ଅସିତକଣ୍ଠ—ମହାଦେବ । ପଟ୍ଟଅମ୍ବର-ପାଟଲୁଗା । ରଜକ ଭୁଠ-ଧୋବା ଭୁଠ । ଜଳସତ୍ର—ଜଳଛତ୍ର । ବିପୁଳ ଗୃହ—ନୂତନ ଗୃହ କରି ତାହାକୁ ଗୃହସ୍ଥାଳୀର ଯାବତୀୟ ଉପକରଣରେ ପୂର୍ଣ୍ଣ କରି ଦାନ କରାଯାଏ । ବନ୍ଦୀ—ଭାଟ । ଗୁଣିଗଣ—ପଣ୍ଡିତସମୂହ । ଗଣକ—ଜ୍ୟୋତିଷ । ଅବନୀଭାଗ—ଭୂମି । ଚର—ଦୂତ । ବୈକୁଣ୍ଠ ଭୁବନେ-ବିଷ୍ଣୁପୁରକୁ । ବ୍ରହ୍ମ ବାସେ— ବ୍ରହ୍ମଲୋକକୁ । ଅମୂଲ୍ୟ ରତନ-ବାସ-ବହୁମୂଲ୍ୟ ରତ୍ନଖଚିତ ଲୁଗା । ମାନଙ୍କେ-ମାନଙ୍କଦ୍ୱାରା । ଅଭୀଷ୍ଟ—ବାଞ୍ଛା ।

—୨—

ଅନୁଜ୍ଞା ପାଇ ଈଶ୍ୱର-ସ୍ତୁତ

ଅନେକ ଭୁବନେ କଲେ ସଂଚ୍ଚର । ଘୋଷା ।

ଅନନ୍ତ ପୁରକୁ ଚଳିଲେ ହେଳେ । ଅନନ୍ତ-ବାସେ କେ ସମ୍ବାଦ ଦେଇ । ୧
ଅମ୍ବୁଜାସନଙ୍କୁ କହି ଖବର । ଅମୂଲ୍ୟ ଧନ ପାଇଲେ କେ ସ୍ତୁର । ୨
ଅମରବରେ କେ ଜଣାଇଁ ଧାଇଁ । ଅମର ଭବନେ ନେଲା ବଧାଇ । ୩
ଅନେକ ଦେବ ଅସୁର ସ୍ତୁରଣେ । ଅଇଲେ ଦଶଦିଗେ ସ୍ତୁତଗଣେ । ୪
ଅଙ୍ଗବଙ୍ଗେ ତ୍ରାଳ କଳିଙ୍ଗ ଦେଶେ । ଅନୁଷ୍ଠାନେ ବାର୍ତ୍ତା କଲେ ହରଷେ । ୫
ଅବନୀଧବ ବଳଭଦ୍ର ଘୋଷେ । ଉଚ୍ଚେ ବାଜାଇଲେ ସବେ ଢୋଲେ । ୬

—୩—

ଅନ୍ତର୍ଯ୍ୟାମୀ ତ୍ରିପୁରାରି

ଅଷ୍ଟାଙ୍ଗ ରଙ୍ଗେ ତାଙ୍କୁ କୃପା ପୂର୍ଣ୍ଣ କର । ଘୋଷା ।

ଅମରପାଳ ବିବୁଧଜାଳ କମଳବାଳ ଆସିଲେ
ଅହର୍ବିଳାସୀ ଅମୃତରଶ୍ମି ଜୟ ଜୟ ଶିବ ଭଣିଲେ
ଅବ୍ଧିବାସୀ ଧନନିବାସୀ ପ୍ରାଣନାଶୀ ଦରଶୁଆ (?)
ଅନିଳ ଅନଳ ଦେବ ନମି ହେଲେ ଠିଆ । ୧
ଅତ୍ରି କୁମ୍ଭପୁତ୍ର ବଶ୍ୱବାଧ (ବଶ୍ରବାଦ) [?] ଏ ଦାରେ
ଅଙ୍ଗିରା ପୁଲସ୍ତ୍ୟ ମଣ୍ଡିଲେ ମୁଣ୍ଡ ସୁପାଦରେ ।
ଅର୍ଯ୍ୟମା ସେ ବାମଦେବ ଲୋମପାଦ କଶ୍ୟପେ
ଅଇଲେ ନାରଦ ବୀଣା ବାଦ୍ୟ-ଗୀତାଳାପେ । ୨
ଅସୁରସଂଖ୍ୟ ଯକ୍ଷରକ୍ଷକିନ୍ନରାଦି ରାକ୍ଷସେ
ଅଖିଳ-ଘର ଅସୁର ସାର ବୀରବାର-ମୁଖ୍ୟ ସେ ।
ଅବନୀନାଥ ଯୋଡ଼ି ହାଥ (ତ) ମହୀରେ ମାଥ ମାଇଲେ
ଅନୁସରି ଭଞ୍ଜରାଜ ଦଣ୍ଡବତ ହୋଇଲେ । ୩

---

୨ । ଅନୁଜ୍ଞା—ଆଦେଶ । ସଂଚ୍ଚର କଲେ—ଗମନ କଲେ । ଅନନ୍ତପୁରକୁ—ବିଷ୍ଣୁପୁରକୁ । ଅନନ୍ତ ବାସେ-ପାତାଳ ଲୋକରେ । ଅମ୍ବୁଜାସନ—ବ୍ରହ୍ମାଙ୍କୁ । ଅମରବରେ—ଇନ୍ଦ୍ରଙ୍କୁ । ବଧାଇ—ପାରିତୋଷିକ ।

୩ । ଅନ୍ତର୍ଯ୍ୟାମୀ—ସମସ୍ତଙ୍କ ହୃଦୟରେ ଆତ୍ମାରୂପରେ ସ୍ଥିତ । ତ୍ରିପୁରାରି—ଶିବ । ଅମରପାଳ—ଇନ୍ଦ୍ର । ବିବୁଧଜାଳ—ଦେବଗଣ । କମଳବାଳ—ବ୍ରହ୍ମା । ଅହର୍ବିଳାସୀ—ସୂର୍ଯ୍ୟ । ଅମୃତରଶ୍ମି—ଚନ୍ଦ୍ର । ଅବ୍ଧିବାସୀ—ବରୁଣ । ଧନନିବାସୀ—(ଧନଦ) କୁବେର । ପ୍ରାଣନାଶୀ—(ଅନ୍ତକ) ଯମ । ଅନିଳ—ପବନ । ଅନଳ—ଅଗ୍ନି । ନମି—ନମସ୍କାର କରି । କୁମ୍ଭପୁତ୍ର—ଅଗସ୍ତି । ସୁପାଦରେ—ମହାଦେବଙ୍କ ଶ୍ରେଷ୍ଠପାଦରେ । ଅସୁରସାର—ଅସୁରଶ୍ରେଷ୍ଠ । ବୀରବାରମୁଖ୍ୟ—ବୀରସମୂହରେ ପ୍ରଧାନ ।

## ଶ୍ଳୋକ

### [କ] ବୃହସ୍ପତିଃ

ଅକାଳମୃତିହାରକୋ ରଜତ-ଶୈଳ-ସଞ୍ଚାରକଃ
ଅମର୍ତ୍ତ୍ୟଭୟଦାରକଃ ପ୍ରବଳଦୈତ୍ୟସଂହାରକଃ ।
ଅଚିନ୍ତ୍ୟଗୁଣଧାରକଃ ସ୍ୱଜନକୀର୍ତ୍ତିବିସ୍ତାରକଃ
ଅରକ୍ଷଜନତାରକଃ ସ୍ଫୁରତୁ ମେ ସ୍ମରସ୍ମାରକଃ । ※

(ପୃଥ୍ୱୀବୃତ୍ତ)

---

ବୃହସ୍ପତିଃ—ଅକାଳେତି । ଅକାଳମୃତେଃ—ଅସମୟ ମରଣସ୍ୟ ହାରକଃ—ନିବର୍ତ୍ତକଃ । ରଜତମୟେ—ରୌପ୍ୟମୟେ । ଶୈଳେ—କୈଳାସେ ସଞ୍ଚରତି ଇତି ତଉଚେର୍ବୃଣ୍ ବିହରତି ଯଃ ତାଦୃଶଃ । ଅମର୍ତ୍ତ୍ୟାନାଂ—ଦେବାନାଂ ଭୟଂ ବିଦୃଣାତି— ବିନାଶୟତି ତାଦୃଶଃ । ପ୍ରବଳାନାଂ—ଉତ୍କୃଷ୍ଟବଳବତାଂ ଦୈତ୍ୟାନାଂ ସଂହାରକଃ—ବିନାଶକଃ । ଅଚିନ୍ତ୍ୟାନାଂ— ଚିନ୍ତାତୀତାନାଂ ଗୁଣାନାଂ ଧାରକଃ—ଧାରଣକର୍ତ୍ତା । ସ୍ୱଜନାନାଂ—ସ୍ୱାଶ୍ରିତାନାଂ ଭକ୍ତାନାଂ କୀର୍ତ୍ତେଃ—ଯଶସଃ ବିସ୍ତାରକଃ—ପ୍ରଚାରକଃ ଅରକ୍ଷାଣାଂ—ଅଶରଣାନାଂ ଜନାନାଂ—ନରାଣାଂ ତାରକଃ—ଉଦ୍ଧାରକର୍ତ୍ତା । ସ୍ମରଂ—କନ୍ଦର୍ପଂ ସ୍ମାରୟତି—ସ୍ମୃତିଶେଷଭୂତଂ କରୋତି (ବିନାଶୟତି) ଯଃ ତାଦୃଶଃ ଶିବଃ ମେ—ମମସମ୍ବନ୍ଧେ ସ୍ଫୁରତୁ—ବିଳସତୁ ।

ଭାଷା —ଯେ ଅକାଳ ମୃତ୍ୟୁକୁ ଦୂର କରନ୍ତି, ଯେ ରୌପ୍ୟମୟ କୈଳାସ ପର୍ବତରେ ବିହାର କରନ୍ତି, ଯେ ଦେବଗଣଙ୍କର (ଅସୁରଦ୍ୱଜନିତ) ଭୟ ବିନାଶ କରନ୍ତି, ଯେ ବଳବାନ୍ ଦୈତ୍ୟମାନଙ୍କୁ ବିନାଶ କରନ୍ତି, ଅଭାବନୀୟ ଗୁଣସମୂହକୁ ଯେ ଧାରଣ କରିଅଛନ୍ତି, ଯେ ଆଶ୍ରିତଗଣଙ୍କର କୀର୍ତ୍ତିକୁ ବର୍ଦ୍ଧନ କରନ୍ତି, ଯେ ଅଶରଣ ବ୍ୟକ୍ତିର ଉଦ୍ଧାରକ ଓ ଯେ ସ୍ମରକୁ (ବିନାଶ କରି) କେବଳ ସ୍ମୃତିରେ ଅବସ୍ଥାପିତ କରିଅଛନ୍ତି, ସେହି ଶିବ ମୋ (ହୃଦୟରେ) ସ୍ଫୁରିତ ହୁଅନ୍ତୁ ।

※ ଶ୍ରିତ ସ୍ମାରକଃ [ଖ]

[ଖ] ଇନ୍ଦ୍ରସ୍ତୁତିଃ

ଅନ୍ଧକାସୁର-ତମୋଽରୁଣ ପ୍ରଭୋ !
ଅନ୍ତକର୍ତ୍ତି-ନବମ୍ବାରଦାନିଳ ।
ଅଜ୍ଞ-ଦୁଃଖିତଜନାମରଦ୍ରୁମ
ଅଦ୍ୟ ମେ କୁରୁ ଶିବଂ ସଦାଶିବ ! (ରଥୋଦ୍ଧତା)

[ଗ] ଦେବଗଣସ୍ତୁତିଃ

ଅଙ୍କହୀନ-ଭୁବନାଂଶୁମଣ୍ଡନ !
ଅବ୍ଜ-ବନ୍ଦିତ-ପଦାଘଖଣ୍ଡନ !
ଅଚ୍ୟୁତାଦ୍ୟମରବୃନ୍ଦବନ୍ଦନ !
ଅଦ୍ୟ ନୋ ହ୍ୟବ ଶିବାଙ୍ଗଚନ୍ଦନ ! (ରଥୋଦ୍ଧତା)

---

ଇନ୍ଦ୍ରସ୍ତୁତିଃ—ଅନ୍ଧକନାମା ଅସୁର ଏବ ତମଃ—ଅନ୍ଧକାରଃ ତସ୍ୟ ଅରୁଣଃ—ସୂର୍ଯ୍ୟଃ(ନାଶକରଣାତ୍ ସୂର୍ଯ୍ୟରୂପଃ, ତତ୍ସମ୍ବୋଧନଂ)। ଅନ୍ତକକୃତା—ଯମକୃତା ଯା ଅର୍ତ୍ତିଃ—ପୀଡ଼ା ସା ଏବ ନବମ୍ବାରଦଃ—ନୂତନ ମେଘଃ, ତସ୍ୟ ଅନିଳଃ (ଅପସାରଣାତ୍ ବାୟୁସ୍ୱରୂପଃ ତତ୍ସମ୍ବୁଦ୍ଧୌ) । ଅଜ୍ଞାଶ୍ଚ—ଅବୋଧାଂଶ୍ଚ ଦୁଃଖିତାଶ୍ଚ ଯେ ଜନାଃ—ନରାସ୍ତେଷାଂ ଅମରଦ୍ରୁମଃ—କଳ୍ପଦ୍ରୁମଃ—(ବାଞ୍ଛାପୂରକତ୍ୱାତ୍ କଳ୍ପଦ୍ରୁମସ୍ୱରୂପଃ ତତ୍ସମ୍ବୁଦ୍ଧୌ) । ହେ ସଦାଶିବ ! ଅଦ୍ୟ ମେ—ମମ ଶିବଂ—ମଙ୍ଗଳଂ କୁରୁ ।

ଭାଷା —ଅନ୍ଧକାସୁରରୂପ ଅନ୍ଧକାର ବିନାଶନବିଷୟରେ ସୂର୍ଯ୍ୟସ୍ୱରୂପ, ଯମପୀଡ଼ାରୂପ ନୂତନ ମେଘ ଅପସାରଣବିଷୟରେ ବାୟୁସ୍ୱରୂପ ଅଜ୍ଞ ଓ ଦୁଃଖିତ ଜନଙ୍କ ବାଞ୍ଛା ପୂରଣବିଷୟରେ କଳ୍ପଦ୍ରୁମ ସ୍ୱରୂପ ହେ ସଦାଶିବ । ମୋର ମଙ୍ଗଳ ବିଧାନ କର ।

ଦେବଗଣ ସ୍ତୁତିଃ—ଅଙ୍କେନ । ଅଙ୍କେନ—କଳଙ୍କେନ ହୀନଃ—ରହିତଃ ଯଃ ଭୁବନାଂଶୁଃ—ଚନ୍ଦ୍ରଃ ସ ଏବ ମଣ୍ଡନଂ ଯସ୍ୟ ତତ୍ସମ୍ବୋଧନେ । ଅବ୍ଜଂ—ପଦ୍ମଂ ବନ୍ଦିତଂ ଯାଭ୍ୟାଂ ତାଦୃଶୌ ପଦୌ—ଚରଣୌ ଯସ୍ୟ ତତ୍ସମ୍ବୋଧନେ ପଦଶବ୍ଦୋଽକାରାନ୍ତଃ । ଅଘାନି-ପାପାନି ଖଣ୍ଡୟତି—ଛେଦୟତି ଇତି ତାଦୃଶଃ ତତ୍ସମ୍ବୋଧନେ । ଅଚ୍ୟୁତଃ—ବିଷ୍ଣୁଃ ସ ଏବ ଆଦ୍ୟ—ପ୍ରଥମଃ ଯେଷାଂ ତେଷାଂ ଅମରାଣାଂ—ଦେବାନାଂ ବୃନ୍ଦଂ—ସମୂହଃ ତେନ ବନ୍ଦନଂ ଯସ୍ୟ ତତ୍ସମ୍ବୋଧନେ । ଶିବାୟାଃ—ପାର୍ବତ୍ୟାଃ ଅଙ୍ଗସ୍ୟ ଚନ୍ଦନଂ (ତାପହରଣାତ୍) ତତ୍ସ୍ୱରୂପଃ ତତ୍ସମ୍ବୋଧନେ । ନଃ—ଅସ୍ମାନ୍ ଅଦ୍ୟ ହି ଇତି ନିଶ୍ଚୟେ ଅବ—ରକ୍ଷ ।

ଭାଷା—ହେ ନିଷ୍କଳଙ୍କ-ଚନ୍ଦ୍ରମଣ୍ଡିତ, ହେ ପଦ୍ମପାଦ, ହେ ପାପନାଶନ, ହେ ବିଷ୍ଣୁ ପ୍ରଭୃତି ଦେବଗଣବନ୍ଦିତ, ହେ ଶିବାଙ୍କର ଅଙ୍ଗ-ଚନ୍ଦନ, ଅଦ୍ୟ ଆମ୍ଭମାନଙ୍କୁ ରକ୍ଷାକର ।

## [ଘ] ପରମହଂସ ସ୍ତୁତିଃ

ଅଜ୍ଞାନାର୍ଣ୍ଣବମନ୍ଥନାଚଳ ଖଳବ୍ୟାଳୌଘତାର୍କ୍ଷ୍ୟୋପମ !
ଋଷ୍ୟାଦେଃ ପରିପାଳନପ୍ରମୁଦିତ ସ୍ୱର୍ଗାପବର୍ଗପ୍ରଦ !
ଅନ୍ୟାଶା-ରହିତେ କୁକର୍ମ ସହିତେ ତାପତ୍ରୟାର୍ତ୍ତେ ମୟି
ଅବ୍ଜାର୍କାନଳ-ଚିତ୍ର-ନେତ୍ର-ମହିମନ୍ ପ୍ରାକ୍ ସାବଧାନୋ ଭବ ।

ଶାର୍ଦ୍ଦୂଳ ବିକ୍ରୀଡ଼ିତ

---

ପରମହଂସ-ସ୍ତୁତିଃ—ଅଜ୍ଞାନଂ ଏବ ଅର୍ଣ୍ଣବଃ ତସ୍ୟ ମନ୍ଥନାଚଳଃ—ମେରୁଃ ତତ୍ସ୍ୱରୂପଃ ତସ୍ୟ ସମ୍ବୋଧନେ । ଖଳାଃ—ଅସଜ୍ଜନାଃ ଏବ ବ୍ୟାଳାଃ—ସର୍ପାଃ ତେଷାଂ ଓଘଃ ସମୂହଃ ତେଷୁ ତାର୍କ୍ଷ୍ୟୋପମଃ—ଗରୁଡ଼ ସଦୃଶଃ (ବିନାଶକଃ) । ଋଷ୍ୟାଦେଃ—ଋଷିବର୍ଗସ୍ୟ ପରିପାଳନେନ—ପରିରକ୍ଷଣେନ ପ୍ରମୁଦିତଃ ଆନନ୍ଦିତଃ (ତତ୍ସମ୍ବୋଧନେ) । ସ୍ୱର୍ଗଶ୍ଚ ଅପବର୍ଗଃ—ମୋକ୍ଷଃ ତୌ ପ୍ରଦଦାତୀତି, ତତ୍ସମ୍ବୋଧନେ । ଅବ୍ଜଃ—ଚନ୍ଦ୍ରଃ ଅର୍କଃ—ସୂର୍ଯ୍ୟଃ ଅନଳଃ—ଅଗ୍ନିଶ୍ଚ ତୈଃ ଚିତ୍ରଃ—ଆଶ୍ଚର୍ଯ୍ୟଜନକଃ ନେତ୍ରାଣାଂ—ଲୋଚନାନାଂ ମହିମା—ମହତ୍ତ୍ୱଂ ଯସ୍ୟ ତତ୍ସମ୍ବୋଧନେ । ଅନ୍ୟା ଆଶା ତୟା ରହିତେ—ହୀନେ ତଥା କୁତ୍ସିତଂ କର୍ମ ତେନ ସହିତେ—ଯୁକ୍ତେ ତଥା ତାପାନାଂ—ଆଧ୍ୟାତ୍ମିକାଧିଭୌତିକାଧି-ଦୈବିକରୂପାଣାଂ ତ୍ରୟଂ ତେନ ଆର୍ତ୍ତେ—ପୀଡ଼ିତେ ମୟି—ମମ ବିଷୟେ ପ୍ରାକ୍—ସର୍ବାଦୌ ସାବଧାନଃ—ସତର୍କୋ ଭବ ।

ଭାଷା—ହେ ଅଜ୍ଞାନସମୁଦ୍ରର ମନ୍ଥାଚଳ, ଖଳ-ସର୍ପସମୂହଙ୍କ ପକ୍ଷରେ ଗରୁଡ଼ ସଦୃଶ, ଅତ୍ରି ପ୍ରଭୃତି ଋଷିମାନଙ୍କ ପରିପାଳନରେ ଏକାନ୍ତ ଆନନ୍ଦିତ, ହେ ସ୍ୱର୍ଗ ଓ ମୁକ୍ତିର ପ୍ରଦାନକାରି, ହେ ଚନ୍ଦ୍ର, ସୂର୍ଯ୍ୟ ଓ ଅଗ୍ନିଙ୍କଦ୍ୱାରା ବିଚିତ୍ର ନେତ୍ରମହିମାକୁ ଧାରଣ କରୁଥିବା ଶିବ ! ମୁଁ ଅନ୍ୟାଶାରହିତ ଓ କୁକର୍ମଜନିତ ଆଧ୍ୟାତ୍ମିକାଦି ତ୍ରିତାପଗ୍ରସ୍ତ ହୋଇଛି, ମୋ ବିଷୟରେ ସର୍ବାଗ୍ରେ ସାବଧାନ ହେଉନ୍ତୁ ।

[ଙ] ନାରଦ-ସ୍ତୁତିଃ

ଅର୍ଦ୍ଧାଙ୍ଗେ ତବ ମାଧବୋ ରବିସୁଧାରଶ୍ମ୍ୟଗ୍ନୟୋଽକ୍ଷିଷୁ
ଅଙ୍କେ ହୈମବତୀ ଗଳେ ତୁ ଗରଳଂ ମୂର୍ଦ୍ଧ୍ନି ସ୍ଥିତା ସ୍ୱର୍ଣ୍ଣଦୀ ।
ଅଙ୍ଘ୍ରୌ ଦେବଗଣାଶ୍ଚ ପନ୍ନଗଚୟଃ ସର୍ବାଙ୍ଗଦେଶେଷ୍ୱପି
ଅସ୍ଥାନଂ ହର ରକ୍ଷ ମାମଶରଣଂ ଶୂନ୍ୟେଽମଲେ ଚେତସି । (ଶାର୍ଦ୍ଦୂଳବିକ୍ରୀଡିତ)

[ଚ] ବ୍ୟାସସ୍ତୁତିଃ

ଅୟେ ବଟୋ ! ଶିବାପତେ !
ଅନଳ୍ପକଳ୍ମଷଂ ମମ
ଅଶେଷଚାରୁକମ୍ପୟା
ଅରକ୍ଷପକ୍ଷ ! ନଶ୍ୟତାଂ
ପ୍ରମାଣିକା ବା ନଗସ୍ୱରୂପିଣୀ ।

---

ନାରଦ ସ୍ତୁତିଃ—ହେ ହର ! ସର୍ବପାପହାରକ ! ତବ ଅର୍ଦ୍ଧାଙ୍ଗେ—ଅଙ୍ଗସ୍ୟ ଅର୍ଦ୍ଧାଂଶେ, ମାଧବଃ—ବିଷ୍ଣୁଃ (ହରିହରରୂପା ମୂର୍ତ୍ତିରତ୍ର ଲକ୍ଷ୍ୟତେ) ରବିଃ—ସୂର୍ଯ୍ୟଶ୍ଚ ସୁଧାରଶ୍ମି—ଚନ୍ଦ୍ରଶ୍ଚ ଅଗ୍ନିଶ୍ଚ ତେ ତବ ଅକ୍ଷିଷୁ ଲୋଚନେଷୁ ବର୍ତ୍ତନ୍ତେ ଲୋଚନରୂପେଣ ବର୍ତ୍ତନ୍ତେ ଇତ୍ୟର୍ଥଃ । ଅଙ୍କେ—କ୍ରୋଡ଼େ ହୈମବତୀ—ହିମବତଃ କନ୍ୟା, ଗଳେ ଗରଳଂ—ବିଷଂ, ମୂର୍ଦ୍ଧ୍ନି—ମସ୍ତକେ ସ୍ୱର୍ଣ୍ଣଦୀ—ଗଙ୍ଗା ସ୍ଥିତା । ଅଙ୍ଘ୍ରୌ—ଚରଣେ ଦେବଗଣାଶ୍ଚ ବର୍ତ୍ତନ୍ତେ। ପନ୍ନଗଚୟଃ—ସର୍ପସମୂହଃ ସର୍ବାଙ୍ଗଦେଶେଷୁ—ସର୍ବାବୟବେଷୁ ଭୂଷଣାଦିରୂପେଣ ବର୍ତ୍ତନ୍ତେ । ଅସ୍ଥାନଂ—ସ୍ଥାନହୀନଂ ଅଶରଣଂ—ଅରକ୍ଷକଂ ମାଂ ଶୂନ୍ୟେ ଅନ୍ୟୈରଧିକୃତେ ଅମଳେ—ବିମଳେ ଚେତସି—ମନସି । ରକ୍ଷ—ସ୍ଥାପୟ । ଅନ୍ୟୈସ୍ତେ ସର୍ବଂ ଶରୀରଂ ପ୍ରାଗଧିକୃତଂ ସର୍ପବିଷାଦିଭିଃ ଖଳୈରପି ଚରିତ୍ୟାପ୍ତଂ ଚ, ଅତଃ ସ୍ଥାନହୀନଂ ଅନାଥଂ ମାଂ ଅବଶ୍ୟମେବ ଅମଳେ ମନସି ରକ୍ଷିଷ୍ୟସି ଇତି ଭାବଃ ।

ଭାଷା—ହେ ହର ! ଆପଣଙ୍କ ଅଙ୍ଗର ଅର୍ଦ୍ଧଭାଗ ବିଷ୍ଣୁଙ୍କଦ୍ୱାରା ଅଧିକୃତ । ସୂର୍ଯ୍ୟ, ଚନ୍ଦ୍ର ଓ ଅଗ୍ନି ଚକ୍ଷୁ ଅଧିକାର କରିଅଛନ୍ତି । ଅଙ୍କରେ ପାର୍ବତୀ ବିଦ୍ୟମାନା । ଗଳପ୍ରଦେଶ ଗରଳର ବାସସ୍ଥାନ, ମସ୍ତକରେ ଗଙ୍ଗା ଅବସ୍ଥିତା, ସର୍ପମାନେ ସର୍ବାଙ୍ଗର ଭୂଷଣରୂପେ ବିରାଜିତ, ଦେବଗଣ ପାଦମୂଳକୁ ଆଶ୍ରୟ କରିଅଛନ୍ତି । ମୁଁ ଅନାଥ, ସ୍ଥାନହୀନ; ଅତଏବ ମୋତେ (ଅନ୍ୟ ଅବୟବରେ ସ୍ଥାନ ନ ଥିଲେ ସୁଦ୍ଧା) ଶୂନ୍ୟ ଓ ନିର୍ମଳ ହୃଦୟଟିରେ ରକ୍ଷା କରନ୍ତୁ(ସ୍ଥାନ ଦିଅନ୍ତୁ) ।

ବ୍ୟାସ ସ୍ତୁତିଃ—ଅୟେ ବଟୋ ! ସର୍ବବ୍ୟାପିନ୍ ଶିବାପତେ—ପାର୍ବତୀପତେ ! ଅରକ୍ଷପକ୍ଷ—ଅଶରଣାନାଂ ସହାୟ ! ଶିବ ! ଅଶେଷଚାରୁକମ୍ପୟା—ଅପରିମିତୟା କରୁଣୟା ମମ ଅନଳ୍ପକଳ୍ମଷଂ-ବହୁପାପଂ ନଶ୍ୟତାଂ ଭୂୟା ଇତି ଶେଷଃ ।

ଭାଷା—ହେ ସର୍ବବ୍ୟାପିନ୍ ଶିବାପତେ ! ଅଶରଣଶରଣ ଶିବ ! ଅସୀମ କରୁଣାପୂର୍ବକ ମୋର ବହୁପାପ ବିନାଶ କରନ୍ତୁ ।

(ଛ) ଶୁକଦେବ ସ୍ତୁତିଃ

ଅବ୍‌ଜକଳା-ଛବି-ମଣ୍ଡିତ ମସ୍ତ !
ଅନ୍ତକ ଦଣ୍ଡ ବିଖଣ୍ଡ ନଶସ୍ତ !
ଅଙ୍ଗବିହୀନ-ବିନାଶନସୁସ୍ଥ !
ଅଦ୍ୟ ଦୟାଂ କୁରୁ ଲୋକପ୍ରଶସ୍ତ ।

(ଦୋଧକ)

(ଜ) ଅଥର୍ବ ଋଷି ସ୍ତୁତିଃ

ଅୟେ ! ବିଶ୍ୱନାଥ ! ପ୍ରଭୋ ! ଶକ୍ତି ଯୁକ୍ତ !
ଅନାଦ୍ୟନ୍ତମଧ୍ୟ ପ୍ରପଞ୍ଚାତିରିକ୍ତ !
ଅନିଷ୍ଟାନ୍ତକ ! ଶ୍ରେଷ୍ଠଭକ୍ତୈକରକ୍ତ !
ଅଶେଷାମରୌଘାଭିଷେକାଭିଷିକ୍ତ !

---

ଶୁକଦେବ ସ୍ତୁତିଃ—ଅବ୍‌ଜସ୍ୟ ଚନ୍ଦ୍ରସ୍ୟ କଳା ଷୋଡଶଭାଗୈକ ଭାଗଃ ତସ୍ୟାଃ ଛବିଃ କାନ୍ତିଃ ତୟା ମଣ୍ଡିତଂ ମସ୍ତଂ—ମସ୍ତକଂ ଯସ୍ୟ ତତ୍ସମ୍ବୋଧନେ । ଅନ୍ତକସ୍ୟ—ଯମସ୍ୟ ଦଣ୍ଡଃ—ପୀଡ଼ା ତସ୍ୟ ବିଖଣ୍ଡନେ—ବିନାଶନେ ଶସ୍ତଃ—ପ୍ରଶଂସିତଃ, ଦକ୍ଷୋ ବା ତତ୍ସମ୍ବୋଧନେ । ଅଙ୍ଗବିହୀନଃ—ଅନଙ୍ଗଃ, କାମଃ ତସ୍ୟ ବିନାଶନଂ—ନାଶଃ ତେନ ସୁସ୍ଥଃ—ସୁଖୀ ତତ୍ସମ୍ବୋଧନେ । ଲୋକପ୍ରଶସ୍ତ—ଚତୁର୍ଦ୍ଦଶସୁ ବ୍ରହ୍ମାଣ୍ଡେଷୁ ପ୍ରଶଂସିତ ହେ ଦେବ ! ଅଦ୍ୟ ଦୟାଂ କୁରୁ ମୟି ଇତି ଶେଷଃ ।

ଭାଷା—ହେ ଚନ୍ଦ୍ରକଳା ଶୋଭିତ ମସ୍ତକ, ହେ ଯମଦୁଃଖ ବିଖଣ୍ଡନ ଦକ୍ଷ ! ହେ କାମ ବିନାଶନରେ ଆନନ୍ଦିତ, ହେ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡରେ ଖ୍ୟାତ ଶିବ ! ମୋତେ ଦୟାକର ।

ଅଙ୍ଗ ବା ଅଥର୍ବ ସ୍ତୁତିଃ—ଅୟେ ବିଶ୍ୱସ୍ୟ—ଚରାଚରସ୍ୟ ନାଥ—ପ୍ରଭୋ ! ନିଗ୍ରହାନୁଗ୍ରହସମର୍ଥ ! ଶକ୍ତ୍ୟା—ମହାଶକ୍ତ୍ୟା ଯୁକ୍ତଃ ଆଦିଶ୍ଚ ଅନ୍ତଶ୍ଚ ମଧ୍ୟଶ୍ଚ—ଆଦ୍ୟନ୍ତମଧ୍ୟାଃ ତେ ନ ସନ୍ତି ଯସ୍ୟ ତତ୍ସମ୍ବୋଧନେ । ତଥା ପ୍ରପଞ୍ଚାତ୍‌ସୃଷ୍ଟିବିଷୟେଭ୍ୟଃ ଇତ୍ୟର୍ଥଃ ଅତିରିକ୍ତଃ—ଅନ୍ୟଃ ତତ୍ସମ୍ବୋଧନେ । ଅନିଷ୍ଟାନାଂ—ଅମଙ୍ଗଳାନାଂ ଅନ୍ତକଃ ନିବର୍ତ୍ତକଃ ତତ୍ସମ୍ବୋଧନେ । ଶ୍ରେଷ୍ଠା ଯେ ଭକ୍ତାଃ ତେଷୁ ରକ୍ତଃ ଅନୁରକ୍ତଃ ତତ୍ସମ୍ବୋଧନେ । ଅଶେଷାଣାଂ—ଅସଂଖ୍ୟାନାଂ ଅମରାଣାଂ—ଦେବାନାଂ ଓଘଃ—ସମୂହଃ ତସ୍ୟ ଅଭିଷେକଃ(ଭକ୍ତ୍ୟୁପହୃତସ୍ନାନୀୟଜଳଂ)ତେନ ଅଭିଷିକ୍ତଃ—ସ୍ନାତଃ

ଅଚିନ୍ତ୍ୟାପ୍ରମେୟାପ୍ରକାଶାପ୍ରକାର !
ଅୟେ ବିଶ୍ୱରୂପ ! ପ୍ରଚଣ୍ଡାବିତାର !
ଅଧର୍ମାନୁଗପ୍ରାଣହନ୍ତୈକଚୌର !
ଅଘୌଘାକୁଲଂ ରକ୍ଷ କର୍ପୂରଗୌର !

(ଭୁଜଙ୍ଗପ୍ରୟାତ)

[୪] ମୁନିଗଣ ସ୍ତୁତି

ଅକମ୍ପିତ ଭୁବନାଂ ଧୂମଣ୍ଡନ !
ଅବର୍ଜିତ ନିନ୍ଦିତ ପଦାଘ ଖଣ୍ଡନ !
ଅଚ୍ୟୁତାଦ୍ୟମର ବୃନ୍ଦ ବନ୍ଦନ !
ଅଦ୍ୟ ନଃ କୃପୟ ଷଣ୍ମୁଖସ୍ୟନ୍ଦନ !

(ରଥୋଦ୍ଧତା)

---

ତତ୍ସମ୍ବୋଧନେ । ଅଚିନ୍ତ୍ୟ—ଚିନ୍ତାବିଷୟମତିକ୍ରାନ୍ତ ! ଯତୋବାଚୋ ନିବର୍ତ୍ତନ୍ତେ ଅପ୍ରାପ୍ୟମନସା ସହ ଇତିଶ୍ରୁତେଃ । ଅପ୍ରମେୟ—ପ୍ରମାଣୈରଜ୍ଞେୟଃ ଅସାଧ୍ୟମାପ୍ୟ ! ଅପ୍ରକାଶ—ଅବ୍ୟକ୍ତମବସ୍ଥିତ ! ଅପ୍ରକାର—ଅବିକୃତ ! ହେ ପ୍ରଚଣ୍ଡାବିତାର ତମୋଗୁଣମୟତ୍ୱାତ୍ ସଂହାରକରୂପେଣ କଲ୍ପାନ୍ତେ ଅବତୀର୍ଣ୍ଣ ! ଅଧର୍ମଂ ଅନୁଗଚ୍ଛନ୍ତୀତି ତେଷାଂ—ଅଧର୍ମଗ୍ରହଣାମିତ୍ୟର୍ଥଃ ପ୍ରାଣାଏବ ହନ୍ତାନି ତେଷାଂ ଏକଚୌରଃ ପ୍ରଧାନାପହାରକଃ ତତ୍ସମ୍ବୋଧନେ । କର୍ପୂରଇବ ଗୌରଃ—ଧବଳବର୍ଣ୍ଣଃ ତତ୍ସମ୍ବୁଦ୍ଧୌ । ଅଘାନାଂ—ପାପାନାଂ ଓଘଃ—ପ୍ରବାହଃ ତେନ ଆକୁଳଃ—ବ୍ୟାପର୍ଯ୍ୟସ୍ତଃ ତାଦୃଶଂ ମାଂ ରକ୍ଷ—ପାଳୟ ।

ଭାଷା—ହେ ପ୍ରଭୋ ବିଶ୍ୱନାଥ ! ଶକ୍ତ୍ୟାଲିଙ୍ଗିତଦେହ ! ଆଦି, ଅନ୍ତ ଓ ମଧ୍ୟରହିତ ! ଅବିନାଶିନ୍, ଅନିଷ୍ଟଗଜର ଯମ ! ହେ ଶ୍ରେଷ୍ଠଭକ୍ତପ୍ରିୟ ! ଅସଂଖ୍ୟ ଦେବଗଣଙ୍କଦ୍ୱାରା ଅଭ୍ୟର୍ଚ୍ଚିତ ! ହେ କର୍ପୂରଗୌର ! ହେ ଅଚିନ୍ତ୍ୟ ! ଅପ୍ରମେୟ, ଅବ୍ୟକ୍ତ ସ୍ୱରୂପ ! ଅବିକାରିନ୍ ! ହେ ବିଶ୍ୱରୂପରେ ପ୍ରକାଶିତ ! ପ୍ରଚଣ୍ଡାବିତାର (ସଂହାରକରୂପେ କଲ୍ପାନ୍ତରେ ଅବତୀର୍ଣ୍ଣ) ! ଅଧର୍ମିକ ଲୋକ ପ୍ରାଣହର ପ୍ରସିଦ୍ଧ ଚୌରସ୍ୱରୂପ ! ହେ କର୍ପୂର ପରି ଧବଳକାନ୍ତେ ! ଶିବ ! ପାପପ୍ରବାହରେ ମୁଁ ଅସ୍ତବ୍ୟସ୍ତ, ମୋତେ ରକ୍ଷାକର ।

ମୁନିଗଣ ସ୍ତୁତଃ—ପୂର୍ବବତ୍ । ଷଣ୍ମୁଖସ୍ୟନ୍ଦନ—ବୃଷଧ୍ୱଜ ଅଦ୍ୟ ନଃ—ଅସ୍ମାନ୍ କୃପୟ—ଅନୁକମ୍ପସ୍ୱ ।

## [ଙ] ସିଦ୍ଧଗଣ ସ୍ତୁତିଃ

ଅର୍ଦ୍ଧନିଶାଧବ-ମଣ୍ଡିତ ମସ୍ତକ ! ଖଣ୍ଡିତ ତାପ ! ବିଭୋ ତ୍ରିପୁରାରେ
ଅକ୍ଷୟ-ଦାନବ-ମାନବ ପୂଜିତ ଦୀନଜନାଘଭବାମୟହାରେ
ଅନ୍ତକଦଣ୍ଡପ୍ରଚଣ୍ଡ-ବିଖଣ୍ଡନ କୁଣ୍ଡଳିମଣ୍ଡଳକୁଣ୍ଡଳଧାରେ
ଅଦ୍ୟ ମନୋ-ମଧୁପୋଽସ୍ତୁ ନିମଜ୍ଜତୁ ରୁଚିରପଦେ ତବ ସାରସସାରେ ।

---

ସିଦ୍ଧଗଣ ସ୍ତୁତିଃ—ଅର୍ଦ୍ଧଃ ଯୋଽସୌ (ନିଶାୟାଃ ଧବଃ)—ଚନ୍ଦ୍ରଃ ତେନ ମଣ୍ଡିତଂ ମସ୍ତକଂ ଯସ୍ୟ ତତ୍ସମ୍ବୋଧନେ । ଖଣ୍ଡିତାଃ ତାପାଃ ଆଧ୍ୟାତ୍ମିକାଦିରୂପାଃ ଯେନ ତତ୍ସମ୍ବୋଧନେ । ବିଭୋ ସର୍ବବ୍ୟାପିନ୍ ତ୍ରୟାଣାଂ ପୁରାଣାଂ ଅରିଃ ଭେଦକତ୍ୱାତ୍ ଶତ୍ରୁଃ ତତ୍ସମ୍ବୋଧନେ । ନାସ୍ତି କ୍ଷୟୋ ଯସ୍ୟ ତାଦୃଶଃ ତତ୍ସମ୍ବୋଧନେ ଅଥବା ଅସଂଖ୍ୟାର୍ଥସ୍ୟ ଅକ୍ଷୟପଦସ୍ୟ ଦାନବାଦୀନାଂ ବିଶେଷଣତା । ଦାନବାଃ ଅସୁରାଃ ମାନବାଶ୍ଚ ତୈଃ ପୂଜିତଃ ତତ୍ସମ୍ବୋଧନେ ଦୀନାଃ ଦୁର୍ଗତିମାପନ୍ନାଃ ଯେ ଜନାଃ ତେଷାଂ ଅଘାନି ପାପାନି ତଥା ଭବଃ ପୁନଃ ପୁନଃ ଜନ୍ମ ଏବ ଆମୟଃ ରୋଗଃ ତଂ ହରତୀତି ତତ୍ସମ୍ବୋଧନେ ଅନ୍ତକସ୍ୟ ଯମସ୍ୟ ଦଣ୍ଡଃ ତଂ ପ୍ରଚଣ୍ଡଂ ଯଥା ସ୍ୟାତ୍ ତଥା—ଅତି ବେଗେନ ଇତ୍ୟର୍ଥଃ ବିଖଣ୍ଡୟତୀତି ତତ୍ସମ୍ବୋଧନେ । କୁଣ୍ଡଳିନାଂ ସର୍ପାଣାଂ ମଣ୍ଡଳଂ ସମୂହଃ ତେଷାଂ କୁଣ୍ଡଳଂ କୁଣ୍ଡଳିନା ବଳୟାଦି, ତସ୍ୟା-ବେଷ୍ଟନାକୃତିଂ ଧାରୟତୀତି ତସ୍ମିନ୍ ତବ ସାରସାଭ୍ୟାଂ ପଦ୍ମାଭ୍ୟାଂ ସାରେ ଉତ୍କୃଷ୍ଟେ ରୁଚିରେ ମନୋହରେ ପଦେ ଅଦ୍ୟ ନଃ ମନୋମାନସମେବ ମଧୁପଃ ଭ୍ରମରଃ ନିମଜ୍ଜତୁ ଲୀନୋ ଭବତୁ ।

ଭାଷା—ହେ ଅର୍ଦ୍ଧଚନ୍ଦ୍ରମଣ୍ଡିତମସ୍ତକ, ତାପନାଶିନ୍ ! ବିଭୋ ! ତ୍ରିପୁରାରେ ! ଅସଂଖ୍ୟ ଦାନବ ଓ ମାନବଙ୍କଦ୍ୱାରା ପୂଜିତ ! ଦୁର୍ଗତ ଲୋକଙ୍କର ଜନ୍ମାନ୍ତରୀଣ ପାପଜନିତ (କୁଷ୍ଠାଦି) ରୋଗର ବିନାଶକ ! ଯମର ପ୍ରଚଣ୍ଡ-ଦଣ୍ଡ ବିନାଶକାରିନ୍ ; ସର୍ପକୁଣ୍ଡଳଧାରିନ୍ , ହେ ଶିବ, ଆପଣଙ୍କ ପଦ୍ମପରି ସୁନ୍ଦର ଓ ସାରପଦରେ ମୋ ମନଭ୍ରମର ନିମଗ୍ନ ହୋଇଯାଉ ।

### [୫] ଗନ୍ଧବଂଗଣ ସ୍ତୁତିଃ

ଅଭିକ୍ଷକୁଳପାବନ ! ପ୍ରବଳ-ପୁଣ୍ୟକୀର୍ତ୍ତ୍ୟା ଜିତଃ
ଅପାରରସଦୁଗ୍‌ଧଧିର୍ଘଟସୁତାଞ୍ଜଳିସ୍ଥୋଽଭବତ୍
ଅପ୍ୟୁ ଶିବ ! ତବାଶ୍ରିତୋ ରଜତପବଂତସ୍ତଭ ଯ୍ୟାତ୍
ଅତଃ କୃଟଦେଶାନ୍ୱିତଃ ଶିରସି ସଂଶ୍ରିତଶ୍ଚନ୍ଦ୍ରମାଃ

(ପୃଥ୍ୱୀ)

---

ଗନ୍ଧବଂଗଣ ସ୍ତୁତିଃ—ନାସ୍ତି ଇଷା ଯେଷାଂ ତେଷାଂ ଅଗତିକାର୍ଣ୍ଣାଂ କୁଳଂ ସମୂହଃ ତଂ ପାବୟୁଣିତି ତତ୍ସମ୍ବୋଧନେ । ହେ ଅଗତିବୃନ୍ଦ-ପରିତ୍ରାତଃ ତବ ପୁଣ୍ୟା ଅନବଦ୍ୟା ପ୍ରବଳା ସମଧିକା ଯା କୀର୍ତ୍ତିଃ ତୟା (ଧାବଲ୍ୟଗୁଣଯୋଗତ୍) ଅପାରଃ ଅସୀମଃ ରସଃ ଯସ୍ମିନ୍ ତାଦୃଶଃ ଦୁଗ୍‌ଧଧିଃ—କ୍ଷୀରସମୁଦ୍ରଃ ଜିତଃ —ପରଭୂତଃ ସନ୍ (କୀର୍ତ୍ତ୍ୟାଃ ଶୁକ୍ଳତ୍ୱଂ କବିସମୟସିଦ୍ଧଂ) ଘଟସୁତସ୍ୟ ·ଅଗସ୍ତ୍ୟେଃ ଅଞ୍ଜଳୌ କରପୁଟେ ତିଷ୍ଠତୀତି ତାଦୃଶଃ ଅଭବତ୍ । କରତଳଗତଃ ଅଭବତ୍ । ଅଗସ୍ତିଃ କରତଳଗତାନ୍ ସପ୍ତବାରିଧୀନ୍ ପପୌ ଇତି ପୌରାଣିକୀ ବାର୍ତ୍ତା । ତଦ୍ଭୟାତ୍ ତସ୍ୟାଃ କୀର୍ତ୍ତେଃ ଭୟାତ୍ ରଜତପର୍ବତଃ କୈଳାସଃ ତବାଶ୍ରିତଃ ଶରଣଂ ଗତଃ, ଅତଃ ଅସ୍ମାଦେବ କାରଣାତ ଚନ୍ଦ୍ରମାଃ ମନଃଖେଦାତ୍ କୃଶଦଶାନ୍ୱିତଃ କ୍ଷୀଣଶରୀରଃ ତବ ଶିରସି ସଂଶ୍ରିତଃ ସ୍ଥିତଃ ଅଭବତ୍ ।

ଭାଷା—ହେ ଅଶରଣର ପରିତ୍ରାତା ଶିବ ! ଆପଣଙ୍କର ପୁଣ୍ୟମୟ କୀର୍ତ୍ତିର ଧବଳ ଗୁଣରେ ପରାଜିତ ହୋଇ, ଅପାର କ୍ଷୀରସାଗର ଭୟରେ ଅଗସ୍ତିଙ୍କର ଅଞ୍ଜଳିରେ ବାସ କଲା । କୈଳାସ ମଧ୍ୟ ସମାନ ହୋଇ ନ ପାରି ଆପଣଙ୍କୁ ଆଶ୍ରୟ କଲା । ଆଉର ମଧ୍ୟ ଏହି କାରଣରୁ ଚନ୍ଦ୍ର ମନୋବେଦନାରେ ଅତି କ୍ଷୀଣ ହୋଇ, ଆପଣଙ୍କ ମସ୍ତକକୁ ଆଶ୍ରୟ କରିଛି ।

[ଠ] ପିଙ୍ଗଳ ଛନ୍ଦରେ ନାଗସ୍ତୁତି

ଅର୍ଦ୍ଧଶଶିଶୋଭିମୁଣ୍ଡା ବାହନଷଣ୍ଡା କୁଣ୍ଡଳମଣ୍ଡା ପ୍ରଚଣ୍ଡା
ଅରୁଣାନଳନେତ୍ର କାଳକୃତାନ୍ତ ତ୍ରିପୁରହନ୍ତା ଭୟଖଣ୍ଡା,
ଅନନ୍ତାକୁଳହାର ଅଦ୍ରିବିହାର ତ୍ରିଗୁଣଧାର ସୁରସାର
ଅମରପଦବନ୍ଦିତ ଆନନ୍ଦକନ୍ଦ ଶିର୍ଷୋପର ମନ୍ଦାକିନୀଧାର ।

[ଡ] ରକ୍ଷସଗଣ-ସ୍ତୁତିଃ

ଅହି ଜାଳ ମୁଣ୍ଡମାଳୀ ଦିଗବାସ କାଳୀବାଳୀ
ଗଣଭୂତପ୍ରେତମେଳ ଜଟାଗାତ୍ର ଭସ୍ମଧୂଳ
ଅଟେ ନାମ ଯା କପାଳୀ ଗିରିକନ୍ଦରରେ କେଳ
ଅରି ବ୍ୟାଘ୍ରଚର୍ମଚେଲୀ ଜୟ ଜୟ ମଙ୍ଗଳାନୁକୂଳୀ ।

---

ନାଗ ସ୍ତୁତିଃ—ଅର୍ଦ୍ଧଶଶିଶୋଭିମୁଣ୍ଡ—ଯାହାଙ୍କ ମସ୍ତକରେ ଅର୍ଦ୍ଧଚନ୍ଦ୍ର ଶୋଭା ପାଉଛି । ବାହନଷଣ୍ଢ—ଷଣ୍ଢ ଯାହାଙ୍କର ବାହନ । କୁଣ୍ଡଳମୁଣ୍ଡ—ସର୍ପ ଯାହାଙ୍କର ମସ୍ତକରେ ଅଛି । ପ୍ରଚଣ୍ଡ—ଯେ କ୍ରୋଧମୟ । ଅରୁଣାନଳନେତ୍ର—ସୂର୍ଯ୍ୟ ଓ ଅଗ୍ନି ଯାହାଙ୍କର ନେତ୍ର । ତ୍ରିପୁରହନ୍ତା—ଯେ ତ୍ରିପୁରର ଦହନକାରୀ । ଭୟଖଣ୍ଡକ—ଯେ ଭୟକୁ ଖଣ୍ଡନ କରନ୍ତି । ଅନନ୍ତକୁଳହାର—ଅନନ୍ତଙ୍କର, ବାସୁକିଙ୍କର ବଂଶୀୟ ସର୍ପମାନେ ଯାହାଙ୍କର ହାର । ଅଦ୍ରିବିହାରୀ—ଯେ ପର୍ବତରେ କ୍ରୀଡ଼ା କରନ୍ତି । ତ୍ରିଗୁଣଧାରୀ—ଯେ ସତ୍ତ୍ୱ, ରଜଃ ଓ ତମଃ ରୂପ ତିନିଗୁଣକୁ ଧାରଣ କରିଛନ୍ତି ଅଥବା ତ୍ରିଗୁଣ—ତୃତୀୟ ଗୁଣ ଅର୍ଥାତ୍ ତମ ଗୁଣ । ସୁରସାର—ଯେ ଦେବତାମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଅମରପଦବନ୍ଦିତ—ଦେବତାମାନେ ଯାହାଙ୍କର ପଦକୁ ବନ୍ଦନା କରନ୍ତି । ଆନନ୍ଦକନ୍ଦ—ଯେ ଆନନ୍ଦର ମୂଳପିଣ୍ଡ । ଶୀର୍ଷୋପରି ମନ୍ଦାକିନୀ ଧାର—ଯାହାଙ୍କ ମସ୍ତକ ଉପରେ ଗଙ୍ଗାପ୍ରବାହ ବର୍ତ୍ତମାନ । ଏ ସମସ୍ତ ସମ୍ବୋଧନ ପଦ ।

ରକ୍ଷସଗଣ ସ୍ତୁତିଃ—ଅହିଜାଳ—ସର୍ପସମୂହ । ଦିଗବାସ—ଦିଗମ୍ବର । କାଳୀବାଳୀ-କାଳିକା ଯାହାଙ୍କର ସ୍ତ୍ରୀ । ଗାତ୍ରଭସ୍ମଧୂଳ—ଜଟାଭସ୍ମ ଓ ଧୂଳିଯୁକ୍ତ । କପାଳୀ ନାମରେ ଯେ ଖ୍ୟାତ । ଗିରିକନ୍ଦରରେ—ପର୍ବତ ଗୁମ୍ଫାରେ । କେଳ—କ୍ରୀଡ଼ା । ବ୍ୟାଘ୍ରଚର୍ମଚେଲୀ—ଯେ ବାଘଚମଡ଼ାକୁ ଲୁଗାରୂପେ ପିନ୍ଧନ୍ତି ।

[ଡ଼] ଅସୁର-ସ୍ତୁତିଃ (ସୋରଠା)

ଅମ୍ଭଙ୍କେ ନାଥ ତ୍ରିଲୋଚନ ଶଙ୍କର ସମ୍ଭୁ ଦିଗମ୍ବର ଅମ୍ବକେ ପ୍ୟାରେ
ଅମ୍ବର ହୋଇଅଛ ଭୂତ ନଚାଉଛ ଡମ୍ବରୁ ଶୂଳ କପାଳକା ଝ୍ୟାରେ
ଅନ୍ତରଯ୍ୟାମି ସଦାଶିବ ହୋ ତୁମ୍ ଭଲକେ ବାତ୍ ଛପେ ନହିଁ ତୋରେ
ଅମ୍ବୁକଲଖ୍ ଚଢ଼ାଉଁ କରେ ବଖସିସ୍ ମୁନାସିବ୍ ବାସ୍ ହମାରେ

[ଣ] ବଙ୍ଗଦେଶ ସ୍ତୁତି

ଅପର୍ଣ୍ଣା ଦେବୀର୍ ସ୍ୱାମୀ  ତୋମାର୍ ଚରଣେ ଆମି
ଭୂତଭୂତ ସବେ କବେ ହେବ
ଅପାର୍ ଐ ଭବନଦୀ  ତରିବେ ନା ଦେଶ ବୁଦ୍ଧି
ଯଦ୍ୟପି ନା ଦେବେ ଦୟାନାଦ୍ ।
ଅଧର୍ମେର୍ ପଥ ମାତ୍ର  ଧର୍ମମାର୍ଗ ହଲ ଗୁଢ଼
ଚଞ୍ଚଲତେ ଜୀବନ ଚଞ୍ଚଲ
ଅନ୍ତକେର ଦୁତ ଯବେ  ଜଞ୍ଜାଲ କରିବେ ତବେ
ଉଦ୍ଧାରିବେ ତୁମି ଦିଗଚେଲ୍ ।

---

—୪—

ଅମର

ଅସୁର ନର କନ୍ନର

ଅହି ସଙ୍ଗତେ ଯକ୍ଷ ରକ୍ଷସେ ସେ । ଘୋଷା
ଅଶେଷ ସୁଖ-ସିନ୍ଧୁରେ କେ ଭସିଲେ
ଅପାର-ଜନ୍ମ ଅଘ କେତେ ନାଶିଲେ
ଅଜ୍ଞାନ କାହାଠାରୁ ଦୂରେ ପଶିଲେ
ଅଙ୍ଘ୍ରି-ପଦ୍ମରେ କେତେ ହେଲେ ଭ୍ରମର ସେ ଅମର । ୧

---

ଅସୁରଗଣ ସ୍ତୁତିଃ—ଅମ୍ଭଙ୍କେ ନାଥ ପାର୍ବତୀଙ୍କ ସ୍ୱାମୀ ! ବଖସିସ୍—ପୁରସ୍କାର । ମୁନାସିବ—ହକ୍, ଉଚିତ୍ ।

ଗୀତ ୪ । ଅମର—ଦେବତା । ଅହି—ସର୍ପ । ଅଘ—ପାପ । ଅଙ୍ଘ୍ରି ପଦ୍ମ ପାଦପଦ୍ମ । ପଞ୍ଚମୁଖ—ଶିବଙ୍କୁ ପଞ୍ଚାନନ କୁହାଯାଏ । ଅମଳ—ଉଜ୍ଜ୍ୱଳ, ଧବଳ ।

ଅକ୍ଷି ରଖିଛୁ କେହୁ ପଞ୍ଚମୁଖରେ
ଅମଳ ଅଙ୍ଗକୁ ଛୁନ୍ତେ ସୁଖରେ
ଅଗ୍ରେ ପୃଷ୍ଠେ କେ ଛାଇ ଦେଲା ପାଖରେ
ଅନୁସରି କେ ତ଼ାଳେ ଝାଡ଼ ଚାମର ସେ ଅମର । ୨
ଅଷ୍ଟଷଟଭୁବନ-ପତି ହରଷେ
ଅଷ୍ଟଲୋଚନ ଅଦ୍ଧ ଦେବଙ୍କ ପାଶେ
ଅନାଇଁ ଆଜ୍ଞାକଲେ ମଧୁର ହାସେ
ଅଦ୍ୟ ବସା କର ଅନ୍ଧକାରୁମର ସେ ଅମର । ୩
ଅନୁଜ୍ଞା ଘେନି ସର୍ବେ ତୋଷେ ଚଳିଲେ
ଅନୁରୂପ ମନ୍ଦିରେ ଯାଇଁ ମିଳିଲେ
ଅଶନ ଶଯ୍ୟନକୁ ଅବକଳିଲେ
ଅବଶ୍ୟପାଳ ଭଞ୍ଜ ଶିବ ! ପାମର ସେ ଅମର । ୪

———

— ୫ —

ଅନ୍ତଃପୁରୁ ବାହାର ବାହାରେ ଅବକାଶ ଯେ
ଅନାଇ ପ୍ରମଥଗଣ ଆଜ୍ଞା ଦେଲେ ଈଶ ଯେ । ଘୋଷା
ଅଦ୍ୟ ହେବ ତାଣ୍ଡବ-ଉତ୍ସବ ନୃତ୍ୟ ରସ ହେ
ଅଣାଅ ଭଣ୍ଡାରୁଁ ସେ ଭୂଷଣ ବେଶ ବାସ ହେ
ଅଚ୍ୟୁତ ଚତୁରାନନ କେଶବ
ଅମର କିନ୍ନର ଯକ୍ଷ ଗନ୍ଧର୍ବ
ଅସୁର ପନ୍ନଗ ଋଷି ମାନବ
ଅଣାଅ, ଏମାନଙ୍କୁ ବରିଯିବ ହେ । ୧ । ଅନ୍ତଃପୁରୁ

---

ଅଷ୍ଟଷଟଭୁବନ—ଚଉଦଭୁବନ । ଅଷ୍ଟଲୋଚନ—ବ୍ରହ୍ମା । ଅନୁଜ୍ଞା—ଆଦେଶ । ଅଶନ—ଭୋଜନ । ଅବକଳିଲେ—ଗ୍ରହଣ କଲେ । ହେ ଶିବ ! ପାମର—ଅଧମ ।

ଗୀତ ୫—ଅବକାଶ – ଅବସର ନେବା । ବାସ—ଲୁଗା ବା ସୁଗନ୍ଧଦ୍ରବ୍ୟ । ମଣ୍ଡ—ସଜାଅ । ନାଟପୁର—ନାଟ୍ୟମନ୍ଦିର । ପୁରୋଦର—ଗୃହମଧ୍ୟରେ ।

ଅନୁରୂପ ମଣ୍ଡଣିରେ ମନ୍ତ୍ର ନାଟପୁର ହେ
ଅତର ପମର ନୀର ସିଞ୍ଚ ପ୍ରବେଦର ହେ
ଅଶୋକ କୁନ୍ଦ ମଲ୍ଲିକା ଜାଇ ଯୂଇ
ଅବ୍ଜ ଆଦିମାଳା କରଣ ପାଇଁ
ଅଗୁରୁ ଚନ୍ଦନ ଚନ୍ଦ୍ର ମିଶାଇ
ଅଳକେ ଦେବାକୁ ଆଣ ସଜାଇ ହେ । ୨ । ଅନ୍ତପୁରୁ

ଅନୁଆନ ଦାଣ୍ଡରେ ପାହାଡ଼ାମାନ ପାର ହେ
ଅବମରେ ନ ଲଗିବ ଯେମନ୍ତ ପଯୁର ହେ
ଅଷ୍ଟରତ୍ନ ହେମରୂପାଭୂଷଣ
ଅପାର ପ୍ରକାରେ କର ନିର୍ମାଣ
ଅମୂଲ୍ୟ ବସନ କର କରଣ
ଅମରେ ହାଦା ହେବେ ସର୍ବଗଣ ହେ । ୩ । ଅନ୍ତଃପୁରୁ

ଅବିଳମ୍ବେ ପାରିଷଦମାନେ ଚଳିଗଲେ ହେ
ଅନୁଜ୍ଞା ପ୍ରମାଣେ ସର୍ବଦ୍ରବ୍ୟ ସଜାଡ଼ିଲେ ହେ
ଅନ୍ତେ ବ୍ରହ୍ମା ଋଷି ଛନ୍ଦ ଦେବେ
ଅର୍ଚ୍ଚନା କରି ଯଥାବିଧି ପୂର୍ବେ
ଅଗ୍ରେ କହନ୍ତି ସମର୍ପ୍ୟାଦଶ୍ଚେ,
ଅକମ୍ପିତ ବଳଭଦ୍ର ଘଟେ ହେ । ୪ । ଅନ୍ତପୁରୁ...

—୭—

## ଚୂର୍ଣ୍ଣିକା

ଅୟେ ଦେବମହର୍ଷି-ଗନ୍ଧର୍ବ-କିନ୍ନର-ରକ୍ଷୋସୁର-ନାଗ-ନରଗଣାଃ !
ଅଦ୍ୟ ତ୍ରୈଲୋକ୍ୟୈକ-ନାୟକ-ମହାମହିମାଳୟ-ମହେଶ୍ୱରସ୍ୟ

---

ଅବ୍ଜ—ପଦ୍ମ । ଚନ୍ଦ୍ର—କର୍ପୂର । ଅଳକେ—କପାଳରେ । ପାହାଡ଼ା—ଆଭରଣ । ପାର—ବସ୍ତୁଅ ।

୭ । ଚୂର୍ଣ୍ଣିକା—ହେ ଦେବ, ମହର୍ଷି, ଗନ୍ଧର୍ବ, କିନ୍ନର, ରାକ୍ଷସ, ଅସୁର, ନାଗ ଓ ନରମାନେ, ଅଦ୍ୟ ତିନିଲୋକର ଏକମାତ୍ର ଅଧୀଶ୍ୱର ମହାମହିମାଶାଳୀ ମହେଶ୍ୱରଙ୍କର ଅଷ୍ଟଭୁବନ-ପୂଜିତ ତାଣ୍ଡବ ନୃତ୍ୟ ହେବ । ଅତଏବ ଯେଉଁମାନେ

ଅଷ୍ଟଭୁଜନ ବନ୍ଦମାପୁରାଣ ବନୃତ୍ୟକୌତୁକଂ ଉଢଷ୍ୟନ୍ତି ।
ଅସ୍ୟୋପଯୋଗି-ଚତୁର୍ବିଧ-ବାଦ୍ୟ-ରାଗାନୁଲାପ-ଗୀତ ଗାୟନ-
ସ୍ୱରକମ୍ପନାଙ୍ଗଭଙ୍ଗ୍ୟାଦି-ବନ୍ଦୋକ୍ତ-ପରିହାସ-ପରିଭାଷା କଥନାଦି-
କାର୍ଯ୍ୟେଷୁ କୁଶଳାଃ ସନ୍ତ୍ୟେତେଽତରେଣ ହ୍ୟସ୍ୟାଜ୍ଞୟାଽଗଚ୍ଛନ୍ତୁ ।

———

—୨—

ଅମନ୍ଦେ ଅମନ୍ଦେ ଅମନ୍ଦେ (ଅମନ୍ଦେ ଅମନ୍ଦେ)
ଅନୁଜ୍ଞା କଲେ ଈଶ୍ୱର ଆସ ସୁରବୃନ୍ଦେ । ଘୋଷା
ଅଚ୍ୟୁତ ହେ ଦେବଦେବ    ଅଚିରେ ବିଜୟ ହେବ
କରେ କରତାଳ ଥିବ, ଶିବ-ନାଟବନ୍ଧେ । ୧
ଅମ୍ବୁଜାସନ ହେ ସନ—    ମାନେ ହର ଆଜ୍ଞା ଘେନ
ମର୍ଦ୍ଦଳ ଘେନି ବହନ, ଚଳିବ ସାନନ୍ଦେ । ୨
ଅୟେ ଋଷିଗଣଶଶୀ !    ଆଜ୍ଞା କଲେ କାଶୀବାସୀ
ଆସିବା ହେବ ସୁବୀଣା, ବାଦ୍ୟଘେନି କନ୍ଧେ । ୩
ଅପସରୀ ଯକ୍ଷଗଣ    କିନ୍ନର ସାରସ୍ୱରଣ
ଚଳ ଯେ ଯାହା ଭୂଷଣ, ବାଦନ ନିବନ୍ଧେ । ୪
ଅର୍ମିରତ୍ନନ୍ନରପୁଞ୍ଜି    ପଛେ ବଳଭଦ୍ର ଭଞ୍ଜ
ନମସ୍କାର କଲି କଞ୍ଜମୁଖ-ପଦଦ୍ୱନ୍ଦ୍ୱେ । ୫

—*—

ଏହି ନୃତ୍ୟର ଉପଯୋଗୀ ଚତୁର୍ବିଧବାଦ୍ୟ ରାଗର ଆଳାପ ଗୀତ ଗାନ ସ୍ୱରକମ୍ପନ ଅଙ୍ଗଭଙ୍ଗୀ ପ୍ରଭୃତିରେ ଓ ବନ୍ଦୋକ୍ତି ପରିହାସ ପରିଭାଷା ପ୍ରଭୃତି କହିବାରେ ନିପୁଣ, ସେମାନେ ମହାଦେବଙ୍କ ଅଜ୍ଞା ପ୍ରମାଣେ ଅତିଶୀଘ୍ର ଆଗମନ କରନ୍ତୁ ।

ଗୀତ ୨ । ଅମନ୍ଦେ—ଶୀଘ୍ର । ସୁରବୃନ୍ଦେ—ଦେବତାମାନେ । ଅଚ୍ୟୁତ—ବିଷ୍ଣୁ । ଅଚିରେ—ଶୀଘ୍ର । ଅମ୍ବୁଜାସନ—ବ୍ରହ୍ମା । କାଶୀବାସୀ—ଶିବ । ବାଦନ-ନିବନ୍ଧେ—ବାଦ୍ୟଯନ୍ତ୍ରାଦି ସହିତ । କଞ୍ଜମୁଖ-ପଦଦ୍ୱନ୍ଦ୍ୱେ—ଶିବଙ୍କର ପାଦଦ୍ୱୟରେ ।

—୮—

ଅତନୁ-ନାଶି-ଅଙ୍କାଶୁଣି ସକଳ ଭୁବନବାସୀ
ଅଙ୍ଗରେ ଧରି ରଙ୍ଗ କୁତୁକ ସଙ୍ଗତ ରସବଶି । ଘୋଷା
ଅଚ୍ୟୁତ ଅରବିନ୍ଦ କୁମର     ଅନେକ-ନୟନ ଆଦି ଅମର
ଶିବର ନବର ଦେଶର ପରିବେଶ ସଙ୍ଗେ ଆସି । ୧
ଅତି ତରଳିତ ନାଦ-କଳିତ     ମର୍ଦ୍ଦଳରବ ମଧୁର ଲଳିତ
ବେଣୁ ବଂଶୀ ବୀଣାସ୍ୱନ, ରାଗ ଉତ୍କଟ ଭାଷି । ୨
ଅବ୍ଜ-ଖଣ୍ଡ-ମଣ୍ଡନ-ଶିର     ତାଣ୍ଡବ-ନଟ-ମଣ୍ଡଳପୂର
ମିଳି ଖଣ୍ଡିଲେ ଭଞ୍ଜିବାର କାଳଦଣ୍ଡ-ଫାସି । ୩

—*—

—୯—

ରାଗ — ନାଟ
ତାଳ — ଜସାର

ଅମ୍ବାଧବ ରଚୟନ୍ତି ତାଣ୍ଡବନାଟ ପ୍ରକଟ କୌତୁକ ହେ । ଘୋଷା
କଳ୍ପ ଉତ୍କଟ ଜନିତ ଆନନ
ହସ୍ତକଗତି ମସ୍ତକ ଘୂଳନ
ଧ୍ୱସ୍ତ କରଇ ଧୃତି ପଦସ୍ଖଳନ
ନେତ୍ରପଲକକାରକ ହେ । ୧
ଅଙ୍ଘ୍ରିପର ନୂପୁର ରୁଣୁଝୁଣ
ବାଜତ କଟି କିଙ୍କିଣୀ ଠଣ ଠଣ
ଫୁ ଫୁ ଧ୍ୱନି ଭାଷତି ସନ୍ତତ
ଭୂଷଣ ଫଣିନାୟକ ହେ । ୨
ଅଷ୍ଟନୟନ ମର୍ଦ୍ଦଳ ତରଳିତ
ତାଧା ଧିଗି ଧିଗ୍ କୃତ ଧୁଧୁଙ୍ଗନଧାନ୍ଦିତ
ଧା ନ୍ଦିତ ଧା ନ୍ଦିତ ଧେଧେ
ଥେ ତଥୈଇ କତ ହେ । ୩

---

ଗୀତ ୮ । ଅତନୁନାଶୀ—ଶିବ । ରଙ୍ଗ କୁତୁକ—ନୃତ୍ୟ ବିଷୟକ କୌତୂହଳ । ଅବ୍ଜଖଣ୍ଡମଣ୍ଡନଶିର—ଶିରରେ ଅର୍ଦ୍ଧଚନ୍ଦ୍ରକୁ ଧାରଣ କରିଥିବା ଶିବ ।

ଗୀତ ୯ । ହସ୍ତକ ଗତି—ଅଭିନୟକାଳୀନ ହସ୍ତାଦିର ଭଙ୍ଗୀ । ଅମ୍ବୁଧିବର—ବରୁଣ । ନାକଭୁବନନାୟକ—ଇନ୍ଦ୍ର ।

ଅତ୍ୟୁଦ୍ଧ କରତାଳ ଝୁଂ ଝୁଂ କୃତ
ଝୁଂ ଝୁଂ ନଝୁଂ କୃତ ଝୁଂ କୃତ
ନା ଦେ ବର୍ଦ୍ଧ-ଚରଣ-ପ୍ରସୃତ
ଉଦ୍ଧୃତଗତ ନାଦକ ହେ । ୪

ଅଗ୍ରେ ମିଳ ବାଓ୍ଵତ ନାରଦ ବୀଣା
ସ ରି ଗ ମ ପ ଧ ନି ପ ଧ ସା
ଧପ ପଧ ନିଧ ଧପ ଧଂ ମତ
ବନା ଥେଇ ବାଦକ ହେ । ୫

ଅମ୍ବୁଧିବର ବେଣୁ ବଜାଓ୍ଵତ
ଭୁମ୍ବୁ ରୁ ଋଷି ଭୁମ୍ବୁରୁ ବାଓ୍ଵତ
ନାକ-ଭୁବନ-ନାୟକ ଅମୃତ
କିନ୍ନରଗଣ ଗାୟକ ହେ । ୬

ଅମୃତମୟ ସଙ୍ଗୀତ-ସାଗର
ତାଣ୍ଡବ ନଟ ମନ୍ଥନ-ମନ୍ଦର
ରାଜନ ବଳଭଦ୍ର ଭୃମାଦର
ଶାନ୍ତ ଚରିତ ଘବୁକ ହେ । ୭

—୧୦—

(ଆଡ଼ା) ଅଙ୍ଗମାନ ଅଚେତନ କମ୍ପମାନ ତ
ଅଷ୍ଟ ସାତ୍ତ୍ୱିକ-ଲକ୍ଷିତ । ଘେଷା

ଅପୂର୍ବ ତାଣ୍ଡବରଙ୍ଗ ଦେଖି ସର୍ବ ଲୋକେ ହେଲେ ମୋହିତ
ଅମୃତକିରଣ ଯୋଗେ ଯଥା ଚନ୍ଦ୍ରକାନ୍ତ-ମଣି ଦ୍ରବିତ । ୧

ଅମର ସମାନ ଦେଖି ହେଲେ ଦାନବାଦ୍ଧ ମାନବାଳି ସହିତ
ଅବମାନନଙ୍କ ପରି ହେଲେ ନାକବାସୀ ଆଶ୍ରେ କରି ମଗ୍ନ ତ । ୨

---

ଗୀତ ୧୦ । ଅମୃତକିରଣଯୋଗେ—ଚନ୍ଦ୍ରଙ୍କର ଅମୃତମୟ କିରଣ ପଡ଼ିଲେ । ଦ୍ରବିତ—ତରଳିତ ହୁଏ । ମାନବାଳି—ମନୁଷ୍ୟଗଣ । ଲୋକେଶ—ବ୍ରହ୍ମା । ଶ୍ରମଗ୍ଳପିତ—ଶ୍ରାନ୍ତ । ଅଚଳା—ପୃଥିବୀ ।

ଅମୂଧର କାଳ ହରି ରଙ୍ଗସ୍ଥଳ ହେଲା ଆନନ୍ଦାଶ୍ରୁ ବର୍ଷିତ
ଅଙ୍ଗୁ ସ୍ୱେଦବୃଷ୍ଟି ନୀପ ଫୁଲ ଫୁଟି ଅଛି ଯା ଫୁଲଙ୍କେ ଦେଖି ତ । ୩
ଅଜୀବ ପରାଇ କେ ଗଲନି ରହି କେ ହୋଇ ପ୍ରଳାପ ସହିତ
ଅନେକ ସାନନ୍ଦେ ନାଚ ନାଚି ନନ୍ଦେ ମନେ ତା କେ ଯେନି ଅନ୍ୱିତ । ୪
ଅଚ୍ୟୁତ ଲୋକେଶ ଇନ୍ଦ୍ରାଦି ଅବଶ ହେଲେ ହୋଇ ଶ୍ରମ-ଗୁଞ୍ଜିତ
ଅଚଳା ନ ସହି ଭଞ୍ଜିବାର କଷ୍ଟ ଏଣୁ ହେଲେ ରସ-ରଞ୍ଜିତ । ୫

———

—୧୧—

ଅଥ ପ୍ରମଥନାଥୁଁ ସୁର ନର ନାଗ ଋଷି ଯକ୍ଷ ମୁନି ରାକ୍ଷସ ମେଳଣି ହୋଇ
ଅଚଳବର ଦ୍ୱାର ଦଣ୍ଡି ଯାଚକ ହିରଣ୍ୟ ହୟ ହସ୍ତୀ ପଟ୍ଟ ପଟ୍ଟଳ-ବସ୍ତ୍ର
ଭୂଷଣ ପାଇ । ଘୋଷା
ଅଖିଳଜନତାତ ଅଶହାତ ବଜ୍ରହାତରେ ପ୍ରେମ
ଆଶ୍ଲେଷ କଲ ଗୌରୀ ଥାଇଁ
ଅବ୍ଜଜ-ଭବେ ଭାବଭର ଭାଷା ଭାଷି ହସି ଇନ୍ଦ୍ରଙ୍କୁ
ସାନ୍ଦ୍ର ପ୍ରୀତି ନେହେ ସ୍ନେହିଁ । ୧
ଅମରଗଣ କଣକୁ ଜଣ ଶାଢ଼ୀ ସଜ ଆଭରଣ
ମାଳ ନିର୍ମାଲ୍ୟ ଅନୁରୂପେ ନେଇ
ଅସୁରେ ଧନ ରତନ ଚୀର ରୁଚିର ହୟ
ହାର-ବର ହରଷେ ହର ହର ଦଉ କଲେ ଚଉ ମୋହ । ୨
ଅତି ଭକତ ବ୍ୟକ୍ତ ଅନୁରାଗ ଅନୁରକ୍ତ ପରଭକ୍ତ—
ଜନେ ମୁକ୍ତି ପଦ ଦେଲେ ଫେଇ

---

ଗୀତ ୧୧ । ହିରଣ୍ୟ—ସୁନା । ହୟ—ଘୋଡ଼ା । ପଟ୍ଟ—ଲୁଗା । ଅଶହାତ—ଚନ୍ଦ୍ରଧର, ଶମ୍ଭୁ । ବଜ୍ରହାତ—ଇନ୍ଦ୍ର । ଆଶ୍ଲେଷ—ଆଲିଙ୍ଗନ । ଅବ୍ଜଜଭବେ— ବ୍ରହ୍ମାଙ୍କଠାରେ । ସାନ୍ଦ୍ର—ଗାଢ଼ । ନିର୍ମାଲ୍ୟ— ଶିବଙ୍କଗୃହୀତ ମାଲ୍ୟାଦି (ଛଡ଼ାଫୁଲ) । ଅଦଉ କଲ୍ୟାଣ—'ନାହିଁସ୍ତୁ ହୋଇଥାଅ' ଏହି ପ୍ରକାର ଆଶୀର୍ବାଦ ।

———

ଅମିତ ପ୍ରୀତି ଆଦରରେ ଅତର କଲ୍ୟାଣ କରି
ଯୋଗୀ ଯତି ମୁନି ଋଷି ମେଲଣି ଦେଇ । ୩
ଅଘରେ ଅନ୍ନ ଆନ କରି ଦାନ ଅବଧାନ କରି
ମାନବରମାନଙ୍କ ମେଲଣି ଦଳ୍ପ
ଅବ୍‌ଜମୁଖ ଅବ୍‌ଜତନୁ ଅବ୍‌ଜ-ପାଦ ତଳରେ
ଅନୁଦରତ ବଳଭଦ୍ର ଭୂପ ଚିତ୍ତ ଥୋଇ । ୪

---

# ସପ୍ତତ୍ରିଂଶ ଛାନ୍ଦ

ଅଥାନ୍ତେ ଗୁଣନିପୁଣଗଣେ ଶୁଣ
ଅବଧ୍ନେ ହେଲା ସୁତ ନାମକରଣ । ୧
ଅନ୍ତ ଶିଶିର ତୁଅନ୍ତେ ଯେଉଁ ଆଶେ (?)
ଅଟବୀଦ୍ୟୁତି ବଜେ ପ୍ରତିଦିବସେ । ୨
ଅଙ୍ଗତରଙ୍ଗ-ଶୋଭା ପ୍ରଭା ବାଭବ
ଅଦେ ଅଦେ ବୃଦ୍ଧି ବଳବୀର୍ଯ୍ୟ ଭବ । ୩
ଅରୁଣୋଦୟ କୁମୁଦ ପରି ଶୀର୍ଣ୍ଣ
ଅଜ୍ଞାନ ଅବବେକ ମୁଗ୍‌ଧ ବଧାନ । ୪

---

## ସପ୍ତତ୍ରିଂଶ ଛାନ୍ଦ

୧ । ଅଥାନ୍ତେ—ଏହାପରେ । ଗୁଣନିପୁଣଗଣ—ଗୁଣିବ୍ୟକ୍ତିମାନେ । ୨ । ଯେଉଁପରି ଆଶେ—ଯେଉଁ (ଶିଶିର ଋତୁ ଗ୍ଲଲଗଲେ ଯେପରି) । ଅଟବୀଦ୍ୟୁତି—ବନର କାନ୍ତି (ବସନ୍ତ ଋତୁ ସମାଗମ ହେତୁ ବନଶୋଭା ପ୍ରତିଦିନ ବଢ଼େ) । ୩ । ଅଙ୍ଗତରଙ୍ଗଶୋଭା— ଶରୀରର ଶୋଭାତରଙ୍ଗ । ପ୍ରଭା—ତେଜ । ବାଭବ—ପ୍ରଭାବ ଅଦେ ଅଦେ—ଦିନକୁ ଦିନ । ୪ । ଅରୁଣୋଦୟ କୁମୁଦ—ପ୍ରାତଃକାଳର କଇଁପରି ଶୀର୍ଣ୍ଣ, ହୀନତେଜ । ମୁଗ୍‌ଧ ବଧାନ—ମୂର୍ଖତା ।

ଅମ୍ବୁଜବତ ବକଣିତ ସମସ୍ତ
ଅସ୍ତ୍ରଶସ୍ତ୍ରବିଦ୍ୟା ସଙ୍ଗୀତ ସାହିତ୍ୟ । ୫
ଅମ୍ବୁଦ ପ୍ରବଳ ବୃଷ୍ଟି ଜଳ ପରି
ଅନେକ ମଣ୍ଡଳେ ଯଶଃ ଗଲା ପୂରି । ୬
ଅନଳ୍ପକତ ଦାନେ ବହୁ ଘଟ ଗୁଣୀ
ଅଶେଷ ଆଶିଷ ସୂକ୍ତବାକ୍ୟ ଭଣି । ୭
ଅସ୍ତ୍ର-ତେଜେ ଅସ୍ତ ବଶିଲେ ଦ୍ୟୁମଣି
ଅନଳପ୍ରଭା ଘଜଲ ପ୍ରଭା ଜାଣି । ୮
ଅବ୍ଜସମ୍ଭବ ସମ୍ଭାବନା କରନ୍ତି
ଅଶନିଧର ଆଦ ଅନୁସରନ୍ତି । ୯
ଅସିତକଣ୍ଠ ବାହନ ଚମତ୍କାର
ଅହମାନେ ଭ୍ରମି ଆସନ୍ତି ପସାର । ୧୦
ଅସ୍ତ୍ର ଧରି ଅଗ୍ରେ ରକ୍ଷା ହେବା ପାଇଁ
ଅରହ ଯେବେ ସ୍ୱକୁଳେ କେହି ନାହିଁ । ୧୧
ଅଶନି-ତ୍ରିଶୂଳ-ଚକ୍ର ତେଜ ଜିଣି
ଅମ୍ବୁଜାସନ ଶକତ ଦେଲେ ଆଣି । ୧୨
ଅନେକ ଯୁଗକଳ୍ପାନ୍ତ ହେଲେ ଶେଷ
ଅନ୍ୟଥା ନୋହେ ଯା କୁମାର ବୟସ । ୧୩
ଅଷ୍ଟାଦଶ ଜୟ କଲେ ବାହୁବଳେ
ଅଜେୟ ନାହିଁ ସ୍ୱର୍ଗ ମର୍ତ୍ତ୍ୟ ପାତାଳେ । ୧୪
ଅତି ଉଗ୍ରକର୍ମା ତାରକ ଅସୁର
ଅମରବଳ ଉପରେ ଯାର କଙ୍କର । ୧୫

---

୫ । ଅମ୍ବୁଜବନ୍ତ—ଚନ୍ଦ୍ରପରି । ୬ । ବର୍ଷାକାଳର ବୃଷ୍ଟି ଜଳ ପରି ଅନେକ ଦେଶରେ ଯଶଃ ପୂରିଗଲା ।୭। ଅନଳ୍ପକତଦାନେ—ଅସାଧାରଣ ଦାନ କରିବାରୁ । ୮ । ଦ୍ୟୁମଣି—ସୂର୍ଯ୍ୟ । ୯ । ଅବ୍ଜସମ୍ଭବ—ବ୍ରହ୍ମା । ଅମ୍ଭାବନା କରନ୍ତି—ପୂଜା କରନ୍ତି । ଅଶନିଧର—ଇନ୍ଦ୍ର । ଅନୁସରନ୍ତି—ପଛରେ ଭୃତ୍ୟ ପରି ଗୋଡ଼ାନ୍ତି । ୧୦ । ଅସିତକଣ୍ଠ—ମୟୂର । ଅହମାନେ—ଜନକ ଭିତରେ । ୧୧ । ଅରହ—ଯୋଗ୍ୟ । ୧୨ । ଅଶନି—ବଜ୍ର (ଇନ୍ଦ୍ରଙ୍କ ଅସ୍ତ୍ର) । ତ୍ରିଶୂଳ ଶିବଙ୍କ ଅସ୍ତ୍ର । ଚକ୍ର—ବିଷ୍ଣୁଙ୍କ ଅସ୍ତ୍ର । ଅମ୍ବୁଜାସନ—ବ୍ରହ୍ମା । ୧୫ । ଉଗ୍ରକର୍ମା—କ୍ରୂରକାର୍ଯ୍ୟ କରୁଥିବା । ଅମରବଳ—ଦେବତାମାନେ ।

ଅନର୍ଥ ତା' ଉପଦ୍ରବ ଗର୍ବ ଶୁଣି
ଅମରଷରେ ବାହାର ଶକ୍ତିପାଣି । ୧୬
ଅନ୍ତକେ ଅଛନ୍ତି ନିଜ ପାର୍ଶ୍ୱ ବଳ
ଅନ୍ତକବଚ ଉଦ୍ଧଙ୍କର ପ୍ରବଳ । ୧୭
ଅସୁର-ନକର-ପାଶେ ପରବେଶ
ଅର ଅରଷ୍ଟ ବୀରବାଦ୍ୟ ପ୍ରକାଶ । ୧୮
ଅନ୍ୱସଜ ନାଗେଶ୍ୱର ବାଦ୍ୟେ ଯଥା
ଅଚରେ ଧାଇଁଲେ ଦୈତ୍ୟ କ୍ରୋଧେ ତଥା । ୧୯
ଅଶନି ସମ ଶସ୍ତ୍ର କଲେ ପ୍ରହାର
ଅକଳିତ ରଣ ତ୍ରୈଲୋକ୍ୟ-ବାହାର । ୨୦
ଅନ୍ଧାର ହେଲା ବନ୍ଧାରେ କାଣ୍ଡ କାଣ୍ଡ
ଅନ୍ୟୋଽନ୍ୟ ଯୁଦ୍ଧରେ କମ୍ପିଲା ବ୍ରହ୍ମାଣ୍ଡ । ୨୧

ଅକାଳେ ପ୍ରଳୟ କାଳ ହେଲା କିବା
ଅଦ୍ଭୁତ କର୍ମେ ସଭୟ ଦେବଦେବା । ୨୨
ଅନିର୍ବଚନୀୟ ହୋଇଲା ତୁମୁଳ
ଅନ୍ତକ୍ରୋଧେ ହେଲେ ନୀଳକଣ୍ଠ-ବାଳ । ୨୩
ଅର୍କ ତେଜଃପୁଞ୍ଜ-ଧର ଶକ୍ତିଧାରୀ
ଅନ୍ତକୁ ବେଗେ ଫିଙ୍ଗିଲେ ଶକ୍ତି ଧରି । ୨୪
ଅଚଳେ କୁଳିଶପାତ ହେଲା ପ୍ରାୟେ
ଅସୁର ଅଙ୍ଗରେ ଭେଦ ପ୍ରାଣ ନିଏ । ୨୫
ଅନ୍ତଚକ୍ରି କର ଦୂର ଗଲେ ଯଥା
ଅଙ୍ଗ ହୋଏ ମଗ୍ନ ଧୂଖୀ ହେଲା ତଥା । ୨୬

---

୧୬ । ଅମରଷରେ—କ୍ରୋଧରେ (ସହି ନ ପାରି) । ଶକ୍ତିପାଣି—କାର୍ତ୍ତିକେୟ ।
୧୭ । ଅନ୍ତକବଚ—ଯମପରି । ୧୮ । ଅର-ଅରଷ୍ଟ—ଶତ୍ରୁର ଅନିଷ୍ଟ କରି ।
୧୯ । ନାଗେଶ୍ୱର ବାଦ୍ୟ—ଏକପ୍ରକାର ବାଦ୍ୟ । ୨୩ । ଅନିର୍ବଚନୀୟ—
ଅକଳନ୍ତ । ନୀଳକଣ୍ଠବାଳ—ଶିବପୁତ୍ର କାର୍ତ୍ତିକେୟ । ୨୪ । ଅର୍କତେଜଃପୁଞ୍ଜଧର—
ସୂର୍ଯ୍ୟପରି ତେଜସ୍ୱୀ । ୨୫ । ଅଚଳେ—ପର୍ବତରେ । କୁଳିଶପାତ—ବଜ୍ରପତନ ।
୨୬ । ଅନ୍ତଚକ୍ରି କର—ସୂର୍ଯ୍ୟ ।

ଅର୍କ ତାପିତ ଦେହେ ଯଥା ଚନ୍ଦନ
ଅମରାଳିଙ୍କର ତଥା ହେଲା ମନ । ୨୭
ଅତ୍ର ଜୟତୂରୀ ବଜାଇ ଆନନ୍ଦେ
ଅଇଲେ ଲେଉଟି କୈଳାସକୁ ସ୍କନ୍ଦେ । ୨୮
ଅଭୟେ କଲେ ସୁରେ ସ୍ୱଚ୍ଛେ ବିହାର
ଅନିଷ୍ଟ ଶଙ୍କା ଭୟ ନାହିଁ କାହାର । ୨୯
ଅଳ୍ପ-ଲ୍ପନା ବୁଝଇ ଏ ଚରିତ
ଅତିକଷ୍ଟେ ଉଚେ କେନ୍ଦୁଝର-ନାଥ । ୩୦

---

## ଅଷ୍ଟତ୍ରିଂଶ ଛାନ୍ଦ

ରାଗ—ବଙ୍ଗଳାଶ୍ରୀ

ଶୃଙ୍ଖଳା ମଧ୍ୟ ଯମକ

ଅମ୍ବିକା ବିଳାସ ରସ ସାଭିଳାଷ
ହୋଇ ସଜ୍ଜନେ ପିଅନ୍ତୁ
ଅନ୍ତର ବାହାରେ କଳୁଷ ବାହାରେ
କେବଳ ଚିତ୍ତ ଦିଅନ୍ତୁ । ୧
ଅନ୍ତକ-ଉଦର— ଦରଶନ-ଦର
ଏଥୁଁ ନୁହନ୍ତା ନିଯୂତ
ଅତରକିତରେ ଅତଥ୍ୟ ଗୀତରେ
ମାତି ଦିନ ନ ଯାଅ ତ । ୨

---

୨୭ । ଅମରାଳି—ଦେବତାଗଣଙ୍କର । ୨୮ । ସ୍କନ୍ଦ—କାର୍ତ୍ତିକେୟ ।

---

### ଅଷ୍ଟତ୍ରିଂଶ ଛାନ୍ଦ

୧ । ସାଭିଳାଷ—ଆଗ୍ରହଯୁକ୍ତ । ପିଅନ୍ତୁ—ପାନକରନ୍ତୁ । ଅନ୍ତର—ଭିତର (ମାନସିକ) । ବାହାରେ (କାୟିକ) । କଳୁଷ ବାହାରେ—ପାପବ୍ୟତୀତ ଅନ୍ୟତ୍ର ଅର୍ଥାତ୍ ପୁଣ୍ୟରେ । ଅନ୍ତକ-ଉଦର-ଦରଶନ-ଦର ଯମର ଗର୍ଭ ଦେଖିବା ଭୟ । ନିଯୂତ—ନିଶ୍ଚିତ । ଅତରକିତରେ—ତର୍କଣା ନ କରି । ଅତଥ୍ୟ—ଅସାର । ନ ଯାଅ ତ—ଯାଅ ନାହିଁ ।

ଅତଃପର କାହିଁ ସାର ଜୀବିକା ହିଁ
ସଂସାରରେ ନାକ ଅଛି
ଅଚ୍ଛିନ୍ନ ପରମ— ଆନନ୍ଦରେ ରମ
ବିଷୟ କରିଦିଅ "ଛି" । ୩

ଅଛି କି ଏ ଜୀବ ବୋଲି ଏ ଯେ ଯିବ
ଅପ୍ରମାଣ ଏହା ଅଂଶ
ଅଶକତ କାଳ ଜାଣି ଆସି କାଳ—
ଦୂତ ଘୋଟିବେ ଶହଶ' । ୪

ଅସମର୍ଥ ହେବ ବୋଲିବାକୁ ହେବ
ବୈକୁଣ୍ଠ ନରକ-ଅରି
ଅଶ୍ରୁଧର-ରସ ବିନା ଘୋର ରସ—
ସିନ୍ଧୁ କେ ଯିବ ପହଁରି । ୫

ଅରିଷ୍ଟ ଈଦୃଶ ନୋହୁ ଜ୍ଞାନ-ଦୃଶ
ଯେସନ ଦେଖ ନୁହ ଅନ୍ଧ
ଅନ୍ଧକନାଶନ— ବାମାକୁ ପ୍ରସନ୍ନ
କର ନାଥ ଦିନଅଧ । ୬

---

୩ । ଅତଃପର—ଏହାଠାରୁ ବଳି । ସାର—ଶ୍ରେଷ୍ଠ । ଜୀବିକା—ଜୀବନ କଟାଇବାର ଉପାୟ । ଅଚ୍ଛିନ୍ନ ପରମାନନ୍ଦ-ଅଖଣ୍ଡ ଭଗବଦ୍ ବିଷୟକ ଆନନ୍ଦ । ରମ—ଆସକ୍ତ ହୁଅ । ବିଷୟ—ଭୋଗବିଳାସାଦିକୁ 'ଛିଃ' କରିଦିଅ ।

୪ । 'ଏ ଜୀବ ଅଛି' ଏହା ବୋଲି କି ? ଅର୍ଥାତ୍ ଏ ଜୀବ ଅଛି, ଅତଏବ ରହିଥିବ, ଏପରି କହୁଅଛ କି ? ଏ ଯେ ଯିବ, ତାହାର ନାମ ଜୀବ (ଯିବ), ଅତଏବ ତାହାର ଯିବାହିଁ ସ୍ୱଭାବ । ଅଶକତ କାଳ—ଅକ୍ଷମତା ବେଳ । କାଳଦୂତ —ଯମଦୂତ । ଶହଶ'—ଶହ ଶହ ହୋଇ (ଅସଂଖ୍ୟ) । ୫ । ସେତେବେଳେ ତୁମ୍ଭେ ଅସମର୍ଥ ହେବ, ଅର୍ଥାତ୍ ତାକୁ ବାରଣ କରିବାକୁ ତୁମର କ୍ଷମତା ନଥିବ । ଅତଏବ 'ହେ ବୈକୁଣ୍ଠ' ! 'ହେ ନରକାରି' ଇତ୍ୟାଦି କହିବାକୁ ପଡ଼ିବ । ଅଶ୍ରୁଧରରସ—ବିଷ୍ଣୁଭକ୍ତି । ଘୋର—ଭୟାନକ । ରସସିନ୍ଧୁ—ଅନୁରାଗ ସିନ୍ଧୁ (ମମତା ରୂପକ ସମୁଦ୍ର) କିଏ ପହଁରି ପାରିହେବ ? ୬ । ଅରିଷ୍ଟ—ଦୁର୍ଦ୍ଦଶା । ଈଦୃଶ—ଏ ପ୍ରକାର । ନୋହୁ—ନ ହେଉ । ଜ୍ଞାନଦୃଶ ଯେସନ—ଜ୍ଞାନନେତ୍ରଦ୍ୱାରା ଦେଖ, ଅନ୍ଧ ହୁଅ ନାହିଁ । ଅନ୍ଧକନାଶନ-ବାମାକୁ—ଶିବଙ୍କ ଗୃହିଣୀ ଦୁର୍ଗାଙ୍କୁ । ପ୍ରସନ୍ନ କର—ସନ୍ତୁଷ୍ଟ କର । ଅଧ—ଅବଶିଷ୍ଟ ଦିନ କଟାଅ ।

ଅଧମୋଦ୍ଧାରିଣୀ ପତିତତାରିଣୀ
ଅରିଷ୍ଟ-ମୂଷିକ-ଅହି
ଅହିତ ସୁହିତ ଯାହାର ନାହିଁ ତ
ନାହିଁ ପାପ ପୁଣ୍ୟ ହିଁ । ୭

ଅହିମକରଣ ଅମୃତ-କିରଣ
ଅନଳ-ଅମ୍ବକ ଅକ୍ଷ
ଅକ୍ଷର-କାରଣ ଅରକ୍ଷ-ଶରଣ
ସଂସାର-ସ୍ୟନ୍ଦନ-ଅକ୍ଷ । ୮

ଅକ୍ଷରମାନଙ୍କ— ର ମୂଳ ଜନକ
ନାହିଁ ଯା ସଂଖ୍ୟାକୁ ଅଙ୍କ
ଅଙ୍କରେ ସ୍ନେହର— ଭରେ ରହନ୍ତି ହର—
ଷରେ ଯେ ହର ବିଅଙ୍କ । ୯

ଅଙ୍କ ପରି କଳା କେଶପରେ କଳା—
କରେ ଶୋଭା ସୁଧା-ଅଂଶୁ ;

---

୭ । ଅଧମୋଦ୍ଧାରିଣୀ—ଅଜ୍ଞାନମାନଙ୍କର ପରିତ୍ରାଣକାରିଣୀ । ପତିତତାରିଣୀ—ପାପାଦିଦ୍ୱାରା ସନ୍ମାର୍ଗଚ୍ୟୁତ ବ୍ୟକ୍ତିଙ୍କର ପରିତ୍ରାଣକାରିଣୀ । ଅରିଷ୍ଟ-ମୂଷିକ ଅହି—ଦୁର୍ଦ୍ଦଶାରୂପ ମୂଷାମାନଙ୍କୁ ନାଶ କରିବା ବିଷୟରେ ସର୍ପ ସଦୃଶ ଅଟନ୍ତି । ଯାହାର (ଅହିତ) ଶତ୍ରୁ (ସୁହିତ) ମିତ୍ର, ପାପ ପୁଣ୍ୟ କିଛି ନାହିଁ ।

୮—୯ । ଯେ (ଅହିମକରଣ) ସୂର୍ଯ୍ୟ (ଅମୃତକିରଣ) ଚନ୍ଦ୍ର, (ଅନଳ) ଅଗ୍ନି (ଅମ୍ବକ) ରୂପ (ଅକ୍ଷି) ଲୋଚନ ବିଶିଷ୍ଟ, ଓ (ଅକ୍ଷର କାରଣ) ଅବିନାଶୀ ଓ ଜଗତର ମୂଳ କାରଣ (ଅରକ୍ଷଶରଣ) ଅଗତିର ଗତି ସଂସାର ରୂପ (ସ୍ୟନ୍ଦନର) ରଥର (ଅକ୍ଷ) ଅକ୍ଷ ଏବଂ ଯେ (ଅକ୍ଷରମାନଙ୍କର) ବେଦ ବ୍ରହ୍ମ ବର୍ଣ୍ଣମାତୃକାର (ମୂଳଜନକ) ପ୍ରଥମ ସୃଷ୍ଟିକର୍ତ୍ତ୍ରୀ, ଯାହାର ସଂଖ୍ୟାକୁ ଅଙ୍କ ନାହିଁ । ଅର୍ଥାତ୍ ଯେ ସର୍ବରୂପରେ ବିଦ୍ୟମାନ ଥିବାରୁ ଗଣନାକରି ହୁଅନ୍ତି ନାହିଁ । ଏହି ପ୍ରକାର (ହର ବିଅଙ୍କ) ହରନାମକ ଦେବତାଙ୍କର (ଅଙ୍କରେ) କୋଳରେ ସ୍ନେହରେ ରତ ହୋଇ ଯେ (ଦୁର୍ଗା) ଅଛନ୍ତି । ୧୦ । (ଅଙ୍କ) କଳଙ୍କ, କଜ୍ଜଳ ପରି କଳାବର୍ଣ୍ଣ କେଶ ଉପରେ (କଳାକରେ) ଏକ କଳାରୂପରେ (ସୁଧାଅଂଶୁ) ଚନ୍ଦ୍ର ଶୋଭା ପାଉଅଛନ୍ତି । ଅଂଶୁକେ—ବସ୍ତ୍ରଦ୍ୱାରା, ବିଲୋଭନ—ମନୋହର, ଅଙ୍ଗ, ଶୋଭିନ—ସୁନ୍ଦର । ଅଞ୍ଚଳ—ପଣତ, ଅଂଶୁ—କାନ୍ତି ।

ଅଂଶୁକେ ଶୋଭନ ଅଙ୍ଗ କ ଲେଭନ
ଅଞ୍ଚଳ ଖଚିତ୍ତ ଅଂଶୁ । ୧୦

ଅଂଶୁକେ ସକଳ ସୁରଙ୍କର କୁଳ
ନିତ୍ୟ କରନ୍ତି ଅଙ୍ଗ
ଅଙ୍ଗନା-ଜଗତ୍ତ ଜାଣେ ନେତ୍ରଗତ
ଆଶ୍ରଯ୍ୟେ ନାହିଁ ଯା ଅଙ୍ଗ । ୧୧

ଅଙ୍ଗଦ-ପ୍ରକର କରେ ଶୋଭାକର
ଶ୍ରୀମୁଖ ସୁନ୍ଦର ଅତି
ଅତିଶମି ନର— କରୁ ପାପିନର
ଯା ଦେଖି ମୁକ୍ତ ହୁଅନ୍ତି । ୧୨

ଅନ୍ତକେ ଯାହାର ଅଛନ୍ତି ବିହାର—
ଆଶେ ଅନୁସର ଅଜ
ଅଜପାମନ୍ତରେ ତନ୍ତ୍ରାଦି ଯନ୍ତରେ
ଭଜନ୍ତି ଯାହାକୁ ଅଜ । ୧୩

---

୧୧ । (ଅଂଶୁକେ) ଗୋଟିଏ କିରଣ ରେଖାରେ ଅଥବା ଅଂଶକରେ (ସକଳ ସୁରଙ୍କର କୁଳ) ଦେବତାମାନେ (ନିତ୍ୟ) ସର୍ବଦା (ଅଙ୍ଗ କରନ୍ତି) ଶରୀର ରକ୍ଷା କରନ୍ତି । ଯାହାର (ନେତ୍ରଗତ) ଆଖିର ଭଙ୍ଗୀ (ଅଙ୍ଗନା-ଜଗତ୍ତ) ସ୍ତ୍ରୀ ସୃଷ୍ଟିକୁ (ଜାଣେ) ଜଣୁଛି, ଯାହାର ଯେଉଁ ଚକ୍ଷୁଭଙ୍ଗୀର (ଆଶ୍ରଯ୍ୟେ) ଆଧାର ହେବା ପାଇଁ ଅଙ୍ଗ ଅପର କାହାକୁ (ଆଶ୍ରଯ୍ୟେ) ଆଶ୍ରୟ କର ନାହିଁ, ଅର୍ଥାତ୍ ଏପରି ଚକ୍ଷୁଭଙ୍ଗୀ ଆଉ କାହାରଠାରେ ଦେଖାଯାଏ ନାହିଁ ।

୧୨ । ଅଙ୍ଗଦ-ପ୍ରକର—କଙ୍କଣସମୂହ । କରରେ—ହସ୍ତରେ । ଶୋଭାକର —ସୁନ୍ଦର । ଶ୍ରୀମୁଖ ଅତି ସୁନ୍ଦର । (ଯା) ଯେଉଁ ଶ୍ରୀମୁଖ ଦେଖି, (ପାପିନର) ପାପିଲୋକ ନରକରୁ ମୁକ୍ତ ହୁଅନ୍ତି ।

୧୩ । ଯାହାଙ୍କର (ଅନ୍ତକରେ) ନିକଟରେ (ବିହାର ଆଶେ) କ୍ରୀଡ଼ା ଉଦ୍ଦେଶ୍ୟରେ (ଅଜ) ଶିବ ଅନୁସର ଅଛନ୍ତି । (ଅଜ) ବ୍ରହ୍ମା (ଅଜପା ମନ୍ତରେ) (ହଂ ସଃ) ମନ୍ତ୍ରରେ ତନ୍ତ୍ରମନ୍ତ୍ରାଦିରେ ଯାହାଙ୍କୁ ଭଜନ କରନ୍ତି ।

ଅଯତ୍ନ ତାଙ୍କର ସେବାରେ ନ କର
ମୂଢ଼ ମନ ଅନ୍ତଅନ୍ତ
ଅନ୍ତସମୟକୁ ଅନ୍ତକ-ଭୟକୁ
ସେ'ଟି ବୋଲେ ଉଦ୍ଧାରନାଥ । ୧୪

---

# ଊନଚତ୍ୱାରିଂଶ ଛାନ୍ଦ

## ଭାଗବତ ବୃତ୍ତ

| | | |
|---|---|---|
| ଅନ୍ତଃକରଣ କର ଶାନ୍ତ | ଅଥ ଶୁଣ ହେ ସୁପଣ୍ଡିତ । | ୧ |
| ଅମ୍ବିକା ବିଳାସ କବିତ୍ୱ | ଅବିଚ୍ଛେଦ୍ୟ ହେଲା ସମାପତ । | ୨ |
| ଅନ୍ତର୍ଗତ ମୋ ତୃପ୍ତ ନୁହେଁ | ଅପେକ୍ଷା ଏଥି କିଛି ରହେ । | ୩ |
| ଅମୂଲ୍ୟ ଦେବତା ଦେଉଳ | ଅଟ୍ଟାଳୀ ସରଃ ପୁର କୂଳ । | ୪ |
| ଅମାନେ ହେଲେ ଏ ନିର୍ମିତ | ଅବଶ୍ୟ ହେଲେ ପ୍ରତିଷ୍ଠିତ । | ୫ |
| ଅନ୍ତଃକରଣ ହୁଏ ସିଦ୍ଧ | ଅଖିଳେ ହୁଏ ସେ ପ୍ରସିଦ୍ଧ । | ୬ |
| ଅତଃ କାରଣୁଁ ଏ ମୋ ଗୀତ | ଅଟେ ସୁବର୍ଣ୍ଣପୁର ଘର । | ୭ |

---

୧୪ । ରେ ମୂଢ଼ ମନ (ତାଙ୍କର) ସେହି ଜଗନ୍ନାଥଙ୍କର ସେବାରେ ଅଯତ୍ନ କର ନାହିଁ । (ଅନ୍ତ ସମୟକୁ) ଶେଷ କାଳକୁ (ଅନ୍ତକ ଭୟକୁ) ଯମଭୟକୁ (ସେଟି) ଏକମାତ୍ର ଉଦ୍ଧାର ଉପାୟ ।

---

## ଊନଚତ୍ୱାରିଂଶ ଛାନ୍ଦ

୧ । ଅନ୍ତଃକରଣ—ମନ । ୩ । ଅନ୍ତର୍ଗତ—ଅନ୍ତଃକରଣ ।

୪-୬ । ଉତ୍କୃଷ୍ଟ ଦେବମନ୍ଦିର, ବଗିଚା, ପୋଖରୀ, ନଗର, ଗୃହ ଏମାନେ ଅସଂଖ୍ୟ ଭାବେ ନିର୍ମିତ ହେଲେ ଅବଶ୍ୟ ପ୍ରତିଷ୍ଠା କରାଯାଏ । ତଦ୍ଦ୍ୱାରା କର୍ତ୍ତାର ମନ ପବିତ୍ର ହୁଏ । ସେ ଜଗତରେ ପ୍ରସିଦ୍ଧ ହୁଏ । ୭। ଏଣୁ ମୋର ଏ ଗୀତ ମୋର ସ୍ୱର୍ଣ୍ଣନିର୍ମିତ ଗୃହପରି ଅଟେ । ଅତଏବ ବର୍ତ୍ତମାନ ଏହାର ପ୍ରତିଷ୍ଠା କରାଯାଉ ।

| | | |
|---|---|---|
| ଅମ୍ବିକା-ସଂକଳ୍ପ ଉଚ୍ଚାରି | ଅବସ୍ଥି ଆଦ୍ୟ ଶୁଭ କରି । | ୮ |
| ଅନେକ ଖମ୍ବ—ରଗବାଣୀ | ଅଥ ବସିଚ୍ଛି ପଦ—ଶ୍ରେଣୀ । | ୯ |
| ଅକ୍ଷରମାନେ ରୁଅଳ୍ପ | ଅନୁପ୍ରାସାଦ ଓଗ୍ରମ୍ଳ । | ୧୦ |
| ଅନ୍ତବନସ୍ଥ ଯେ ଗୁଳ | ଅଭଙ୍ଗ ଶ୍ଳେଷ ଟେଣ୍ଟାଗ୍ରଜ । | ୧୧ |
| ଅନ୍ତର କମମାନେ ଛଳ | ଅଟେ କି ଏସି ଦୃଷ୍ଟକୁଳ ? | ୧୨ |
| ଅନୁଲୋମାଦ ଚଉବନ୍ଧ | ଅଟେ ସେ ପିଞ୍ଜୁଳା-ଝବନ୍ଧ । | ୧୩ |
| ଅସ୍ପୃଷ୍ଟ ଭଙ୍ଗୀ ଛନ୍ଦ ବୃତ୍ତ | ଅଚ୍ଛିଦ୍ର ଲତା ନନ୍ଦାବ୍ରତ ? | ୧୪ |
| ଅକ୍ଷର ସ୍ୱର ମିନ ବତା | ଅର୍ଥ ଯେ ଗଣ୍ଡି ପାଟସୂତା । | ୧୫ |
| ଅଳଙ୍କାରାଦ କାବ୍ୟସ୍ତ | ଅସମ ଚାନର ଦୂଂସ୍ତ । | ୧୬ |
| ଅସ୍ଥ ଯେ ଏକ ସ୍ପୃଷ୍ଟ ରସ | ଅଗାର ଭକ୍ତି ସେ ପ୍ରକାଶ । | ୧୭ |
| ଅତ ସୁରସ ପଦ ଗୁଣ | ଅନଳାୟନ ସେ ଟି ଜାଣ । | ୧୮ |
| ଅନେକ ଅର୍ଥ ଦଦ କଷ୍ଟ | ଅସନ୍ଧ କୋଲପ କବାଟ । | ୧୯ |
| ଅମ୍ବୁ ଜୋଦସ୍ଥ ସୁମନସ | ଅହଂସା ଯଶଃ ସୁପ୍ରକାଶ । | ୨୦ |
| ଅମଳ ଗୁଣାଦ ଲକ୍ଷଣ | ଅଟେ ସେ ସୌଧ-ଶୋଭା ଜାଣ । | ୨୧ |
| ଅନ୍ତ ଲେପିତ ପୁର ଧର | ଅଟେ ଏ ପୁସ୍ତକ ପାଟେର । | ୨୨ |
| ଅନେକ ଦ୍ରବ୍ୟ ଦେଇ କରି | ଅବଦ୍ଧେ ଚୋଳଚ୍ଛି ଏ ପୁରୀ । | ୨୩ |
| ଅନ୍ତଃକରଣ ସୁକାଞ୍ଚନ | ଅପରେ ପଞ୍ଚରତ୍ନ ଘନ | ୨୪ |
| ଅହର୍ନିଶିରେ ଏହା ଦେଇ | ଉକ୍ଷ-ବନ୍ଧାଣୀ କ ଲଗାଇ । | ୨୫ |

---

୮-୧୦ । ପ୍ରଥମେ 'ଅମ୍ବିକା' ନାମରୂପ ସଂକଳ୍ପ ଉଚ୍ଚାରଣ କରି ଅକାର ନ୍ୟାସକୁ 'ଶୁଭ' (ଆରମ୍ଭ) କଲି । ରଗ ଓ ବାଣୀ ଗୁଡ଼ିକ ଏହାର ଖମ୍ବ, ପଦଗୁଡ଼ିକ ଶ୍ରେଣୀ, ଅକ୍ଷରମାନେ ରୁଅ, ଅନୁପ୍ରାସାଦ ଶବ୍ଦାଳଙ୍କାରମାନେ ଓଗ୍ର. ଇତ୍ୟାଦ ।୧୬। ଚାନ—ଗୃହ ଆ ।୧୭। ଅସ୍ଥ ଯେ ଏକ—ନଅ। ଅଗାରଭକ୍ତି —କାନ୍ଥ । ୧୮ । ଅନଳାୟନ—ଝରକା । ୨୨ । ବେଳ୍ପ ପ୍ରକାର ସ୍ୱର୍ଣ୍ଣପୁତ୍ତକୁ ବେଳ୍ପ ପୁ ସ୍ତକ ପାଟେର ବେଢ଼ି ରଚିଲ । ୨୪ । ଦ୍ରବ୍ୟର ସଂଖ୍ୟା ଦେଖ ଯାଉଅଛନ୍ତି । ଅନ୍ତଃକରଣ—ହୃଦୟସ୍ଥ ରୂପ ଉତ୍ତମ ସୁନା । ପଞ୍ଚମନ ରୂପ—ପଞ୍ଚରତ୍ନ । ୨୫ । ଅହର୍ନିଶି—ସର୍ବଦା । ଅକ୍ଷବନ୍ଧାଣି—ଇନ୍ଦ୍ରିୟରୂପ କାରିଗରକୁ (କର, ଚକ୍ଷୁ ପ୍ରଭୃତ କର୍ମ ଓ ଜ୍ଞାନେନ୍ଦ୍ରିୟମାନଙ୍କୁ) ।

| | | |
|---|---|---|
| ଅମାନ ପକୃତ ପ୍ରବଳ | ଅଚଳେ ନାଶିଥାନ୍ତି ମୂଳ । | ୨୬ |
| ଅନେକ ଅବଧାନ ଭଜ | ଅନାଳେଶ ଖୋଜ ପୁନଃ ପୁନଃ । | ୨୭ |
| ଅନୁରୂପେ ଏ ପୁର ସମ | ଅଚ୍ଛିଦ୍ର କାଷ୍ଠାବଳି ରମ୍ୟ । | ୨୮ |
| ଅଣାଇ କରନ୍ତୁ ନିର୍ମିତ | ଅଛୁ ହେବାକୁ ପ୍ରତିଷ୍ଠିତ । | ୨୯ |
| ଅହଂସା-ସଙ୍କଳ୍ପ ତ୍ୟାଜ | ଅଗ୍ରେ କର ହେ ସାଧୁଜନ । | ୩୦ |
| ଅଟ ଚତୁର-ମୁଖ ସତ | ଅଛୁ କି ଭୂସୁର ଅକୃତ । | ୩୧ |
| ଅତି ନିର୍ମଳ ଭୂସୁ ଦ୍ୱିଜେ | ଅଛନ୍ତି ରସଜ୍ଞ ଆଚାର୍ଯ୍ୟ । | ୩୨ |
| ଅଳ୍ପ ନିଯୁକ୍ତ ତାଙ୍କୁ କରି | ଅନ୍ୟଥା ଏଥିରେ ନ କର । | ୩୩ |
| ଅନନ୍ତ ପଦ ପଞ୍ଚାମୃତ | ଅତାଳେ କର ତା ସଂସ୍କୃତ । | ୩୪ |
| ଅପର୍ବ ବଧି କର୍ଣ୍ଣ-କ୍ଷଣେ | ଅନୁଶ୍ରବଣ-ଧର୍ମଧାରେ । | ୩୫ |
| ଅବଶ୍ୟ ରୁଚ ହୋମ-ଦ୍ରବ୍ୟ | ଅସ୍ତୁ ଉଚ୍ଚାର ପ୍ରିୟ-ଭାବେ । | ୩୬ |

---

୨୬ । (ପ୍ରକୃତ) ଜଳ ଅଗ୍ନି ଆଦି (ଅମାନ ପ୍ରବଳ) ଅତି ପ୍ରବଳ, ହୋଇ ଗୃହକୁ (ଅଚଳେ) ସ୍ଥିର ଭାବେ ମୂଳରୁ ଭାଙ୍ଗି ଦିଅନ୍ତି । ଗୃହ ଉପକରଣରେ କାଷ୍ଠ ଦ୍ରବ୍ୟ ଶକ୍ତିହୀନ ହେଲେ ଯେସେ ଯେପରି ଭାଙ୍ଗି ପଡ଼େ, ସେହିପରି ପଦ, କାବ୍ୟ ପ୍ରଭୃତି କାବ୍ୟ ନିର୍ମାଣ କାଳରେ ଅବହୁଳିତ କରି ପ୍ରୟୋଗ କରିଥିଲେ ସେ ମଧ୍ୟ ନଷ୍ଟ ହୁଏ । ୨୭-୨୯ । (ଅବଧାନ) ଏକାଗ୍ରତା ରୂପ ବଳ ବାରମ୍ବାର ଖୋଜ ଖୋଜ (ଅନୁରୂପେ) ଯଥାଯୋଗ୍ୟ ଭାବେ ଏ (ପୁରସମ) ଗୃହର ଉପଯୋଗୀ (ଅଚ୍ଛିଦ୍ର) ଭଅଁର ବିନା ପ୍ରଭୃତି ରହିତ (କାଷ୍ଠାବଳି) କାଠସମୂହ ଅଣାଇ ଏ ପୁର କରନ୍ତୁ । କେବଳ ପ୍ରତିଷ୍ଠିତ ହେବାପାଇଁ ଅଛୁ । ୩୦-୩୪ । ହେ ସାଧୁଜନ ମାନେ ! ଆପଣ-ମାନେ ଏହାର ପ୍ରତିଷ୍ଠା କାର୍ଯ୍ୟ କରନ୍ତୁ । ପ୍ରଥମେ (ଅହଂସା) ଈର୍ଷାବଶତଃ ଦୋଷ ଅବିଷ୍କାର ନ କରିବା ରୂପ ନିୟମକୁ ସଙ୍କଳ୍ପରୂପେ ଉଚ୍ଚାରଣ କର । ଆପଣମାନେ ତ (ଚତୁର ମୁଖ) ପ୍ରତିଷ୍ଠାପକ୍ଷେ ବ୍ରହ୍ମା, କାବ୍ୟପକ୍ଷେ, (ଚତୁର) ଦକ୍ଷ ମୁଖବିଶିଷ୍ଟ । ଅକୃତ—ଅକୁଣ୍ଠ । ଭୂସୁର ନିର୍ମଳ ଦ୍ୱିଜେ—ପ୍ରତିଷ୍ଠାପକ୍ଷେ, ବ୍ରାହ୍ମଣ, ଅନ୍ୟପକ୍ଷେ—ଦନ୍ତମାନେ । ରସଜ୍ଞ—ପ୍ରତିଷ୍ଠାପକ୍ଷେ "ରସୋବୈ ସଃ" ଏହି ବେଦୋକ୍ତି ଅନୁସାରେ 'ରସ' ଅର୍ଥାତ୍ ବ୍ରହ୍ମ (ରସଜ୍ଞ) —ବ୍ରହ୍ମଜ୍ଞାନୀ, କାବ୍ୟ ପକ୍ଷେ-ଜିହ୍ୱାରୂପ ଆଚାର୍ଯ୍ୟ । ୩୪ । ପଞ୍ଚାନନ ରୂପ ପଞ୍ଚ ମୃତକୁ ପ୍ରଥମେ ସଂସ୍କାର କର, କାବ୍ୟପକ୍ଷେ—ସରଳ (ଦୋଷଶୂନ୍ୟ) କର । ୩୫ । ଅନୁଶ୍ରବଣ—ଶୁଣିବା ।

ଅବଶ୍ୟ-ଦ୍ରଷ୍ଟବ୍ୟ ଏ ହେବ    ଅକ୍ଷି ପାଇବା ପରି ଜାବ । ୩୭
ଅନଳ ଦହନ କୁନ୍ଦନ    ଅଂଶେ ନୋହିବ ସୁବଚନ । ୩୮
ଅତୃପ୍ତ ହୋଇଲେ ସାଧବେ    ଅବଶ୍ୟ ଲୋକେ ଦୋଷ ଦେବେ । ୩୯
ଅପାର ପୁନରୁକ୍ତି ଅଛି    ଅବା ବୋଲିବ କେହ୍ନ ବାଛି । ୪୦
ଅଧିକ ନୋହିଲା ସରଳ    ଅର୍ଥ ତ ନୋହିଲା ବିରଳ । ୪୧
ଅପ୍ରଚୁର ଏ ଛେଦମାନ    ଅଳଙ୍କାରରୁ ହେଲା ଭିନ୍ନ । ୪୨
ଅନ୍ତରେ ଗର୍ବ କେ କରିବେ    ଅଜ୍ଞାନ କବିଏ କହିବେ । ୪୩
ଅମରଷରେ ବାଣୀ ଭଣି    ଅନ୍ତର ହେବ କେ ନ ଶୁଣି । ୪୪
ଅହି ସ୍ୱରୂପ ଯେଉଁମାନେ    ଅବଶ୍ୟ ଦଂଶିବେ ସେମାନେ । ୪୫
ଅଡ଼ାଇ ଚରଣିଆ ପଦ    ଅଟଇ ଏ ମୋ ଗୀତପଦ । ୪୬
ଅଲକ୍ଷ୍ୟେ ପିକ ତାଙ୍କ ଶ୍ଳେଷ୍ଟ    ଅମ୍ବିକାନାମ ଯେ ଅକାଟ । ୪୭
ଅଛନ୍ତି ବଡ଼ ବଡ଼ କବି    ଅଟନ୍ତି ନାମେ କବି-ରବି । ୪୮
ଅନେକ କେ ଅବା କବିଚନ୍ଦ୍ର    ଅଟେ କେ କବିକୁଳ-ଇନ୍ଦ୍ର । ୪୯
ଅମ୍ବୁଧି ତାଙ୍କ ବୁଦ୍ଧିବଳ    ଅନନ୍ତ ଶାସ୍ତ୍ରେ ସେ କୁଶଳ । ୫୦
ଅକ୍ଷର ଗୋଟି ପାଞ୍ଚ ସାତ    ଅର୍ଥକରଣେ କେ ସମର୍ଥ । ୫୧
ଅଭିଧାନରୁ ଶାସ୍ତ୍ରଯାଏ    ଅଧରେ ନୃତ୍ୟ କରୁଥାଏ । ୫୨
ଅପାର ନୀରନିଧି ପାଶେ    ଅଦ୍ରି-ସରିତ ଯେଉଁ ଆଶେ । ୫୩
ଅର୍କ ଆଗରେ କ୍ଷୁଦ୍ର ତାରା    ଅବ୍‌ଜକୁ ଖଦ୍ୟୋତର ପରା । ୫୪
ଅମାନ କବିଙ୍କ କବିତ୍ୱ    ଅଗ୍ରେ ମୋ ଏ ଗୀତ ତେମନ୍ତ । ୫୫

---

୩୭ । ଅକ୍ଷି—ଆଖି । ୩୮ । ଅନଳ ଦହନ କୁନ୍ଦନ—ନିଆଁରେ ପୋଡ଼ା ହୋଇଥିବା ସୁନା । ୪୦ । ଆଶଙ୍କିତ ଦୋଷର ବିବରଣ ଦେଉଛନ୍ତି । ପୁନରୁକ୍ତି—ଏକ ଶବ୍ଦର ଏକ ଅର୍ଥରେ ବାରମ୍ବାର ପ୍ରୟୋଗ ।୪୧ । ବିରଳ—ପରିଷ୍କାର, ଅସନ୍ଦିଗ୍ଧ । ୪୪ । ଅମରଷରେ—ସହି ନ ପାରି ।୪୫। ଅହିସ୍ୱରୂପ—ସାପପରି (ଖଳ) । ୪୬ । ଅଡ଼ାଇଚରଣିଆ ପଦ—ଅଡ଼ାଇ ଚରଣ ବିଶିଷ୍ଟ ମନ୍ତ୍ର । (ଅଡ଼ାଇ ଚରଣିଆ ପଦ ଅଣଲେଉଟ ବୋଲି ପ୍ରବାଦ ଅଛି) । ୪୭ । ଶ୍ଳେଷ୍ଟ—କାମୁଡ଼ା । ୫୦ । ଅମ୍ବୁଧି—ସମୁଦ୍ରପରି ବିସ୍ତୃତ । ୫୩-୫୫ । ଅପାର ସମୁଦ୍ର ପାଖରେ ଗିରିନଦୀ ପରି, ସୂର୍ଯ୍ୟ ଆଗରେ କ୍ଷୁଦ୍ରତାରା ପରି, ଚନ୍ଦ୍ର ପାଖରେ (ଖଦ୍ୟୋତ) ଜୁଳୁଜୁଳିଆ ପୋକ ପରି, ଅସଂଖ୍ୟ କବିଙ୍କ (କବିତ୍ୱ) କବିତା ନିକଟରେ ମୋର ଏ ଗୀତ (ହେୟ) ।

ଅନ୍ତରେ ଭାବ ଏହି କଥା ଅଧିକ ମନେ ହେଲା ବ୍ୟଥା । ୫୬
ଅର୍ଦ୍ଧ ଚରିତ ଲେଖିଥିଲି ଅପାର ଭୟେ ନିବର୍ତ୍ତିଲି । ୫୭
ଅଥ ଏମନ୍ତେ କେତେ ଦିନେ ଅନୁସନ୍ଧାନ ହେଲା ମନେ । ୫୮
ଅସତ କାବ୍ୟ ଏ ନୁହଇ ଅବଶ୍ୟ ଏଥିଁ ଗତି ଥାଇ । ୫୯
ଅତି ମହିମା ସାଧୁଗଣ ଅବା ସେ କରିବେ ଗ୍ରହଣ । ୬୦
ଅବ୍ଜ ଯେସନେ ସର୍ବଠାବେ ଅଂଶୁ ପକାଏ ସମଭାବେ । ୬୧
ଅନନ୍ତ ଯଥା ନୋହେ ଲକ୍ଷି ଅଙ୍ଗ-ବଳରେ ଉଡେ ପକ୍ଷୀ । ୬୨
ଅଯୁତ ଲକ୍ଷ କୋଟି ହନେ ଅର୍ବୁଦ ପରାର୍ଦ୍ଧ ଯେ ଗନେ । ୬୩
ଅନ୍ତ ନୁହଇ ତଥାପି ହେ ଅର୍ଥ ଶବ୍ଦ ହିଁ ଏହି ଆଶେ । ୬୪
ଅଦୃଶ୍ୟ ଅଣୁଠାରୁ ସ୍ଥୂଳ ଅଶେଷ ପୂର୍ଣ୍ଣ ଶବ୍ଦକୁଳ । ୬୫
ଅଚିନ୍ତ୍ୟ ଶବ୍ଦବ୍ରହ୍ମ ସାର ଅଷ୍ଟଲୋଚନେ ଅଗୋଚର । ୬୬
ଅବ୍ଧି ଏ ବ୍ୟାକରଣ ଭାବ ଅର୍ଥ ଜାଣନ୍ତି ଏକା ଶିବ । ୬୭
ଅଳ୍ପରେ ଘେନିଲେ ଏମନ୍ତ ଅଜ୍ଞ ବୋଲାଇବେ ପଣ୍ଡିତ । ୬୮
ଅତଃ କାରଣୁଁ ବୁଦ୍ଧି ଜାଣି ଅବଶ୍ୟ ପ୍ରବର୍ତ୍ତିବ ପ୍ରାଣୀ । ୬୯
ଅଛନ୍ତି କେତେ ବିଦ୍ୟାଗଣ ଅଷ୍ଟ ଏକ ଯେ ବ୍ୟାକରଣ । ୭୦
ଅନେକ କାବ୍ୟ ସୁନାଟକ ଅଳଙ୍କାରାଦି ଶାସ୍ତ୍ର ଯାକ । ୭୧
ଅଥ ଜ୍ୟୋତିଷ ଶିଳ୍ପବିଦ୍ୟ ଅଶେଷ ନୁହନ୍ତି ସେ ଭେଦ । ୭୨
ଅଧ୍ୟୟନ ଏ ସର୍ବେ ହେବେ ଅଭୀଷ୍ଟ ପୂର୍ଣ୍ଣ ନୋହେ ତେବେ । ୭୩
ଅଛନ୍ତି ଯେତେ ଶାସ୍ତ୍ରମାନେ ଅରି ପରି ଏ ବିଦ୍ୟମାନେ । ୭୪
ଅଙ୍ଗକୁ ବୋଲଇ କେ ନିତ୍ୟ ଅବା ବୋଲି କେ ଜୀବ ସତ୍ୟ । ୭୫
ଅପରେ ଜନ୍ମାନ୍ତର ନାହିଁ ଅସ୍ତି ବୋଲି କେ ଅବା କହି । ୭୬

---

୫୮ । ଅନୁସନ୍ଧାନ ହେଲା ମନେ ଅର୍ଥାତ୍ ମନରେ ଅଭିଳାଷ ଜାତ ହେଲା । ୬୧ । ଅବ୍ଜ—ଚନ୍ଦ୍ର, ଅଂଶୁ—କିରଣ । ୬୨ । ଅନନ୍ତ—ଆକାଶ । ୬୪ । ଏହି ଆଶେ—ଏହିପରି । ୬୬ । ଅଚିନ୍ତ୍ୟ—ଚିନ୍ତାର ବିଷୟକୁ ଅତିକ୍ରାନ୍ତ । ଶବ୍ଦବ୍ରହ୍ମ—ନାଦବ୍ରହ୍ମ । ଅଷ୍ଟଲୋଚନ—ବ୍ରହ୍ମା ।୬୭। ଅବ୍ଧି—ସମୁଦ୍ର । ୬୯ । ବୁଦ୍ଧି ଜାଣି ନିଜ ଜ୍ଞାନ ଅନୁସାରେ । ୭୦ । ଅଷ୍ଟଏକ—ନଅ । ୭୩ । ଅଭୀଷ୍ଟ—କାମନା । ୭୪ । ଅରିପରି—ଶତ୍ରୁ ତୁଲ୍ୟ ଅର୍ଥାତ୍ ପରସ୍ପର ବିରୋଧୀ ।

| | | |
|---|---|---|
| ଅଧର୍ମ ଧର୍ମ ଏକ ଯୋଗ | ଅଧନ ମୁକ୍ତ ନର୍କ ସ୍ୱର୍ଗ । | ୭୭ |
| ଅପାରରୂପେ ଯେ କହନ୍ତି | ଅଚ୍ୟୁତଭାବ ନାହିଁ ଏଥି । | ୭୮ |
| ଅନନ୍ତ ବିଦ୍ୟାଫଳ ଏହି | ଅନନ୍ତ ଭକ୍ତି ଯେବେ ହୋଇ । | ୭୯ |
| ଅତି ଦୁର୍ଲ୍ଲଭ ନର ଜୀବ | ଅପେକ୍ଷା କରୁଛନ୍ତି ଦେବ । | ୮୦ |
| ଅମୃତ କୃଷ୍ଣଭକ୍ତି ଫଳ | ଅଭାବେ ମ ଷ ସେ ନିଷ୍ଫଳ । | ୮୧ |
| ଅଚ୍ୟୁତ ଶିବ ଏ ଅଭିନ୍ନ | ଅମ୍ବିକା ରାଧିକା ତେସନ । | ୮୨ |
| ଅନ୍ତର ଏଥି କିଛି ନାହିଁ | ଅଜ୍ଞାନୀ ଭେଦ କରୁଥାଇ । | ୮୩ |
| ଅନାଅଁ ଯେଉଁରୂପେ କ୍ଷୀର | ଅନେକ ରୂପ ହୁଏ ତାର । | ୮୪ |
| ଅମୂଲ୍ୟ ଦଧି ଛେନା ଘୃତ | ଅଧାମ ଚଲ୍ହା ନବନୀତ । | ୮୫ |
| ଅନେକ ହୁଅଇ ବିକାରୁଁ | ଅଟନ୍ତି ସର୍ବେ ଜାତ କ୍ଷୀରୁଁ । | ୮୬ |
| ଅନାଦି ବ୍ରହ୍ମ ତଥା ନିତ୍ୟ | ଅଟେ ପ୍ରକୃତି ତାର କୃତ୍ୟ । | ୮୭ |
| ଅମ୍ବୁଜାସନ ବିଷ୍ଣୁ ଶିବ | ଅଗ୍ରେ ଜନ୍ମିଲେ ତିନି ଦେବ । | ୮୮ |
| ଅଟନ୍ତି ତ୍ରିଗୁଣ ଏ ତିନି | ଅବ୍ଜଜନମା ରଜଃସ୍ଥାନୀ । | ୮୯ |

---

୭୭-୭୮ । ଅଧର୍ମ, ଧର୍ମ, ସ୍ୱର୍ଗ, (ନରକ), ମୃତ୍ୟୁ ଓ ମୁକ୍ତି, ଏ ସମସ୍ତ (ଏକଯୋଗ) ସମାନ, ଅଭିନ୍ନ, ବୋଲି ନାନାପ୍ରକାର କହନ୍ତି । କିନ୍ତୁ ଏଥିରେ (ଅଚ୍ୟୁତ ଭାବ) ଈଶ୍ୱରଭକ୍ତି ନାହିଁ । ୭୯ । ଅନନ୍ତ—ଅସୀମ ପରମେଶ୍ୱରଙ୍କଠାରେ ଭକ୍ତିହିଁ ଅନନ୍ତ ବିଦ୍ୟାର ଫଳ ଅଟେ । ୮୦ । ଏହି ମନୁଷ୍ୟର ଶରୀର ଅତି ଦୁର୍ଲ୍ଲଭ । ଏହାକୁ ଦେବତା ମଧ୍ୟ ଲାଭ କରିବାକୁ ଅପେକ୍ଷା କରୁଅଛନ୍ତି । ୮୧ । କୃଷ୍ଣଭକ୍ତିହିଁ ଶେଷଫଳ (ଅମୃତ) ମୋକ୍ଷ ଅଟେ; ଅତଏବ ଶ୍ରୀକୃଷ୍ଣ ଭକ୍ତି ନ ଥିଲେ (ମନୁଷ୍ୟର ଜନ୍ମ) ନିଷ୍ଫଳ ହୋଇଯାଏ । ୮୨-୮୩ । ଯେ ଶିବ, ସେହି କୃଷ୍ଣ; ଯେ ପାର୍ବତୀ, ସେହି ରାଧା, ଏଥିରେ କୌଣସି ଭେଦ ନାହିଁ, କିନ୍ତୁ ଅଜ୍ଞାନ ବ୍ୟକ୍ତିମାନେ ଏହାଙ୍କୁ ଅଲଗା ବୋଲି କହୁଥାନ୍ତି । ୮୪-୮୬ । ଦେଖ, ଯେପରି ଦୁଗ୍ଧ ବିକାରପ୍ରାପ୍ତ ହେଲେ ଦହି, ଛେନା, ଅଧାମ, ଚହ୍ଲା, ଲହୁଣୀ ପ୍ରଭୃତି ନାନା ନାମ ଧାରଣ କରେ, କିନ୍ତୁ ସେ ସମସ୍ତର ମୂଳ ଏକମାତ୍ର ଦୁଗ୍ଧ, ସେହିପରି ଏକ ଅନନ୍ତ ବ୍ରହ୍ମ ନିତ୍ୟ ଅଟନ୍ତି । ଏହି ପଞ୍ଚଭୂତ ତ୍ରିଗୁଣାଦିସମ୍ପନ୍ନ ପ୍ରକୃତି ତାହାଙ୍କର ବିକାର (ରୂପାନ୍ତର ମାତ୍ର) ।୮୮-୯୨ । ବ୍ରହ୍ମା, ବିଷ୍ଣୁ ଓ ଶିବ ଏହି ତିନି ଦେବତା ତାହାଙ୍କର ରୂପାନ୍ତର ରୂପେ ପ୍ରଥମେ ଜାତହେଲେ ଏହି ଦେବତା ତିନିହେଁ ସତ୍ତ୍ୱ ରଜଃ ତମଃ ଏହି ତିନିଗୁଣ ଧାରଣକରି କରିଅଛନ୍ତି । ସେମାନଙ୍କ ମଧ୍ୟରୁ (ଅବ୍ଜଜନ୍ମା) ବ୍ରହ୍ମା ରଜୋଗୁଣବିଶିଷ୍ଟ ।

ଅମଳ ସତ୍ତ୍ୱମୟ ହରି ଅଟଇ ତମଃ ତ୍ରିପୁରାରି । ୯୦
ଅନ୍ତର ଗୁଣମାନ ଯେନି ଅଭିନ୍ନ ଅଟନ୍ତି ଏ ତିନି । ୯୧
ଅଗ୍ନିର (?) ଜନ୍ମ କର୍ମ ମୃତ୍ୟୁ ଅଛି ଅବଶ୍ୟ ତିନି ହେତୁ । ୯୨
ଅତଃ କାରଣେ ସର୍ବ ଜୀବେ ଅଧିକାରୀ ଏ ତିନି ଦେବେ । ୯୩
ଅପରେ ଯେତେ ଦେବଗଣ ଅସୁର କିନ୍ନର ଚାରଣ । ୯୪
ଅଶେଷ ନର ନାଗ ଖଗ ଅନେକ କେ ତାହା କହିବ । ୯୫
ଅଂଶେ ଈଶ୍ୱର-ତେଜଃ ବହି ଅଶେଷ ହୁଅନ୍ତି ଜନ୍ମ ପାଇ । ୯୬
ଅଗ୍ନି ଯେସନେ ସତ୍ତ୍ୱ ପାଇ ଅଦ୍ଭୁତ ତେଜଃ ପ୍ରକାଶଇ । ୯୭
ଅଦୃଶ୍ୟ ପରା କୁଶଯୋଗେ ଅଙ୍ଗାରେ କିଛି ତେଜଃ ଜାଗେ । ୯୮
ଅଳପ ତେଜ ଇନ୍ଧନରେ ଅଧିକ ବର୍ତ୍ତିକ ଘାସରେ । ୯୯
ଅମାନ ବର୍ତ୍ତୀରେ ଜଳେ ଅବ୍ଜ-ପାତ୍ରରେ ମହୋଜ୍ଜ୍ୱଳେ । ୧୦୦
ଅଧିକୁଁ ଅଧିକ ଉଜ୍ଜ୍ୱଳ ଅନୁରୂପକୁ ଦ୍ରବ୍ୟ ମୂଳ । ୧୦୧

---

୯୦-୯୧ । ବିଷ୍ଣୁ ନିର୍ମଳ ସତ୍ତ୍ୱଗୁଣଯୁକ୍ତ ଓ (ତ୍ରିପୁରାରି) ତ୍ରିପୁର ସଂହାରକ ଶିବ ତମୋଗୁଣଯୁକ୍ତ । ଏଣୁ ଏ ତିନିଜଣ ଗୁଣ ଯୋଗୁ ଭିନ୍ନ ହେଲେହେଁ ମୂଳତଃ ଭିନ୍ନ ନୁହନ୍ତି । ୯୨-୯୩ । ପ୍ରତ୍ୟେକ ଜୀବ ଜନ୍ମ, କର୍ମ ଓ ମୃତ୍ୟୁର ଅଧୀନ । ବ୍ରହ୍ମା, ବିଷ୍ଣୁ ଓ ଶିବ ଏହି ତିନି କର୍ମର ଯଥାକ୍ରମେ ଅଧିକାରୀ । ତେଣୁ ସମସ୍ତ ପ୍ରାଣୀଙ୍କ ଉପରେ ତାହାଙ୍କର ଅଧିକାର ଅଛି । ଏହାଛଡ଼ା ଅନ୍ୟାନ୍ୟ ଦେବତା, ଅସୁର, କିନ୍ନର ଚାରଣ, ମନୁଷ୍ୟ, ନାଗ ଇତ୍ୟାଦି ଅସଂଖ୍ୟ ଜୀବ ଅଛନ୍ତି । ତାହାଙ୍କର ସଂଖ୍ୟା କେହି କହିପାରିବ ନାହିଁ । ଏମାନେ ସମସ୍ତେ ଅଂଶରୂପେ ଈଶ୍ୱର ତେଜକୁ ଗ୍ରହଣ କରି ଜନ୍ମ ହୋଇଛନ୍ତି । ୯୭-୧୦୧ । ଅଗ୍ନି--ଅଣୁ ଆକାରରେ ସତ୍ତ୍ୱ ମାନଙ୍କେ (ଛୁଆଁ ମାନଙ୍କେ) ଅବସ୍ଥିତ ହୋଇ କ୍ରମେ ଅଦ୍ଭୁତ ତେଜ ପ୍ରକାଶ କରେ । ସେ କୁଶ ପ୍ରଭୃତି ତୃଣକୁ ଆଶ୍ରୟ କରିବା ବେଳେ ଅଦୃଶ୍ୟ ପ୍ରାୟ ହୋଇଥାଏ । ଅଙ୍ଗାରକୁ ଆଶ୍ରୟ କରିବା ବେଳେ ତଦପେକ୍ଷା ଟିକିଏ ତେଜ ବଢ଼ାଏ, କାଠକୁ ଆଶ୍ରୟ କଲେ ତା ଅପେକ୍ଷା ଆଉ ଟିକିଏ ତେଜସ୍ୱାନ୍ ହୁଏ, ଘାସକୁ ଆଶ୍ରୟ କଲେ ପୂର୍ବ ଅପେକ୍ଷା ଅଧିକ ତେଜସ୍ୱୀ ହୁଏ; ଘାସ ଅପେକ୍ଷା ବର୍ତ୍ତୀରେ (ମଶାଲରେ) ଅଧିକ ଉଜ୍ଜ୍ୱଳ ତେଜ ଧାରଣ କରେ, (ଅବ୍ଜପାତ୍ର) ଚନ୍ଦ୍ରଉଦଆ ବା ମହତାପରେ ବର୍ତ୍ତୀ ଅପେକ୍ଷା ଅଧିକ ତେଜସ୍ୱୀ ଦେଖାଯାଏ । ଏହିପରି ଅଗ୍ନି ଭିନ୍ନ ଭିନ୍ନ ଦ୍ରବ୍ୟ ଆଶ୍ରୟ କରିବା ଫଳରେ ଉଜ୍ଜ୍ୱଳରୁ ଉଜ୍ଜ୍ୱଳତର ହୋଇଥାଏ ।

| | | |
|---|---|---|
| ଅଙ୍ଗାରୁ ବ୍ରହ୍ମା ରୁଦ୍ର ସରି | ଅଛି ଈଶ୍ୱର-ତେଜ ପୂରି । | ୧୦୨ |
| ଅଳପ ସକ୍ତି ଅଟଇ ଯାର | ଅଙ୍ଗାର ଅନଳ ସେ ନର । | ୧୦୩ |
| ଝୁଣ୍ଟୁଏ ଅଛି ଅବା ନାହିଁ | ଅଟେ ଟି କୁଶଅଗ୍ନି ସେହି । | ୧୦୪ |
| ଅଂଶରେ ଅଧିକ ଯା ବଳ | ଅଟେ ସେ ଇନ୍ଧନ-ଅନଳ । | ୧୦୫ |
| ଅଛି ଯେ ପର ଉପକାରେ | ଅଟେ ସେ ପ୍ରଦୀପ ପ୍ରକାରେ । | ୧୦୬ |
| ଅବନୀପତି ଯେଣୁ ରାଜା | ଅଟେ ଦିହୁଡ଼ୀ ତାଙ୍କ ତେଜ । | ୧୦୭ |
| ଅମରଗଣେ ଚନ୍ଦ୍ର ଦୀପ | ଅଧିକ ମହତ୍ତ୍ୱ ତା ସ୍ୱରୂପ । | ୧୦୮ |
| ଅଗ୍ନି ଯେ ଏକା ଦ୍ରବ୍ୟ ବଳେ | ଅନେକ ରୂପ ଦହେ ଫଳେ । | ୧୦୯ |
| ଅନାଦି ବ୍ରହ୍ମାଣ୍ଡ କାରଣ- | ଅଂଶେ ଏ ସର୍ବ ସୃଷ୍ଟି ଜାଣ । | ୧୧୦ |
| ଅନାଶେ କୃଷ୍ଣ-ପଦକଞ୍ଜ | ଅପେକ୍ଷେ ବଳଭଦ୍ର ଭଞ୍ଜ । | ୧୧୧ |

—ଃ✳ଃ—

---

୧୦୨-୧୧୦ । ଅଙ୍ଗାରଠାରୁ ଆରମ୍ଭ କରି ବ୍ରହ୍ମା, ଶିବ, ବିଷ୍ଣୁ ପର୍ଯ୍ୟନ୍ତ ସମସ୍ତଙ୍କଠାରେ ଈଶ୍ୱର ତେଜ ପୂରି ରହିଛି । ଯାହାର ଅଳପ କ୍ଷମତା, ସେ ଲୋକ ଅଙ୍ଗାରକୁ ଆଶ୍ରୟ କରିଥିବା ଅଗ୍ନି ପରି ଅଟେ । ଯେ କାର୍ଯ୍ୟ ଦେଖାଉ ନ ଥିବାରୁ ଅଛି କି ନାହିଁ ବୋଲି ଜଣାପଡ଼େ ନାହିଁ, ସେ କୁଶ-ଅଗ୍ନି ପରି । ଯେ ତଦପେକ୍ଷା (ଅଙ୍ଗାରାଗ୍ନି ସହିତ ତୁଳନା କରି ଅପେକ୍ଷା) ଅଧିକ ଉଜ୍ଜ୍ୱଳ, ସେ କାଷ୍ଠ ଅଗ୍ନି ସଦୃଶ । ଯେ ପର ଉପକାରରେ ରତ, ସେ ଦୀପାଗ୍ନି ସଦୃଶ । ରାଜା ପୃଥିବୀର ମାଲିକ ହୋଇଥିବାରୁ ସେ ମଶାଲ ନିଆଁ ପରି । ଦେବତାମାନେ (ଚନ୍ଦ୍ର ଇତ୍ୟାଦି) ବା ମହତାପସ୍ଥିତ ଅଗ୍ନି ପରି ଅତି ଉଜ୍ଜ୍ୱଳ । ଯେପରି ଏକ ଅଗ୍ନି ଭିନ୍ନ ଭିନ୍ନ ଉପାଧି ଆଶ୍ରୟ କରି ଭିନ୍ନ ଭିନ୍ନ ରୂପ ଧାରଣ କରୁଅଛି, ସେହିପରି ସମସ୍ତଙ୍କର ଏକମାତ୍ର କାରଣ ପରମବ୍ରହ୍ମଙ୍କର ଅଂଶରେ ଏ ସମସ୍ତ ଭିନ୍ନ ଭିନ୍ନ ଜୀବାଦିର ସୃଷ୍ଟି ହୋଇଅଛି । ୧୧୧ । ଶ୍ରୀ ବଳଭଦ୍ର ଭଞ୍ଜ ସର୍ବଦା ଶ୍ରୀକୃଷ୍ଣଙ୍କ ପାଦପଦ୍ମକୁ ଅପେକ୍ଷା ରଖିଛନ୍ତି ।

# ଚତ୍ୱାରିଂଶ ଛାନ୍ଦ

## ସ୍ୱପ୍ନାଦେଶ ଓ ରାଜନୀତି ବର୍ଣ୍ଣନ

ରାଗ—ମଙ୍ଗଳଗୁଜ୍ଜରୀ

ଅକଳ୍ମଷମନେ ଯେତେ ସୁଜନ ଜନ
ଅମ୍ବିକା-ବିଳାସ ଗୀତ ହେଲା ସମ୍ପୂର୍ଣ୍ଣ । ୧

ଅତି ସହୃଦୟ କବି ବିବେକବର
ଅପୂର୍ବ ପଣ୍ଡିତ ସର୍ବ ବିଷୟେ ଧୀର । ୨

ଅପାର ଆଦରେ ଏମାନଙ୍କୁ ଅଣାଇଁ
ଅନୁଆନେ ସର୍ବ ଗ୍ରନ୍ଥମାନ ଶୁଣାଇଁ । ୩

ଅଥଶ୍ଳିଷ୍ଟାଶ୍ଳିଷ୍ଟ ଶବ୍ଦ ଶ୍ଳେଷ କଠିନେ
ଅଦୋଷ ଦୋଷ କା ଅଛି ଯେ ଯେଉଁ ସ୍ଥାନେ । ୪

ଅକ୍ଷର ବଶରୁ କେଉଁ ଶବ୍ଦ ଅପୁଷ୍ଟ
ଅଛି ନଶ୍ଳେଷାର୍ଥରେ କେଉଁ ପଦରେ କ୍ଲିଷ୍ଟ । ୫

ଅନେକ ନିୟମେ ଊଣା କେଉଁ ବସନ୍ତ
ଅବର୍ଣ୍ଣ-ନିୟମେ ମାରସ କେ ଘଟନ୍ତି । ୬

ଅନୁଭବ ଏ ବିଷୟମାନ ବିଦୁଷେ
ଅଦୋଷ ହୋଇଲା ଗୀତ କହିଲେ ତୋଷେ । ୭

ଅତଃ କାରଣୁଁ ଏ ଗୀତ ନିର୍ଦ୍ଦୋଷରତ୍ନ
ଅଟଇ ସ୍ବରୁ ଗୁଣଧର ଭଜ୍ଜ୍ୱଳେ ଯତ୍ନ । ୮

---

### ଚତ୍ୱାରିଂଶ ଛାନ୍ଦ

୧-୧୦ । ଅକଳ୍ମଷମନେ—ନିର୍ମଳ ମନରେ । ସହୃଦୟ—ପୂର୍ବ ଜନ୍ମାର୍ଜିତ ପୁଣ୍ୟବାନ "ପୁଣ୍ୟବନ୍ତଃ ପ୍ରମିଣ୍ୱନ୍ତି ଯୋଗିବଦ୍ରସସନ୍ତତିଂ ।" ବିବେକବର—ପ୍ରଧାନ ସମାଲୋଚକ । ଅପୁଷ୍ଟ—ଅର୍ଥଦୋଷ ବିଶେଷ । ନିର୍ଦ୍ଦୋଷରତ୍ନ—କୀଟାଦି ପ୍ରଭୃତିଙ୍କଦ୍ୱାରା ବିଦ୍ଧ ହୋଇ ନ ଥିବା ରତ୍ନ । ସ୍ବରୁଗୁଣଧର—ସୁନ୍ଦର ସୂତା ଧାରଣ କରିଥାଏ; କାବ୍ୟ—ମାଧୁର୍ଯ୍ୟ, ଓଜଃ ଓ ପ୍ରସାଦ ରୂପ ଗୁଣକୁ ଧାରଣ କରିଛି ।

ଅନୁରାଗି-ରସିକର କଣ୍ଠଭୂଷଣ
ଅମୂଲ୍ୟ ଏ ହେତୁ ନ ପଡ଼ଇ କଷଣ । ୯
ଅନେକ ରସପ୍ରାପ୍ତକ କେଳି କୁଞ୍ଜ
ଅନୁକ୍ଷଣେ ମନ ମୋହେ ପାଉଥିଲ ଲୋକ । ୧୦
ଅଥ ଏକଦିନେ ମୁଁ ଯେ ଶୟନଘରେ
ଅଚେଷ୍ଟେ ପଡ଼ୁଛି ଅଛୁ ପଲଙ୍କ ପରେ । ୧୧
ଅନେକ ଜନ୍ମ ଅର୍ଜିତ ସୁକୃତ ଫଳ
ଅନୁଧାନେ ସର୍ବେ ଆସି ହୁଅନ୍ତି ଠୁଳ । ୧୨
ଅଖିଳ ଈଶ୍ୱର ସଙ୍ଗେ ଐଶ୍ୱର୍ଯ୍ୟ ଛନ୍ତି
ଅଇଲେ ନିଶାର୍ଦ୍ଧ ମାନେ ମୋହର କତି । ୧୩
ଅରୁଣ-କିରଣ-ତେଜ ଦୂରନ୍ତେ ଦୂରେ
ଅକ୍ଷି ଫିଟାଇ ଦେଇ ମୁଁ ଚାହିଁଲି ଧୀରେ । ୧୪
ଅନନ୍ତ ଆନନ୍ଦଦାତା ବିପ୍ରଭ-ମାତା
ଅଗ୍ରେ ଦେଖି ଦୂର ହୋଇଲା ସକଳ ଚିନ୍ତା । ୧୫
ଅଚଳନ୍ତେ ପଲଙ୍କ ଉପରୁ ଓହ୍ଲାଇ
ଅଙ୍ଘ୍ରି ତଳେ ଦଣ୍ଡ-ଜାଣି ପଡ଼ିଲି ଯାଇଁ । ୧୬
ଅଲ୍ପହାସେ ଆଜ୍ଞାକଲେ ଉଠ ନୃପତି
ଅଇଲୁ ଆମ୍ଭେ ତୋ ଭକ୍ତି-ଭାବନା ଯେତ । ୧୭
ଅମ୍ବିକା ବଳାସଗୀତେ ହୋଇ ପ୍ରସନ୍ନ
ଅନୁକମ୍ପା କରି ଏଣୁ ଦେଲୁ ଦର୍ଶନ । ୧୮
ଅଭୀଷ୍ଟ ପୂର୍ଣ୍ଣ ହୋଇବ ଅବଶ୍ୟ ତୋର
ଅଚିନ୍ତାରେ ଜୟଯୁକ୍ତ କର ସଂସାର । ୧୯

---

ରତ୍ନ (ଉଜ୍ଜ୍ୱଳ) ନିର୍ମଳ ହୋଇଥିବାରୁ (ଯତ୍ନ) ସୁନ୍ଦର ଦିଶେ । କାବ୍ୟ (ଉଜ୍ଜ୍ୱଳ) ଶୃଙ୍ଗାର ରସରେ ମଧୁର ହୋଇଛି । ରତ୍ନ—କଣ୍ଠର ଅଳଙ୍କାର, ଗୀତ ମଧ କଣ୍ଠରେ ଗୃହୀତ ହେବାରୁ ତାହାର ଶୋଭା ବର୍ଦ୍ଧକ । ୧୨ । ସୁକୃତ-ଫଳ—ପୁଣ୍ୟଫଳ ।୧୩ । ନିଶାର୍ଦ୍ଧ ମାନେ—ରାତ୍ରି ଅଧରେ । ୧୪ । ଅରୁଣ କିରଣ ତେଜ—ରକ୍ତବର୍ଣ୍ଣ କିରଣର ତେଜ । ୧୬ । ଅଙ୍ଘ୍ରି ତଳେ—ପାଦତଳେ ।

ଅର୍ଦ୍ଧ ଅର୍ଦ୍ଧେ କାଲି ବିପ୍ର ଯାହା କହିବ
ଅନୁଜ୍ଞା ପରାଏ ତାହା ଘେନିବୁ ସର୍ବ । ୨୦

ଅନ୍ତର୍ଦ୍ଧାନ ହେଲେ କହି ଏତେ ଭାରତୀ
ଅନ୍ତ ରାତ୍ର ହେଲା ସ୍ୱପ୍ନ ଉଠିଲି ଚିନ୍ତି । ୨୧

ଅରୁଣ-ଉଦୟୁଁ ସାରି ମାଜଣା କର୍ମ
ଅନୁଷ୍ଠାନ କଲି ନିତ୍ୟପୂଜାଦି କର୍ମ । ୨୨

ଅଚ୍ୟୁତାଗ୍ରଜଦର୍ଶନ ବନ୍ଦନ ସାରି
ପୁରାଣାଦି ଶ୍ରବଣାନ୍ତେ ମଣୋହି କରି । ୨୩

ଅନୁରୂପେ ଯଥାଶକ୍ତି ହୋଇଛୁ ସଭ
ଅଇଲେ ଏକ ବ୍ରାହ୍ମଣ ସୂର-ପ୍ରତିଭ । ୨୪

ଅଭ୍ୟାଗତଙ୍କୁ କହୁ ହେ କହନ୍ତେ ଏତେ
ଅବିଳମ୍ବେ ଦ୍ୱାରାଗତ ଦ୍ୱାଃସ୍ଥ ଜଣାନ୍ତେ । ୨୫

ଅନୁସରି ସ୍ୱପ୍ନ ବସି ଏକାନ୍ତ ପୁରେ
ଅତି ଆଦରେ ଡକାଇ ନେଲି ସତ୍ୱରେ । ୨୬

ଅବନତେ ଶିର ମାରି ପ୍ରଣାମ କରି
ଅଙ୍ଘ୍ରି ଧୋଇ ଆସନେ ବସାଇ ଜୁହାରି । ୨୭

ଅଦ୍ୟ ମୋର ଭାଗ୍ୟ କୃତକୃତ୍ୟ କହନ୍ତେ
ଅଭୟୁ ବିପ୍ର କଲ୍ୟାଣ କଲେ ଅମିତେ । ୨୮

ଅନୁଜ୍ଞା କଲେ ତୁମ୍ଭଙ୍କୁ ଦେଖିବା ପାଇଁ
ଅଇଲୁଁ ବହୁତ ଦୂର ଅବନୀ-ସାଇଁ । ୨୯

ଅବଲୋକନେ ତୁମ୍ଭଙ୍କୁ ହେଲୁ ପ୍ରସନ୍ନ
ଅନୁଶ୍ରବଣ କର ହେ ଆମ୍ଭ ବଚନ । ୩୦

---

୨୦ । ଅର୍ଦ୍ଧ ଅର୍ଦ୍ଧେ—ଦ୍ୱି ପ୍ରହର ସମୟରେ । ଅନୁଜ୍ଞା—ଆଦେଶ । ୨୨ । ମାଜଣା କର୍ମ—ସ୍ନାନ । ୨୩ । ଅଚ୍ୟୁତାଗ୍ରଜ—ବଳଭଦ୍ର (ଜବଙ୍କର ଇଷ୍ଟଦେବତା) ମଣୋହି—ଭୋଜନ । ସୂରପ୍ରତିଭ—ସୂର୍ଯ୍ୟଙ୍କପରି ତେଜସ୍ୱୀ । ୨୫ । ଅବିଳମ୍ବେ ···ଜଣାନ୍ତେ—ବ୍ରାହ୍ମଣ ଅଇଲେଣି ବୋଲି ଜଣାଇବାରୁ । ୨୬ । ଏକାନ୍ତପୁରେ ନିଜ ଗୃହରେ । ୨୭ । ଜୁହାରି—ନମସ୍କାର କରି । ୨୮ । କୃତକୃତ୍ୟ—କୃତାର୍ଥ ସଫଳ । ଅଭୟୁ···ଅମିତେ—ବ୍ରାହ୍ମଣ ତୁମ୍ଭର 'ଅଭୟ' ହେଉ ବୋଲି ବହୁବାର ଆଶୀର୍ବାଦ କଲେ ।

ଅଖିଳ ସଂସାର ଏ ଯେ ସଚରାଚର
ଅସ୍ମମାନବଦେବଙ୍କ ଏ ତିନି ପୁର । ୩୧

ଅଷ୍ଟଖଣ୍ଡ ଭୁବନ ଏ ଦେହ ପ୍ରମାଣ
ଅମ୍ବୁନିଧି ନଦ ନଗ ଆଦି ଘଟଣ । ୩୨

ଅନୁକ୍ଷଣେ କେତେ ସ୍ଥାନମ ନ ଅଛନ୍ତି
ଅଟେ ଏ ବିରାଟ ଦେହ ଅଙ୍ଗ ବିଭୂତି । ୩୩

ଅଶେଷ ସଂସାର-ବନ୍ଧା ଏହା ଈଶ୍ୱର
ଅବ୍‌କାସନାଦି ସକଳ ଦାସ ତାଙ୍କର । ୩୪

ଅଣୁଠାରୁଁ ଦେହଯାଏ ଚତୁଃଖାନିର
ଅନୁପୋଷଣେ କୋଳନ୍ତି ସେ ବିଶ୍ୱମ୍ଭର । ୩୫

ଅବା ତୁ ବୋଲିବୁ ରାଜା କେତେ ତ ଛନ୍ତି
ଅଶନାଧିବଦି ମହୀପାଳ ପ୍ରଭୃତି । ୩୬

ଅଜ୍ଞାନରେ କର୍ତ୍ତା ଆମ୍ଭେ ବୋଲନ୍ତି ଏହୁ
ଅଛୁ ଯେ ଉଦାହରଣ ଏଥିକୁ କହୁଁ । ୩୭

ଅକ୍ଷି ନାସା ରସନା ଶ୍ରବଣ ଚରମ
ଅଙ୍ଘ୍ରି ଆଦି କରୁଛନ୍ତି ଯେ ଯାହା କର୍ମ । ୩୮

ଅଟେ ଏଥି ଆତ୍ମାମନ ଯୋଗେ ମୂଳ
ଅଭାବେ ତାର ଇନ୍ଦ୍ରିୟେ ଯଥା ବିଫଳ । ୩୯

---

୩୨ । ଅଷ୍ଟଖଣ୍ଡ—ଚଉଦ । ଅମ୍ବୁନିଧି—ସମୁଦ୍ର । ନଗ-ପର୍ବତ । ଘଟଣ—ସୃଷ୍ଟି । ୩୩ । ବିରାଟ ଦେହ—ବିରାଟ ପୁରୁଷଙ୍କର । ବିଭୂତି—ଐଶ୍ୱର୍ଯ୍ୟ । ୩୪ । ଅବ୍‌ଜାସନ ସକଳ— ବ୍ରହ୍ମ ପର୍ଯ୍ୟନ୍ତ । ୩୫ । ଚତୁଃଖାନିର—ଉଦ୍ଭିଜ, ସ୍ୱେଦଜ, ଅଣ୍ଡଜ, ଜରାୟୁଜ ଏହି ଚତୁଃପ୍ରକାର ପ୍ରାଣୀଙ୍କର । ଅନୁପୋଷଣେ—ପୋଷଣ କରୁଥିବାରୁ । ୩୬ । ଅଶନାଧିବଦି—ଇନ୍ଦ୍ର ପ୍ରଭୃତି । ମହୀପାଳ—ଅନ୍ୟାନ୍ୟ ମର୍ତ୍ତ୍ୟର ରାଜା । ୩୮ । ଅକ୍ଷି—ଆଖି । ନାସା—ନାକ । ଶ୍ରବଣ—କର୍ଣ୍ଣ । ଚରମ—ଚର୍ମ । ଅଙ୍ଘ୍ରି-ପାଦ (ଅର୍ଥାତ୍ କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟମାନେ) । ୩୯-୪୦ । ଅଟେ···ବିଫଳ—ଆତ୍ମା ଓ ମନ ସହିତ ଇନ୍ଦ୍ରିୟର ସଂଯୋଗ ନ ହେଲେ, ରୂପ, ରସ, ଗନ୍ଧ, ସ୍ପର୍ଶ ପ୍ରଭୃତି ବିଷୟ ଗୃହୀତ ହୋଇପାରେ ନାହିଁ । ସେହିପରି ଈଶ୍ୱର

ଅଖିଳନାୟକ ସର୍ବମୟ ଈଶ୍ୱର
ଅଟନ୍ତି ଏ ରଜା ସର୍ବେ ନିମିତ୍ତ ପର । ୪୦
ଅଘ ପୁଣ୍ୟେ କେବା ଧନ ରାଜା ହୁଅନ୍ତି
ଅନ୍ତ ହେଲେ ନିଜ କର୍ମେ ପୁଣି ଭ୍ରମନ୍ତି । ୪୧
ଅତଃ କାରଣୁ ଯାହାର ସୁଯୋଗ ଥାଇ
ଅବହିତ ହୀନ କର୍ମ କରଇ ନାହିଁ । ୪୨
ଅନା ମାନଧାତା ପୃଥୁ ଆଦି ନୃପତି
ଅଛନ୍ତି କାହିଁ କେ ନେଇଗଲେ ଏ ପୃଥ୍ୱୀ । ୪୩
ଅଛି ମାତ୍ର ରହି ଯଶ ଅପଯଶମାନ
ଅନ୍ତର୍ଗତେ ଏଣୁ ଅମ୍ଭ ବଚନ ଘେନ । ୪୪
ଅବମାତେ ସ୍ୱଧର୍ମ କହିବା କଷ୍ଟ
ଅନେକ-ମତ-ସମ୍ମତ ଯେହୁ ହୋଇଛି । ୪୫
ଅଲୋଭ ହୋଇବୁ ପର-ଧନେ ନୃପତି
ଅମ୍ବା ପରି ବସ୍ତିବୁ ପରଯୁବତୀ । ୪୬
ଅଧମରେ ଦୟା ଥିବ ଅବନୀଧବ
ଅଧିକ କରୁଣା ଏତେ ଠାବରେ ହେବ । ୪୭
ଅତିବୃଦ୍ଧ ବାଳକ ଅନାଥ-ଯୁବତୀ
ଅନ୍ଧ ପଙ୍ଗୁକୁ ବ୍ୟାଧି ଯେ ଅଟଳ ଅତି । ୪୮
ଅସ୍ଥାନ ସ୍ଥିତିରୁ ଅସ୍ତବ୍ୟସ୍ତ ଯେ ପ୍ରାଣୀ
ଅପବାଦେ ବୁଡ଼ି ଯାଉଥିବ ଯେ ପୁଣି । ୪୯

---

ସମସ୍ତ ଜଗତର ରାଜା । ଅନ୍ୟାନ୍ୟ ଯେଉଁମାନେ ରାଜା ବୋଲନ୍ତି, ସେମାନେ ନିମିତ୍ତ ମାତ୍ର । ଲୋକମାନେ ପାପଫଳରେ ଦରିଦ୍ର ଓ ପୁଣ୍ୟଫଳରେ ମାତ୍ର କେତେ ଦିନ ପାଇଁ ରଜା ହୁଅନ୍ତି । ସେ ପୁଣ୍ୟ ବା ପାପ ଭୋଗ ହୋଇଗଲେ ପୁଣି ସ୍ୱ ଅବସ୍ଥା ପ୍ରାପ୍ତ ହୁଅନ୍ତି । ଏଣୁ ଯାହାର ସୁଦଶା ଥାଏ, ସେ ଅବିଧି କାର୍ଯ୍ୟ କରେ ନାହିଁ । ଦେଖ ! ମାନଧାତା, ପୃଥୁ ଆଦି କେତେ କେତେ ରାଜା ନ ଥିଲେ ! ସେ ଅଛନ୍ତି କି ? ନା ସେମାନଙ୍କ ମଧ୍ୟରୁ କେହି ଏ ପୃଥ୍ୱୀକୁ ନେଇଗଲେ କି ? କେବଳ ଯଶ ବା ଅପଯଶମାନ ସଂସାରରେ ରହିଛି ସିନା । ମୋର ଏ କଥାକୁ ମନରେ ଧାରଣା କରି ରଖ । ୪୦-୪୪ । କଷ୍ଟ ରାଜଧର୍ମ କହୁଥାଇଁ । ବହୁ ବିଜ୍ଞବ୍ୟକ୍ତି ଏହାକୁ ସମ୍ମାନ ଦେଖାଇଥାନ୍ତି । ହେ ରାଜା ! ପରଧନରେ ଲୋଭ କରିବୁ ନାହିଁ, ପର ଯୁବତୀକୁ ମାତାପରି ଜ୍ଞାନ କରିବୁ । ଅକ୍ଷମ ବ୍ୟକ୍ତିଙ୍କଠାରେ ଦୟା କରୁଥିବୁ । ଅତି ବୃଦ୍ଧ, ବାଳକ, ବିଧବା, ଯୁବତୀ, ଅନ୍ଧ, ପଙ୍ଗୁ, କୁଷ୍ଠ ପ୍ରଭୃତି

ଅରିବର୍ଗ ବେଢ଼ିଥିବେ ଯାକୁ ଆକର୍ଷି
ଅତି ଆର୍ତ୍ତେ ଶରଣ ଯେ ପଶିବ ଆସି । ୫୦

ଅଶନ-ଅଭାବେ ଶୀର୍ଣ୍ଣ ବସନହୀନ
ଅଧନରେ ଶୁଦ୍ଧ ହୋଇ ନ ପାରେ ଯେ ଜନ । ୫୧

ଅକ୍ଷମ୍ୟରୁ ବ୍ରାହ୍ମଣର ନ ଥିବ ବଳ
ଅତିକ୍ରମୁଥିବ ବିଭା ବ୍ରତର କାଳ । ୫୨

ଅଚଳେ ବିବାହକୃତ୍ୟ ଯେବେ ନୋହିବ
ଅଗାରେ ଯା ରଜସ୍ୱଳା କୁମାରୀ ଥିବ । ୫୩

ଅନୁସରିଥିବ ନିଶିଦିନ ଯେ ନିତ୍ୟ
ଅନନ୍ୟଗତିକ ଅବା କ୍ଷୁଧାତୃଷାର୍ତ୍ତେ । ୫୪

ଅବଶ୍ୟ ଏତେକଙ୍କଠାରେ କରିବୁ ଦୟା
ଅହିତ ହୋଇ ସେ ପଛେ କରନ୍ତୁ ମାୟା । ୫୫

ଅନୁପଯୋଗୀ ଏ ଗିର ଯେଣିକୁ ନାହିଁ
ଅତି ଆର୍ତ୍ତେ କୃପାକର ଧରଣୀସାଇଁ । ୫୬

ଅଥ ସର୍ବୋପରି ଧର୍ମ କହିବି ଆର
ଅଥ ଶ୍ରବଣ କର ନ କର ଧୀବର । ୫୭

---

ବ୍ୟାଧିପୀଡ଼ିତ ବ୍ୟକ୍ତି, ଚଳନଶକ୍ତିରହିତ ବ୍ୟକ୍ତି, ଯେ ଅନୁପଯୁକ୍ତ ସ୍ଥାନରେ ଅସ୍ତବ୍ୟସ୍ତ ହୋଇଥିବ, ଯେ ଅପବାଦ(ନିନ୍ଦା)ରେ ବୁଡ଼ିଥିବ, ଯାହାକୁ ଶତ୍ରୁମାନେ ଘେରିଥିବେ, ଯେ ଅତି ପୀଡ଼ା ପାଇ ଶରଣ ପଶିଥିବ, ଯେ ଖାଇବାକୁ ନ ପାଇ ଦୁର୍ବଳ ହୋଇଥିବ, ଯାହାର ପିନ୍ଧିବା ଲୁଗା ମଧ୍ୟ ନ ଥିବ, ଧନ ନ ଥିବାରୁ ଯେ ଶୁଦ୍ଧ ହୋଇପାରୁ ନ ଥିବ, ଯେଉଁ ବ୍ରାହ୍ମଣର ଅସାମର୍ଥ୍ୟ ହେତୁ ବିବାହ ବା ବ୍ରତ (ଉପନୟନ) କାଳ ଗଡ଼ିଯାଉଥିବ, ଯାହାର ଘରେ ଅବିବାହିତା ରଜସ୍ୱଳା କନ୍ୟା ଥିବ, ଯେ ରାତିଦିନ ଅନୁସରଣ କରିଥିବ, ଯାହାର ଅପର କୌଣସି ଗତି ନ ଥିବ, ଯେ କ୍ଷୁଧା ବା ତୃଷାରେ ଆର୍ତ୍ତ ହୋଇଥିବ, ସେମାନେ ଶତ୍ରୁତା କରି ତୋର ପାଖରେ କପଟ ବ୍ୟବହାର କରନ୍ତୁ ପଛକେ, ତୁ ସେମାନଙ୍କୁ ଦୟା କରୁଥିବୁ । ଏ ସବୁ କଥା ଅନୁପଯୋଗୀ ବୋଲି ମନେ କରିବୁ ନାହିଁ । ଶେଷ କଥା କହୁଛି--ଅତି ଆର୍ତ୍ତ ବ୍ୟକ୍ତିକୁ ନିଶ୍ଚୟ ଦୟା କରିବୁ । ଏହା ପରେ ସର୍ବଶ୍ରେଷ୍ଠ ଧର୍ମ ମୁଁ ତୋତେ କହୁଛି । ତୁ ଏହା ଶୁଣ ବା ନ ଶୁଣ, ତୋ ଇଚ୍ଛା ।

ଅଶେଷ ଜୀବ ସନ୍ତୋଷ ଯେ କରିପାରେ
ଅତଃପର ଧର୍ମ କର୍ମ ନାହିଁ ସଂସାରେ । ୬୮

ଅନେକ ଶାସ୍ତ୍ର ଆଗମ ନିଗମ ସାର
ଅଟେ ଏ କର୍ମ ଈଶ୍ୱର ସନ୍ତୋଷକର । ୬୯

ଅବନୀଧବର ବର ଧର୍ମ ଆହୁରି
ଅଛି ଯା କହିବା ଶୁଣ ନିଶ୍ଚଳ କରି । ୭୦

ଅଖଣ୍ଡମଣ୍ଡଳେ ଥିବ ରାଜ୍ୟାଧିକାର
ଅମରପତି-ସମ୍ପତ୍ତି ଥିବ ତା ପୁର । ୭୧

ଅଗାରେ ଥିବ କେଳିଶସମ ସୁଦଶ
ଅରି ଥରି ଉଠୁଥିବ ତା ନାମ ଶ୍ରୁତି । ୭୨

ଅଙ୍ଗମାତ୍ର ଅଟନ୍ତି ସେ ସକଳ ହେତୁ
ଅଟୁ ପ୍ରଜାପାଳନ ଯେ ଜାଣିଥାଅ ତୁ । ୭୩

ଅବନୀ ଚଷିବା ଜନ ନୋହେ କେବଳ
ଅଟନ୍ତି ସାଧାରଣରେ ପ୍ରଜା ସକଳ । ୭୪

ଅଶ୍ରୁ ପ୍ରଜାର ଯେମନ୍ତ ପଡ଼େ ଭୂପରେ
ଅନିଷ୍ଟ ନୃପର ନାହିଁ ଏଥି ଉପରେ । ୭୫

---

୫୭—୭୫

ସମସ୍ତ ପ୍ରାଣୀଙ୍କି ସନ୍ତୁଷ୍ଟ କରି ପାରିଲେ ତାହାଠାରୁ ବଳି ଧର୍ମକାର୍ଯ୍ୟ ସଂସାରରେ ନାହିଁ । ସମସ୍ତ ଶାସ୍ତ୍ର ବେଦ ତନ୍ତ୍ରାଦିରେ ଏହା ଶ୍ରେଷ୍ଠ, ଈଶ୍ୱର-ତୃପ୍ତିକର ବୋଲି କଥିତ ହୋଇଅଛି । ଆହୁରି ମଧ୍ୟ ରାଜାର ଅନ୍ୟଧର୍ମ ଅଛି । ତାହା କହୁଛି, ଧିରଭାବରେ ଶୁଣ । ରାଜାର ରାଜ୍ୟରେ ଅଖଣ୍ଡ ଅଧିକାର, ଗୃହରେ ଇନ୍ଦ୍ରପରି ସମ୍ପତ୍ତି, (କେଳିଶ) ଚିତ୍ତ ହର ସ୍ତ୍ରୀ ଥିଲେହେଁ, ତାହାର ନାମ ଶୁଣି ଶତ୍ରୁ କମ୍ପି ଉଠୁଥିଲେ ସୁଦ୍ଧା, ତାହାସବୁ ରାଜ୍ୟର ଗୋଟିଏ ଅଙ୍ଗମାତ୍ର । କିନ୍ତୁ ସୁଖରେ ପ୍ରଜାପାଳନ ସମସ୍ତଙ୍କର ମୂଳ ଅଟେ । ଏ କଥା ଉତ୍ତମରୂପେ ମନେ ରଖିଥାଅ । ପ୍ରଜା କହିଲେ କେବଳ ଭୂଇଁ ଚଷୁଥିବା ଲୋକ (ଚଷା)ଙ୍କୁ ବୁଝାଏ ନାହିଁ । ସାଧାରଣତଃ ସମସ୍ତେ ପ୍ରଜା ଅଟନ୍ତି । ସେହି ପ୍ରଜାମାନଙ୍କର ଅଶ୍ରୁ (ଲୁହ) ଯେବେ ଭୂମିରେ ପଡ଼େ, ତେବେ ତାହାକୁ ବଳି ରାଜାର ଅନିଷ୍ଟ କଥା ଆଉ କିଛି ନାହିଁ ।

ଅଛୁ ସର୍ବଗୁଣ ନାହିଁ ପ୍ରଜାପାଳନ
ଅଟେ ସେ ପୀୟୂଷ ବିଷ-ବେଷ୍ଟି ଭଜନ । ୬୬
ଅଟନ୍ତି ପ୍ରଜା କୁସୁମ-ଲତିକା ବତ
ଅବନୀଶ ମାଳୀ ସମ ପାଳ ନିଯୁତ । ୬୭
ଅନୁରୂପ କର କର-କୁସୁମ ତୋଳ
ଅଧିକ ନ ନେବ ଧନ-ପଲ୍ଲବ-ଦଳ । ୬୮
ଅଦଣ୍ଡ୍ୟ ଅଟନ୍ତି ବୃଦ୍ଧ ବାଳକ ନାରୀ
ଅଅ ପ୍ରଜାଦୋଷେ ଦଣ୍ଡ ନେବ ବିଚାରି । ୬୯
ଅତି ଦୋଷରେ ଦଣ୍ଡିବ ଶାସ୍ତ୍ର ପ୍ରମାଣ
ଅବଶ୍ୟ ଦଣ୍ଡ୍ୟ ଯେ ଦଣ୍ଡଧର ତା ଶୁଣ । ୭୦
ଅସ୍ୱନମାରକ ଗୁରୁ-ବୈଷ୍ଣବଦ୍ରୋହୀ
ଅମ୍ବା ପିତା ବ୍ରାହ୍ମଣ ଯେ ଜଷଣ ଦେଇ । ୭୧

---

୬୬—୭୧

ଯେଉଁ ରାଜାର (ଦାନ, ଧର୍ମ ଆଦି) ସବୁ ଗୁଣ ଅଛି, କିନ୍ତୁ ପ୍ରଜାରଞ୍ଜନ ଗୁଣ ନାହିଁ, ସେ ବିଷମିଶ୍ରିତ ଅମୃତ ପରି ଅଟେ । ପ୍ରଜାମାନେ ପୁଷ୍ପିତା ଲତାପରି ଅଟନ୍ତି । ରାଜା ମାଳୀ ସଦୃଶ ସେମାନଙ୍କୁ ପାଳନ କରେ । ମାଳୀ ଲତାରୁ ଫୁଟିଲା ଫୁଲ ତୋଳିଲା ପରି ରାଜା ସେମାନଙ୍କଠାରୁ ରାଜସ୍ୱ ଗ୍ରହଣ କରେ, କିନ୍ତୁ ମାଳୀ ଯେପରି ଫୁଲ ଆଶାରେ ବହୁତ ପତ୍ର ବା କଢ଼ ତୋଳେ ନାହିଁ; ରାଜା ସେହିପରି ପ୍ରକୃତ ରାଜସ୍ୱ ବ୍ୟତୀତ ଅପର ଧନ ସେମାନଙ୍କଠାରୁ ଗ୍ରହଣ କରିବେ ନାହିଁ ।

"ଉତ୍ତୁଙ୍ଗାନ୍ ନମୟନ୍ ନତାନ୍ ସମୁଦୟନ୍ ମ୍ଳାନାନ୍ ମୁହୁଃ ସେଚୟନ୍
ଝୁଦ୍ରାନ୍ କଣ୍ଟକତୋ ବହିର୍ବିରସୟନ୍ ବିଶ୍ଳେଷୟନ୍ ସଂହତାନ୍
ଉତ୍ଖାତାନ୍ ପ୍ରତିରୋପୟନ୍ କୁସୁମିତାନ୍ ଚିନ୍ୱନ୍ ଶିଶୂନ୍ ବର୍ଦ୍ଧୟନ୍
ମାଳାକାର ଇବ ପ୍ରୟୋଗନିପୁଣୋ ରାଜା ଚିରଂ ଜୀବତୁ ।"—(ଚାଣକ୍ୟଃ)

ବୃଦ୍ଧ, ବାଳକ ଓ ନାରୀ ଏମାନେ ଦଣ୍ଡଯୋଗ୍ୟ ନୁହନ୍ତି । ଅଦଣ୍ଡ୍ୟ ପ୍ରଜା ଦୋଷ କଲେ ଉତ୍ତମରୂପେ ବିଚାର (ତଦନ୍ତ) ଦଣ୍ଡରୂପେ ଅର୍ଥ ଗ୍ରହଣ କରିବ । ଯେବେ ଅତି ଦୋଷ କରନ୍ତି, ତେବେ ଶାସ୍ତ୍ରାନୁସାରେ ଦଣ୍ଡ ଦେବ । ଯେଉଁମାନଙ୍କୁ ନିଶ୍ଚୟ ଦଣ୍ଡ ଦେବ, ତାହା କହୁଅଛି ଶୁଣ । (ଅସ୍ୱନମାରକ) ଖୁଣ୍ଟ, ଗୁରୁ, ବୈଷ୍ଣବ ବାପ, ମା, ବ୍ରାହ୍ମଣ—ଏମାନଙ୍କୁ ଯେ ଦୁଃଖ ଦିଏ ।

ଅଗମ୍ୟା ଗମନ କରେ ପ୍ରାଣିନାଶନ
ଅତର୍କିତେ ପ୍ରାଣ ନେଇ ହରଇ ଧନ । ୭୨
ଅନୁକ୍ଷଣେ ନାନା ଜୀବ ମାରଇ ସ୍ନେହେ
ଅଗ୍ନି ଗୁପତେ ଲଗାଇ ପ୍ରାଣୀଙ୍କ ଗୃହେ । ୭୩
ଅଶନରେ ବିଷ ଦେଇ ନାଶଇ ଜନ
ଅବିଦ୍ୟା ପ୍ରବୃତ୍ତି ବେଦ କରେ ଉଚ୍ଛନ୍ନ । ୭୪
ଅଗଠାରେ ସନ୍ଧି କହି ଗଡ଼ ମଝିରେ
ଅଜ୍ଞାତେ ଶତ୍ରୁଙ୍କୁ ଆଣି ପୁର ଜୁରଇ । ୭୫
ଅସତ୍ୟରେ ଖଳ କରି ବୁଡ଼ାଏ କୁଳ
ଅର୍ଚ୍ଚ୍ୟ ହୋଇଲେ ଏ ଦଣ୍ଡ ଯୋଗ୍ୟ ଭୂପାଳ । ୭୬
ଅଟ ତ ତୁମ୍ଭେ କ୍ଷତ୍ରିୟକୁଳେ ସମ୍ଭୂତ
ଅଶ୍ୱ-ଆରୋହଣ କର୍ମେ ହେବ ପ୍ରଶସ୍ତ । ୭୭
ଅସି ଧନୁର୍ବିଦ୍ୟା ନାନା ଶସ୍ତ୍ରରେ ଶ୍ରମ
ଅଙ୍ଗବଳେ ମାଲସାଧନ ହିଁ ଉତ୍ତମ । ୭୮
ଅରୁଣୋଦୟରୁ ସାରି ସ୍ନାନ ମାର୍ଜନ
ଅଥ ସନ୍ଧ୍ୟା ପୂଜା ଜପ ଦେବଅର୍ଚ୍ଚନ । ୭୯
ଅନୁଶ୍ରବଣ ପୁରାଣ ଇଷ୍ଟ ଦର୍ଶନ
ଅନ୍ନଦାନ ଦେଇ ବିପ୍ରେ କର ଭୋଜନ । ୮୦

---

୭୨-୮୦

ଯେ ଅଗମ୍ୟା ସ୍ତ୍ରୀ ଗମନ କରେ, ଯେ ଜୀବବଧ କରେ, ଯେ ଅଜ୍ଞାଣତରେ ମାରି ଧନ ଲୁଟିନିଏ, ଯେ ଖୁସିରେ ସବଦା ନାନା ଜୀବ ମାରେ, ଗୋପନରେ ଯେ ଅନ୍ୟ ଲୋକଙ୍କ ଗୃହରେ ନିଆଁ ଲଗାଇଦିଏ, ଯେ ଖାଦ୍ୟରେ ବିଷ ଦେଇ ମାରେ, ଯେ ଅବିଦ୍ୟା ପ୍ରବୃତ୍ତ କରି ବେଦମାର୍ଗକୁ ଉଚ୍ଛନ୍ନ କରେ, ଯେ ଶତ୍ରୁଙ୍କୁ ଗୋପନ କଥା କହିଦେଇ ଗଡ଼ ମଧ୍ୟକୁ ଆଣି ନଗରି ଜୁରି କରିଏ, ଯେ ମିଛରେ ନାନା ପ୍ରକାର ଚକ୍ରାନ୍ତ କରେ, ସେ ଲୋକ ପୂଜାଯୋଗ୍ୟ ହୋଇଥିଲେ ସୁଦ୍ଧା ତାକୁ ଦଣ୍ଡ ଦେବ । ତୁମ୍ଭେ କ୍ଷତ୍ରିୟ କୁଳରେ ଜାତ; ତେଣୁ ଘୋଡ଼ାଚଢ଼ାରେ ଦକ୍ଷ ହେବା ଉଚିତ । ଖଣ୍ଡା, ଧନୁ ଓ ଅନ୍ୟାନ୍ୟ ନାନା ଅସ୍ତ୍ରଚାଳନାରେ ପରିଶ୍ରମ କରିବ । ମଲ୍ଲବିଦ୍ୟା ସାଧନ କରି ଦେହ ବଳ ବଢ଼ାଇବ । ଅରୁଣୋଦୟରୁ ଉଠି ସ୍ନାନ ସାରି ସନ୍ଧ୍ୟା, ପୂଜା, ଜପ, ଦେବାର୍ଚ୍ଚନାଦି କରି ପୁରାଣ ଶୁଣିବ ଓ ଇଷ୍ଟ-ଦେବଙ୍କ ଦର୍ଶନ କରିବ । ତତ୍ପରେ ବ୍ରାହ୍ମଣଙ୍କୁ ଅନ୍ନଦାନ କରି ଭୋଜନ କରିବ ।

ଅତନ୍ଦ୍ରା ଅବହିତ ଅଟଇ ବଡ଼
ଅଙ୍ଗ ଆଳସ ହୋଇଲେ ଦଣ୍ଡେ ପଡୁଡ଼ । ୮୧

ଅଥାନ୍ତରେ ସଭା କରି ବସ ବାହାର
ଅନ୍ତର୍ଗତେ ଯେନ ଯେଉଁ କଥା ଯାହାର । ୮୨

ଅର୍ଜନ ବ୍ୟୟ ସଞ୍ଚୟ ଲାଭ ଅଲାଭ
ଅନ୍ୟାୟ ନ୍ୟାୟ ଯେ ଆୟ ଯଥାର୍ଥେ ହେବ । ୮୩

ଅନୁଗତ ଜନଙ୍କର ପୋଷଣ ସାର
ଅଶ୍ୱ ଗଜ ପଶୁରକ୍ଷଣାଦି ସମ୍ଭାର । ୮୪

ଅନ୍ନାସ୍ଥ ଭଷ୍ଟ ସନ୍ଦେଶ ବୁଝିବା ପାଇଁ
ଅନୁଦିନେ ଗୂଢ଼ ପେଷ ସାକାଙ୍କ୍ଷ ହୋଇ । ୮୫

* ଅରିମିତ୍ର ସମ ଏ ଯେ ତିନି ପ୍ରକାରେ
ଅନ୍ତିକ ନୃପତି ଶତ୍ରୁ ପର ଦେଶରେ । ୮୬

ଅଟେ ତା ସନ୍ନିଧି ରାଜା ମିତ୍ର ପ୍ରମାଣ
ଅରିମିତ୍ର ତା ପୁରତ ନୃପତି ଜାଣ । ୮୭

ଅପରେ ସମ ଉତ୍ତମ ମଧ୍ୟମ କେହି
ଅପ୍ରୀତି ପ୍ରୀତି ଅସ୍ନେହ ସ୍ନେହରୁ ହୋଇ । ୮୮

---

୮୧—୮୮

ଦିନରେ ଶୋଇବା ଅନୁଚିତ । ଯେବେ ଶରୀର ଅତି ଅଳସ ହୋଇଥାଏ, ତେବେ ଦଣ୍ଡେ ଖଣ୍ଡେ ଶୋଇପଡ଼ିବ । ତତ୍ପରେ ବାହାରେ ସଭାକରି ବସିବ । ଯେ ଯାହା ଆପତ୍ତି କରିବ; ତାହା ମନ ଦେଇ ଶୁଣିବ । ଆୟ, ବ୍ୟୟ, ସଞ୍ଚୟ, ଲାଭ, କ୍ଷତି ଅନ୍ୟାୟ, ନ୍ୟାୟ ସ୍ୱନରଙ୍କର ବେତନ ପ୍ରଭୃତି କଥା, ଘୋଡ଼ା, ହାତୀ ପ୍ରଭୃତି ପଶୁମାନଙ୍କର ରକ୍ଷା ପ୍ରଭୃତି ବୁଝିବ । ଜନମନ ଖବର ଜାଣିବା ପାଇଁ ଗୁପ୍ତଆଡ଼େ ଚର ପେଷିବ । ଅନ୍ୟ ଦେଶର ରାଜା ଶତ୍ରୁ, ମିତ୍ର, ସମ ଏହି ତିନିପ୍ରକାର ହୋଇଥାନ୍ତି । ନିକଟବର୍ତ୍ତୀ ରାଜା ଶତ୍ରୁ, ତାହା ପାଖରାଜା ମିତ୍ର ଓ ତାହା ପାଖ ରାଜା ଅରିମିତ୍ର ବୋଲି କଥିତ ହୁଅନ୍ତି । ଅନ୍ୟାନ୍ୟମାନେ ସମ ଉତ୍ତମ ଓ ମଧ୍ୟମ ବୋଲି କଥିତ । ଏହା ସ୍ନେହ, ଅସ୍ନେହ, ପ୍ରୀତି ଓ ଅପ୍ରୀତି ବଶରୁ ସ୍ଥିର କରାଯାଏ ।

* ଅନନ୍ତରମରିଂ ବିଦ୍ୟାଦରିସେବିନମେବ ଚ ।
ଅରେରନନ୍ତରଂ ମିତ୍ରମୁଦାସୀନଂ ତୟୋଃ ପରଂ ।

ମନୁ । ୭ । ୧୫୮

ଅସି ହାଣ ଥିଲେ ସର୍ବେ ମାତ୍ର ଶଙ୍କିତ
ଅଳ୍ପ ଊଣା ହେଲେ ତାର ମିତ୍ର ଅମିତ୍ର । ୮୯
ଅବନୀ-ଭୋଗ କରିବା କାର୍ଯ୍ୟ ନୃପର
ଅବୋଧ ହୋଇବା କଥା ଅଟେ ବସ୍ତୁର । ୯୦
ଅଷ୍ଟଦୁର୍ଗେ ଦୁଃଖମାନଙ୍କରେ ନିର୍ମିତ *
ଅଚଳ-ଆବୃତ ଗଡ଼ ବଡ଼ ପ୍ରଶସ୍ତ । ୯୧
ଅଶ୍ମକାନ୍ଥ ଅମ୍ବୁପୂର୍ଣ୍ଣ ଜଳୀ ଯେ ଧନ୍ୟ
ଅରଣ୍ୟସ୍ଥ ବଂଶ ଅର ଗଡ଼ ସାମାନ୍ୟ । ୯୨
ଅଥ ମାଟିକାନ୍ଥ ଗୁଡ଼ା ଏଥୁଁ ନିଉନ
ଅତି ଊଣା ଫମ୍ପଲ କାଳକା ବିଧାନ । ୯୩
ଅଦ୍ରିମଧ୍ୟ ଗଡ଼ ଯେ ବିଧାତା ନିର୍ମାଣ
ଅନ୍ନ ଜଳ ଦଳ ବଳ ନଳୀ କମାଣ । ୯୪
ଅପ୍ରମିତ ଦାରୁ ଗୁଳି ଥିବ ଯେ ତହିଁ
ଅସୂନ ବେନି ଦ୍ୱାରେ ଗୁପତ ହୋଇ । ୯୫
ଅର୍ଦ୍ଧକୋଣେ ଆଗେ ପଛେ ତଉକ ଥିବେ
ଅନ୍ୟ ଦେଶ ଭୂମି ନ କଳିବେ ତା କେବେ । ୯୬

---

୮୯—୯୬
ଖଣ୍ଡା ହାଣ ଥିଲେ (ଯୁଦ୍ଧ ସାମର୍ଥ୍ୟ ଥିଲେ) ସମସ୍ତେ ଶଙ୍କା କରୁଥାନ୍ତି । ତାହା ଅଳ୍ପ ଊଣା ହେଲେ ମିତ୍ର ମଧ୍ୟ ଅମିତ୍ର ହୁଅନ୍ତି । ପୃଥିବୀକୁ ଭୋଗ କରିବା ରାଜାର କାର୍ଯ୍ୟ ବୋଲି ଅଜ୍ଞାନମାନେ କହୁଥାନ୍ତି । ଅଷ୍ଟଦୁଃଖରେ ନିର୍ମିତ ପର୍ବତ-ବେଢ଼ିଥିବା ଗଡ଼ ସବୁଠାରୁ ଶ୍ରେଷ୍ଠ । ପଥର କାନ୍ଥ ଓ ପରିଖା (ଗଡ଼ଖାଇ) ବେଷ୍ଟିତ ଗଡ଼ ମଧ୍ୟମ, ଜଙ୍ଗଲର ବାଉଁଶ ବେଷ୍ଟିତ ଗଡ଼ ଅଧମ ଶ୍ରେଣୀର ଅଟେ । ମାଟିକାନ୍ଥର ଗଡ଼ ଏହାଠାରୁ ନ୍ୟୂନ । ଫମ୍ପଲ କାଳକା ବିଧିର ଗଡ଼ ସବୁଠାରୁ ହୀନ (?) ପର୍ବତବେଷ୍ଟିତ ଗଡ଼ ବିଧାତାନିର୍ମିତ (ପ୍ରାକୃତିକ) ଅଟେ । ଏଥିରେ ଖାଦ୍ୟ ଦ୍ରବ୍ୟ, ଯନ୍ତ୍ର ସୈନ୍ୟ, ନଳୀ (ବନ୍ଧୁକ), କମାଣ (ତୋପ), ପ୍ରଚୁର (ଦାରୁ) ବାରୁଦ ଓ ଗୁଳି ସର୍ବଦା ମହଜୁଦ୍ ଥିବ । ଦୁଇଟି ଗୁପ୍ତଦ୍ୱାର ମଧ୍ୟ ଥିବ । ଆଗରେ ଓ ପଛରେ ପ୍ରତି ଅଧକୋଣରେ ତଉକା (ଜଗୁଆଳ) ଥିବେ । ଅନ୍ୟ ଦେଶର କେହି ଯେପରି ଏଥି ମଧ୍ୟରେ ପଶି ସୈନ୍ୟ, ସ୍ଥାନ ପ୍ରଭୃତିର କଳନା ନ କରିବେ, ତାହାର ବ୍ୟବସ୍ଥା କରିବା ଉଚିତ ।

* ଅଷ୍ଟ ଦୁଃଖେ ଦୁର୍ଗମାନଙ୍କରେ ?

ଅଗୋଚରେ କେହ୍ବ ଗଡ଼େ ପଶିବେ ନାହିଁ
ଅବମାଶ ଏ ଦୁର୍ଗେ ରଚିବା ଯୋଗାଇ । ୯୭
ଅଶ୍ମ ନାନ୍ଥ କଲୀ ଗଡ଼ ଶ୍ରମ ବହୁତ
ଅଷ୍ଟକୋଣ କୃତରେ ସେ ହୋଏ ନିର୍ମିତ । ୯୮
ଅଧୋଭାଗେ କାନ୍ଥେ ଧାଡ଼ିଆ ପଦଣ୍ଡ
ଅଷ୍ଟ ଅଷ୍ଟ ହାତେ ରେପିଥିବ ଯେ ଗୁଣ୍ଡ । ୯୯
ଅନ୍ତରେ ଏଥିର ବେଣ ଜଗାଲ ନଳୀ
ଅନୁରୂପେ ଭଣ୍ଡୀ ସ୍ଥାନମାନଙ୍କୁ ନଳ । ୧୦୦
ଅଧ ଊର୍ଦ୍ଧ୍ୱ ସମ ଆଉ ଉହାଡ଼ ସ୍ଥଳ
ଅଭେଦ ଗୁଳକାଣ୍ଡ-କୂଳ ଥିବ ମୂଳ । ୧୦୧
ଅଥ ମଧ୍ୟ ଷୁଭ୍ରକୋଣ କାନ୍ଥୁ ବନାଇ
ଅଶ୍ମରେ ଦୃଢ଼ ମେଉଦା ଥିବ ତୋଳାଇ । ୧୦୨
ଅଗ୍ରେ ବେଣ ମାଶେ ତାର ରେପିଲେ ନଳୀ
ଅଭେଦ କାନ୍ଥ ତଳକୁ କାଟିବ ଗୁଳି । ୧୦୩
ଅମ୍ବୁଜଳୀ ଏ ଉଗ୍ରନ୍ଧ ଅଗ୍ରେ ବେଷ୍ଟିତ
ଅତି ନିମ୍ନ ନକ୍ର ଚକ୍ର ଥିବେ ଅମିତ । ୧୦୪

---

୯୭—୧୦୪

ଅଜାଣତରେ କେହ୍ବ ଏ ଦୁର୍ଗରେ ପ୍ରବେଶ କରିବେ ନାହିଁ । ଏହ୍ବ ପ୍ରକାର ଦୁର୍ଗରେ ରଜାର ରହିବା ଉଚିତ । ପଥର କାନ୍ଥ କଳଖାଇ ବେଷ୍ଟିତ ଗଡ଼ ନିର୍ମାଣରେ ବଡ଼ ପରିଶ୍ରମ ଲାଗେ । ଏହାର ଆକୃତି ଆଠକୋଣିଆ ହୁଏ । କାନ୍ଥତଳେ ଧାଡ଼ିଆ ପ୍ରକଣ୍ଡ ଥିବ । ପ୍ରତି ଆଠହାତ ଅନ୍ତରରେ ଗୋଟିଏ ଗୋଟିଏ ତୋପ ଖଞ୍ଜାଥିବ । ଏହ୍ବ ତୋପମାନଙ୍କ ମଝିରେ ଦୁଇ ଦୁଇ ଗୋଟି ଜଗାଲ ନଳ ଖଞ୍ଜା ହୋଇଥିବ ତାହା ସବୁ ଉପଯୁକ୍ତ ଭଣ୍ଡି (ପାଚିଶ ମଝିରେ ଭିତରୁ ଗୁଳ ମାରିବାପାଇଁ ଥିବା ଛିଦ୍ର) ଯାଗାମାନଙ୍କରେ ଥିବ । ତଳ, ଉପର ଓ ଉହାଡ଼ ଯାଗାମାନଙ୍କରେ ଗୁଣ କାଣ୍ଡ ପ୍ରଭୃତି ରହିଥିବ । ଦୁର୍ଗକାନ୍ଥ ମଧ୍ୟସ୍ଥାନ ଷୁଭ୍ରକୋଣ ପରିମାଣ ହୋଇଥିବ । ତାହାର ମଧ୍ୟରେ ପଥରରେ ଖୁବ୍ ଦୃଢ଼ ମେଉଦାଟିଏ ତୋଳା ହୋଇଥିବ । ତାହାର ଉପରେ ଦୁଇପାଖରେ ନଳ ବସାଇ ଗୁଳକଲେ କାନ୍ଥତଳ ପର୍ଯ୍ୟନ୍ତ ଯେପରି ଗୁଳ କାଟିବ, ତାହା କରାଯାଇଥିବ । ଏହା ପରେ ଗଡ଼ଖାଇ ଥିବ । ସେ ଅତି ଗଭୀର ଓ କୁମ୍ଭୀରସମୂହରେ ପୂର୍ଣ୍ଣ ହୋଇଥିବ ।

ଅସ୍ବନ ନାଳ ଉପରେ ବାନ୍ଧି ପାଷାଣ
ଅଗଣ୍ତ ସମ କପାଟ ଦୃଢ଼େ ଘଟଣ । ୧୦୪
ଅନୁକ୍ଷଣ ଦ୍ୱାରେ ଥିବେ ସୁରକ୍ଷ ନର ?
ଅନେକ ପ୍ରକାରେ ଥିବ ଶସ୍ତ୍ରାସ୍ତ୍ରଭାର । ୧୦୫
ଅନ୍ତରେ ଗଡ଼ର ଥିବ ଚଣ୍ଡୁଳ ପୂର
ଅଲଗା ନିର୍ଜନ ସ୍ଥାନେ ବାରୁଦଘର । ୧୦୬
ଅସିଢ଼ାଲ ଧନୁଶର ଶାବେଳ ନଳୀ
ଅର ଆଦ ଅସ୍ତ୍ରଧାରୀ ଯେ ମହାବଳୀ । ୧୦୮
ଅଶ୍ୱ ହାତୀ ଓଟ ଗଡ଼ୁ ଶଗଡ଼ ଯାନ
ଅନ୍ତିକେ ଥାନ୍ତୁର ହେବ ଏତେ ସଦନ । ୧୦୯
ଅଥ ପୁଷ୍କରିଣୀ ଉପବନ ଆଖଡ଼ା
ଅମାର ନାନା ଜିନିଷ ଯେ ଗ୍ରଜଲେଣ୍ଡା । ୧୧୦
ଅନୁରୂପ ସ୍ଥାନେ କରିଥିବା ଏମାନ
ଅଭିମିତ ଚନ୍ଦ୍ର ବୃଦ୍ଧି ନୃପସଦନ । ୧୧୧
ଅତି ପ୍ରଶସ୍ତ ଶିଳେ ହେବ ନବର
ଅମର ଭୁବନ ହେବ ତଥି ଆଗର । ୧୧୨
ଅନୁକୋଣେ ମେରୁଦାରେ ପତାକାଗଣ
ଅତି ଠାଣ ବାଜୁଥିବ ବୀର ନିଶାଣ । ୧୧୩

---

୧୦୪-୧୧୩—ସେ ଖାଇ ଉପରେ ପଥରରେ ବାଟଟିଏ ତିଆର କରାଯାଇଥିବ । ସେଠାରେ ବଜ୍ରପରି ଠାଣ କବାଟ ମଧ୍ୟ ତିଆରି କରିଥିବ । ଦୁଆରେ ସବୁବେଳେ ସଶସ୍ତ୍ର ପହରୀ ଥିବେ । ନାନାପ୍ରକାର ଅସ୍ତ୍ର ଶସ୍ତ୍ର ମଧ୍ୟ ଥିବ । ଗଡ଼ମଝିରେ ଖାଦ୍ୟ-ଭଣ୍ଡାର ଓ ନିର୍ଜନ ସ୍ଥାନରେ ବାରୁଦଘର ଥିବ । ଅସି, ଢ଼ାଲ, ଧନୁଶର, ଶାବେଳୀ ବନ୍ଧୁକ, ଚନ୍ଦ ଆଦ ଅସ୍ତ୍ରଧାରୀ ବୀରମାନଙ୍କର, ଘୋଡ଼ା, ହାତୀ, ଓଟ ପ୍ରଭୃତି ପଶୁମାନଙ୍କର ଗାଡ଼ି, ଶଗଡ଼ ପ୍ରଭୃତି ଯାନମାନଙ୍କର ରହିବା ସ୍ଥାନ କାନ୍ଥ ନିକଟରେ କରାଯାଇଥିବ । ତତ୍ପରେ ପୋଖରୀ, ବଗିଚା ଆଖଡ଼ା (ମଲ୍ଲବିଦ୍ୟା ଶିଖିବା ସ୍ଥାନ) ରାଜାଙ୍କର ବ୍ୟବହାରାର୍ଥ ଯବର୍ଣ୍ଣିସ୍ତ ଜିନିଷର ଭଣ୍ଡାର ତିଆରି କରିଥିବ । ଜ୍ୟୋତିଷ ମତରେ ଅଭିମିତ—ଚନ୍ଦ ବୃଦ୍ଧି ଅତି ଉଜ୍ଜ୍ୱଳ (ଠାଣ ?) ପଥରରେ ରାଜାଙ୍କ ରହିବା ଘର ତିଆରି କରିବ । ରାଜାଙ୍କର ଗୃହ ଆଗରେ ଦେବାଳୟ ତିଆରି ହେବ । ଗୃହର ସବୁ କୋଣରେ ମେରୁଦା ଉପରେ ପତାକା ଦିଆଯାଇଥିବ । ସେଠାରେ ବୀରବାଦ୍ୟ ବାଜୁଥିବ ।

ଅରୁଣ ଅସ୍ତରେ ବୁଲୁଥିବ ଡଙ୍କା
ଅନ୍ତରେ ଭିତରେ ବାଦ୍ୟ ବଜାଇ ଡାକ । ୧୧୪

ଅନୁରୂପେ ଯେ ଯେଉଁ ମୁରୁଗ-ରକ୍ଷକ
ଅନ୍ତେଶ ଥାନରେ ଜଗିଥିବେ ସେ ଲୋକ । ୧୧୫

ଅନ୍ନ ବସନେ ସେ ହୋଇଥିବେ ସୁମନ
ଅସ୍ତ୍ରାଭ୍ୟାସ କରୁଥିବେ ସକଳ ଦିନ । ୧୧୬

* ଅଗ୍ରବାଂଶ ଗଡ଼ ଜଗିଥିବେ ସତତେ
ଅଭେଦ୍ୟ ହୁଅଇ ଏହା ବଜ୍ରର ଶତ୍ରେ । ୧୧୭

ଅବନୀପତି ବିବେକୀ ହୋଏ ଯେମନ୍ତ
ଅଜ୍ଞେମାନେ ତା ହେତୁ ହୋଏ ପଣ୍ଡିତ । ୧୧୮

ଅକର୍ମ ଅଧର୍ମ ଯେବେ କରେ ରାଜନ
ଅପମାନ ଲଭଇ ଉତ୍ତମ ଜନ । ୧୧୯

ଅନ୍ତଃକରଣ ଯାହାର ଅଟେ ନିର୍ମଳ
ଅଳ୍ପ ଉପଦେଶରେ ସେ ଜାଣେ ସକଳ । ୧୨୦

ଅଟ ତୁମ୍ଭେ ତ ବିବେକୀ ସର୍ବାଂଶେ ଧୀର
ଅନୁସରି ପ୍ରଜା ପାଳି ସଂସାର କର । ୧୨୧

---

୧୧୪-୧୨୧—ସନ୍ଧ୍ୟା ହେଲେ ବାହାର ପଟେ ଓ ଭିତର ପଟେ ବାଦ୍ୟ ବଜାଇ ଡାକ ମାରି ଡଙ୍କା (ଜଗୁଆଳି) ବୁଲୁଥିବ । ମୁରୁଗର ରକ୍ଷକମାନେ ପାଳିକରି ସର୍ବଦା ନିଜ ନିଜ ମୁରୁଗକୁ ଜଗିଥିବେ । ଅନ୍ନ, ବସ୍ତ୍ର ଉତ୍ତମରୂପେ ପ୍ରଦାନ କରି ସେମାନଙ୍କ ମନକୁ ପ୍ରଫୁଲ୍ଲ ରଖିଥିବ । ସେମାନେ ସବୁଦିନେ ଅସ୍ତ୍ରଶସ୍ତ୍ର ଅଭ୍ୟାସ କରୁଥିବେ । ଅଗ୍ରବାଂଶ ଗଡ଼କୁ (ବାଉଁଶ ବୃକ୍ଷ ବେଷ୍ଟିତ ଗଡ଼କୁ) ସର୍ବଦା ଜଗିଥିଲେ ତାହା ଅଭେଦ୍ୟ ହୁଏ । ରାଜା ଯେବେ ବିବେକୀ ହୁଏ, ତେବେ ମୂର୍ଖ ଲୋକେ ମଧ୍ୟ ପଣ୍ଡିତ ହୁଅନ୍ତି । ରାଜା ଅକାର୍ଯ୍ୟ ବା ଅଧର୍ମ କଲେ ଉତ୍ତମ ବ୍ୟକ୍ତିଙ୍କର ମଧ୍ୟ ଅଧୋଗତି ହୁଏ । ଯାହାର ମନ ନିର୍ମଳ, ସେ ଅଳ୍ପ ଉପଦେଶଦ୍ୱାରା ମଧ୍ୟ ସବୁ ଜାଣିପାରେ । ତୁମ୍ଭେ ବିବେକବାନ୍ ଓ ସର୍ବାଂଶରେ ବିଦ୍ୱାନ୍ ଅଟ । ଅନୁସରଣ କରି (ପ୍ରଜାମାନଙ୍କ ମନନେଇ) ରାଜ୍ୟପାଳନ ପୂର୍ବକ ସଂସାରଯାତ୍ରା ନିର୍ବାହ କର ।

* ବାର୍କ୍ଷ ଦୁର୍ଗ ନାମରେ ମନୁଙ୍କର ଉକ୍ତି । ଅ ୭ । ୭୦

ଅଶେଷ ସନ୍ତୋଷ ହେଲା ଆମ୍ଭର ମେଣୁ
ଅବଶ୍ୟ ଇଷ୍ଟ କାମନା ପାଇବ ଏଣୁ । ୧୨୨
ଅର୍ଘ୍ୟରେଣୁ କରେ ଘେନି ଶିରେ ମୋ ଦେଲେ
ଅନ୍ତର ହେଉଛି ବୋଲି ହସି ଭାଷିଲେ । ୧୨୩
ଅନୁଜ୍ଞା ତାଙ୍କର ଶୁଣି ପୁଲକେ ଗାତ୍ର
ଅଶ୍ରୁରୁ ଆନନ୍ଦଜଳ ହୋଇଲା ଜାତ । ୧୨୪
ଅତି କୃତକୃତ୍ୟ ନମସ୍କାର ହୋଇଲି
ଅଶେଷ ତାପଜପୁଞ୍ଜ ଗଲା ବୋଇଲି । ୧୨୫
ଅନୁରାଗ-ଅପାଙ୍ଗ ମୋ ଉପରେ ଢାଳି
ଅଜ୍ଞାନ-ନାଶନ ବିପ୍ର ଆନନ୍ଦେ ଚଳି । ୧୨୬
ଅସିତଗଳ-ଗଉରୀ-ବିପ୍ର-ଚରଣ
ଅଭୀଷ୍ଟରେ କରେ ବଳଭଦ୍ର-ଶରଣ । ୧୨୭

---

# ଏକତ୍ରିଂଶ ଛାନ୍ଦ

## ଭାବ-ପରିଚୟ

ରାଗ—ପଞ୍ଚମ ବରାଡ଼ି

ଏଥ ସୁ ମନେ ସୁମନେ ଶୁଣ ସାବଧାନେ ଭରତଖଣ୍ଡ ଉତ୍କଳଦେଶେ
ଅମ୍ବୁନିଧି-ତଟ-ବଟ ନିକଟେ ପ୍ରକଟ ଶ୍ରୀପୁରୁଷୋତ୍ତମ କ୍ଷେତ୍ରେଶେ । ୧

---

ମୁଁ ଅତି ସନ୍ତୁଷ୍ଟ ହୋଇଅଛି । ଅତଏବ ତୁମ୍ଭର ଅଭିଳାଷ ପୂର୍ଣ୍ଣ ହେବ । ଏହା କହି ପାଦଧୂଳି ହାତରେ ଆଣି ମୋ ମୁଣ୍ଡରେ ଦେଲେ । ଯାଉଛି ବୋଲି ହସି କହିଲେ । ମୁଁ କୃତକୃତ୍ୟ ହୋଇ ନମସ୍କାର କଲି ଓ କହିଲି—'ମୋର ଅଶେଷ ପାପରାଶି ଆଜଠାରୁ ନଷ୍ଟ ହେଲା ।' ତହୁଁ ଅଜ୍ଞାନନାଶୀ ବ୍ରାହ୍ମଣ ମୋତେ ସ୍ନେହ-ପୂର୍ଣ୍ଣ ଚକ୍ଷୁରେ ଚାହିଁ ଆନନ୍ଦରେ ଚାଲିଗଲେ । (ଅସିତଗଳ) ନୀଳକଣ୍ଠ ମହାଦେବ, ପାର୍ବତୀ ଓ ସେହି ବିପ୍ରଙ୍କ ଚରଣ ବଳଭଦ୍ର ଭଞ୍ଜ ଶରଣ କରୁଅଛନ୍ତି ।

---

### ଏକତ୍ରିଂଶ ଛାନ୍ଦ

ସୁମନେ—ପଣ୍ଡିତମାନେ । ସୁମନେ—ମନକୁ ସ୍ଥିର କରି । ସାବଧାନେ—ଏକାଗ୍ର ମନରେ ଶୁଣ । ଭରତଖଣ୍ଡେ—ଭାରତବର୍ଷରେ । ଉତ୍କଳ ଦେଶରେ (ଅମ୍ବୁନିଧିତଟ ବଟ ନିକଟେ) ସମୁଦ୍ର କୂଳରେ କଳ୍ପବଟ ନିକଟରେ (କ୍ଷେତ୍ର-ଈଶ) କ୍ଷେତ୍ରରାଜ ଶ୍ରୀପୁରୁଷୋତ୍ତମ ପ୍ରକଟ ହୋଇଅଛି । (ଅଘବଳ ପାପନାଶ କରନ୍ତେ)

ଅଘବନ୍ତ ପାପନାଶ-କରଣେ ପ୍ରକାଶ ଚତୁର୍ଦ୍ଧାମୂରତି ସିଂହାସନେ
ଅଶ୍ରୁଷ୍କନ୍ଧିଚତୁର୍ଭୁଜ ଦେବତାଙ୍କ ତେଜ ବହନ୍ତି ମନୁଜ ଯେଉଁ ସ୍ଥାନେ । ୨
ଅଛି ଏହି ପୁଣ୍ୟକ୍ଷେତ୍ର ଉତ୍ତରେ ସୁଚାର ରାଜ୍ୟ ନାମ ତାର କେନ୍ଦୁଝର
ଅଦ୍ରି-ଅରଣ୍ୟ-ଆବୃତ ଅତ୍ୟନ୍ତ କିଷ୍କିନ୍ଧ ଶତ୍ରୁ ଅଲଙ୍ଘିତ-ଦୁର୍ଗ ପୁର ।୩।
ଅନୁକମ୍ପା ଚିତ୍ତେ ବହି ତ୍ରୈଲୋକ୍ୟଗୋସାଇଁ ବଳଭଦ୍ର ପ୍ରଭୁ ଯହିଁ ବିଜେ
ଅବ୍ଜ-କର୍ପୂର-ସୁନ୍ଦର ଆନନ୍ଦକନ୍ଦର ଅଟନ୍ତି ଦେବାଧିଦେବରାଜେ । ୪
ଅନ୍ତର୍ଯ୍ୟାମୀ ସେ ଅଭୀଷ୍ଟ-ଫଳଦ ତା କଷ୍ଟ-ନାଶନ ନୀଳବସନ ବଳ
ଅନ୍ୟ ଆଶା କରି ଦୂର ତାଙ୍କ ଶ୍ରୀପଦ୍ମର ବଳଭଦ୍ର ଭଞ୍ଜ କରେ ମୂଳ । ୫

ଗୀତ

ରାଗ—ବଙ୍ଗଳାଶ୍ରୀ

ଅଛନ୍ତି ଭଦ୍ରା ଜଗନ୍ନାଥ ସୁଦର୍ଶନ ପ୍ରଭୁ-ସନ୍ନିଧିରେ
ଅତିଶୋଭାପ୍ରାପ୍ତି ଚତୁର୍ଦ୍ଧାମୂରତି ରତ୍ନସିଂହାସନ-ପରେ ।୧।

---

ପାପୀମାନଙ୍କର ପାପକୁ ନାଶ କରିବାପାଇଁ ସିଂହାସନରେ ଚତୁର୍ଦ୍ଧା ମୂର୍ତ୍ତି ହୋଇ ଅଛନ୍ତି । ଯେଉଁସ୍ଥାନେ (ପୁରୁଷୋତ୍ତମ କ୍ଷେତ୍ରରାଜରେ)(ମନୁଜମାନେ)ମନୁଷ୍ୟମାନେ (ଦନୁଭୁର୍ଜ ଦେବତାଙ୍କର) ବିଷ୍ଣୁଙ୍କର ତେଜକୁ (ବହନ୍ତି) ଧାରଣ କରିଥାନ୍ତି । ଏହି (ପୁଣ୍ୟକ୍ଷେତ୍ରର) ଠାରୁ କ୍ଷେତ୍ରର ଉତ୍ତର ଦିଗରେ (ସୁଚାର) ଉତ୍ତମ ପ୍ରାକୃତିକ ଶୋଭାରେ ପରିପୂର୍ଣ୍ଣ (ଅଦ୍ରି ଅରଣ୍ୟ ଆବୃତ) ପର୍ବତ ଓ ଜଙ୍ଗଲରେ ବେଷ୍ଟିତ (ଅତି କିଷ୍କିନ୍ଧ) ସୁରକ୍ଷିତ କେନ୍ଦୁଝର ନାମେ (ରାଜ୍ୟ) ଗୋଟିଏ ରାଜ୍ୟ ଅଛି । ଯାହାର ନଗରର (ରାଜଧାନୀର) ଦୁର୍ଗ କେବେ ଶତ୍ରୁଦ୍ୱାରା ଲଙ୍ଘିତ ହୋଇ ନାହିଁ । ଯେଉଁ ସ୍ଥାନରେ ତ୍ରୈଲୋକ୍ୟ ଗୋସାଇଁ ବଳଭଦ୍ର ପ୍ରଭୁ (ଚିତ୍ତେ) ହୃଦୟରେ (ଅନୁକମ୍ପା) ଦୟା ବହି ବିଜେ କରିଅଛନ୍ତି । ସେ ଦେବାଧି-ଦେବରାଜ (ଅବ୍ଜକର୍ପୂରସୁନ୍ଦର) ଚନ୍ଦ୍ର ଓ କର୍ପୂର ପରି ସୁନ୍ଦର ଓ ଆନନ୍ଦର କନ୍ଦର ସ୍ୱରୂପ ଅଟନ୍ତି । ଆହୁରି ମଧ୍ୟ ଅନ୍ତର୍ଯ୍ୟାମୀ ସମସ୍ତ ହୃଦୟରେ ବାସ କରନ୍ତି ଓ (ଅଭୀଷ୍ଟ) ବାଞ୍ଛିତ ଫଳ ଦାନ କରନ୍ତି, କଷ୍ଟ ନାଶ କରନ୍ତି ଏବଂ (ନୀଳବସନ) ନୀଳାମ୍ବର ଓ 'ବଳ' ନାମରେ ଅଭିହିତ ଅଟନ୍ତି । ବଳଭଦ୍ର ଭଞ୍ଜ ଅନ୍ୟ ଆଶା ଦୂର କରି ତାଙ୍କ ଶ୍ରୀପାଦକୁ ମୂଳ କରିଛି ।

ସେହି କେନ୍ଦୁଝରରେ ୬ବଳଭଦ୍ର ପ୍ରଭୁଙ୍କ (ସନ୍ନିଧିରେ) ନିକଟରେ (ଭଦ୍ରା) ସୁଭଦ୍ରା ଓ ଜଗନ୍ନାଥ ଅଛନ୍ତି । ସେହି ଚତୁର୍ଦ୍ଧା ମୂର୍ତ୍ତି ଶୋଭାରେ ପ୍ରାପ୍ତ ହୋଇ ରତ୍ନସିଂହାସନ ଉପରେ ବିଜେ କରିଅଛନ୍ତି । (ଦିବ୍ୟ କ୍ରମରେ) ସୁନ୍ଦର

ଅନୁପମ ଉଚ ବିବ୍ୟନମସଞ ଦେଉଳ ମଞ-ମଣ୍ଡନ
ଅଗ୍ରେ ମୁଖଶାଳୀ ଭିନ୍ନଦିଶା ବିଜେ କୋଳ ନୃସିଂହ ବାମନ ।୨।

ମୋକ୍ଷ

ଅନ୍ତିକରେ ବିମଳାକ୍ଷୀ ସରସ୍ୱତୀ ଲକ୍ଷ୍ମୀ (କ୍ଷ୍ମୀ) ଅନନ୍ତ ପୁରୁଷୋତ୍ତମ ଯଥା
ଅଗ୍ରେ ବିନତାତ୍ମଜ ବାଞ୍ଛାପ୍ରଦ ହର କାଳିକାଦେବୀ ବିଜୟ କଥା । ୧
ଅଗ୍ନିକୋଣରେ ପ୍ରକଟ ଗାବକର୍ଣ୍ଣିବଟ* ସେ ତଳେ ବଟମଙ୍ଗଳା ଦେବୀ
ଅନ୍ଧ ପଙ୍ଗୁ କୁବୁଜାହିଁ ସୁଖୀ ହୋନ୍ତି ଯହିଁ ଏ ବଳଦେବ ପ୍ରଭୁଙ୍କୁ ସେବି । ୨
ଅନ୍ୟ ଆଶା କରି ଦୂର ସେବନ୍ତି ଲୋକର ବାଞ୍ଛା ବଳାଇ ଦିଅନ୍ତି ଫଳ
ଅଣୁକୁହିଁ ପରବତ କରନ୍ତି ଜଗତ-ନାଥ ଅଚଳହିଁ ରେଣୁତୁଲ । ୩
ଅକରମ ହୀନ ନର ଅମରେଶ୍ୱର ଅଧିକାର ପାଏ ତତପର
ଅଷ୍ଟନୟନ-ଲେଖନ ଭାଲ-ଲିପି ଆନ କରିପାରନ୍ତି ଯେ ମାଳାମ୍ବର । ୪
ଅଭାବକୁ ବଡ଼ କଷ୍ଟ ଭାବକେ ପ୍ରକଟ ଅନ୍ତର୍ଯ୍ୟାମୀ ସର୍ବଭୂତବାସୀ
ଅବମାଶ ବଳଭଦ୍ର କରୁଣାସମୁଦ୍ର ଶରଣ କରୁଛୁ ଅହର୍ନିଶି । ୫

---

କାରୁକାର୍ଯ୍ୟରେ (ସଞ) ଶୋଭିତ (ଅନୁପମ ଉଚ) ଯାହାର ଉଚ୍ଚତା ସଙ୍ଗେ ତୁଳନା ଦେବାକୁ ନାହିଁ । ଏହି ପ୍ରକାର ଦେଉଳ ଅଛି । ତାହାର ଅଗ୍ରରେ (ପୂର୍ବ ଦିଗରେ) ମୁଖଶାଳୀ ଓ ଅନ୍ୟ (ଭିନ୍ନ ଦିଶା) ଭିନ୍ନଦିଗରେ (କୋଳ) ବରାହ ମୂର୍ତ୍ତି, ନୃସିଂହ ଓ ବାମନ ମୂର୍ତ୍ତି ବିଜେ ହୋଇଅଛନ୍ତି ।-(ଅନ୍ତିକରେ) ନିକଟରେ (ବିମଳାକ୍ଷୀ)ବିମଳା, ସରସ୍ୱତୀ ଓ ଲକ୍ଷ୍ମୀ ପୁରୁଷୋତ୍ତମ ଯଥା (ସେଠାରେ ଯେଉଁପରି ଅଛନ୍ତି, ସେହିପରି) ଏଠାରେ ଅଛନ୍ତି । (ଅଗ୍ରେ) ସମ୍ମୁଖରେ (ବିନତାତ୍ମଜ) ଗରୁଡ଼ ଓ (ବାଞ୍ଛାପ୍ରଦ ହର) ବାଞ୍ଛେଶ୍ୱର ନାମକ ମହାଦେବ ଓ କାଳିକାଦେବୀ ବିଜେ କରିଛନ୍ତି । ଅଗ୍ନିକୋଣରେ (ଗାବକର୍ଣ୍ଣିବଟ) ଗୋକର୍ଣ୍ଣୀ ବରଗଛ (ଏହା ଏ ପର୍ଯ୍ୟନ୍ତ ବିଦ୍ୟମାନ; ଏହାର ପତ୍ର ଠିକ୍ ଗୋରୁକାନପରି) ଅଛି । ତାହା ତଳରେ ବଟମଙ୍ଗଳା ଦେବୀ ଅଛନ୍ତି । ଏହି ବଳଦେବଙ୍କୁ ସେବାକରି ଅନ୍ଧ, ପଙ୍ଗୁ, (କୁବୁଜା) କୁଜା ଲୋକମାନେ ସୁଖୀ ହେଉଅଛନ୍ତି । ଅନ୍ୟ ଆଶା ଦୂର କରି ଅନନ୍ୟମନରେ ସେବୁଥିବା ଲୋକର ବାଞ୍ଛା ଅପେକ୍ଷା ଅଧିକ ଫଳ ଦିଅନ୍ତି । ଯେ ପ୍ରଭୁ ବଳଦେବ (ଅଣୁକୁ) ସୂକ୍ଷ୍ମଧୂଳିକୁ ଓ (ଅଚଳ) ପର୍ବତକୁ (ରେଣୁତୁଲ) ଧୂଳିପରି କରିପାରନ୍ତି । (ଅକରମ) ହତଭାଗ୍ୟ (ହୀନ) ଦରିଦ୍ର ଲୋକ (ଅମରେଶ୍ୱର ଅଧିକାର) ଇନ୍ଦ୍ରର ଅଧିକାର ପାଏ । (ଅଷ୍ଟନୟନ) ବିଧାତାର କପାଳ ଲେଖାକୁ ଯେ ଅନ୍ୟଥା କରିପାରନ୍ତି । ସେ (ଅଭାବକୁ) ଅଭକ୍ତକୁ ବଡ଼ କଷ୍ଟ ଅର୍ଥାତ୍ ଦୁର୍ଲ୍ଲଭ ଓ (ଭାବକୁ) ଭକ୍ତକୁ (ପ୍ରକଟ) ସୁଲଭ ଅଟନ୍ତି । (ଅବମାଶ) ବିଜା ବଳଭଦ୍ର ସେହି (କରୁଣା ସମୁଦ୍ର) କୃପାସାଗରଙ୍କୁ (ଅହର୍ନିଶି) ସର୍ବଦା ଶରଣ କରୁଛୁ ।

* ଗୋକର୍ଣ୍ଣୀ ବରଗଛ, ଏହି ବୃକ୍ଷ ଏ ପର୍ଯ୍ୟନ୍ତ ଜୀବିତ ଅଛି ।

### ଗୀତ

ଅଖିଳ ପ୍ରସିଦ୍ଧି ବୈତରଣୀ ନଦୀ ଯେଉଁ ସ୍ଥଳରୁ ଉଦ୍ଭୂତ
ଅନ୍ତକର ଚଣ୍ଡ-କଦ-ଦଣ୍ଡ-ଖଣ୍ଡ ନାମ ଗୋନାସିକା ତୀର୍ଥ ।୧।
ଅଷ୍ଟ-ଏକ ସୂତ୍ର-ନଦୀ ମଧ୍ୟେ ସାର ଶୀତଳ ନିର୍ମଳ ଜଳ
ଅଚଳ ଶିଳ ଶାଳ ତାଳ ରସାଳ ମାଳ ମାଳ ବେନି କୂଳ । ୨

### ଘୋଷ

### ବିରୋଧାଭାସ

ଅଛି ଯହିଁ ଭ୍ରମିବାର ନାହିଁ ଭ୍ରମିବାର ଜଳ ଯୋଗରେ ସର୍ବଦା କାଳ
ଅହିମକର ଯେ ସ୍ଥଳେ ନ ପଡ଼େ ସେ ଜଳେ ଅହି-ମକର ପଡ଼ିବା ମୂଳ । ୧
ଅବଶ୍ୟେହିଁ ବେନିକୂଳ ବୁଡ଼ାଇ ଯା ଜଳ ସେ ବେନି କୁଳ ଉଦ୍ଧରଇ ପୁଣି
ଅଧୋଗତଯା ପ୍ରତ୍ୟକ୍ଷେ ଦିଏ ଦେଖ ଦେଖ ନିସ୍ତାରେ ସେ ଅଧୋଗତପ୍ରାଣୀ । ୨

---

ଏହି କେନ୍ଦୁଝରରେ ଗୋନାସିକା ନାମକ ତୀର୍ଥସ୍ଥାନ ଅଛି । ଯେଉଁ ସ୍ଥାନରେ (ଅଖିଳ ପ୍ରସିଦ୍ଧି) ସମସ୍ତ ପୃଥିବୀରେ ଯାହାର ଖ୍ୟାତି ଅଛି ଓ (ଅନ୍ତକର) ଯମର (ଚଣ୍ଡ) ଅତି ତେଜସ୍ୱାନ୍ (କଦ ଦଣ୍ଡ ଖଣ୍ଡ) କୁତ୍ସିତ ଦଣ୍ଡକୁ ଯେ ଖଣ୍ଡନ କରିପାରେ, ଏ ପ୍ରକାର ବୈତରଣୀ ନଦୀ (ଉଦ୍ଭୂତ) ଜାତ ହୋଇଅଛି । ସେହି ବୈତରଣୀ ଅଷ୍ଟଏକ ସୂତ୍ରନଦୀ—ନଅ ଗଙ୍ଗା ମଧ୍ୟରେ (ସାର) ଶ୍ରେଷ୍ଠ ଅଟେ । ଶୀତଳ ଓ ନିର୍ମଳ ଜଳଯୁକ୍ତା ଏହାର (ବେନିକୂଳ) ଦୁଇ କୂଳରେ (ଅଚଳ) ପର୍ବତ (ଶିଳ) ପଥର, (ଶାଳ) ଶାଳବୃକ୍ଷ, ତାଳଗଛ, (ରସାଳ) ଆମ୍ବଗଛ ମାଳ ମାଳ ହୋଇ ରହିଅଛନ୍ତି । ବିରୋଧାଭାସ—ଆଲଙ୍କାରରେ ବିରୋଧସ୍ୟ ବିରୋଧାଭାସ ଉଚ୍ୟତେ । ବିରୋଧ— ଯହିଁ ଭ୍ରମିବାର ଅଛି, ଭ୍ରମିବାର ନାହିଁ । ପରିହାର—ଯହିଁ ଯେଉଁଠାରେ(ଭ୍ରମିବାର)ଜଳଭଉଁରୀ ସମୂହ ଅଛି ଯହିଁ (ଜଳ ଯୋଗରେ) ଜଳ ହେତୁ ଅଥବା ଜଳଯୋଗରେ—ଜଳଖିଆ ଅର୍ଥାତ୍ ବିନାଶ କରିବାପାଇଁ ସର୍ବଦା (କାଳ) ଯମ (ଭ୍ରମିବାର) ବୁଲିବାର ନାହିଁ । ବିରୋଧ—ଯେ ସ୍ଥଳେ ଅହିମକର ପଡ଼େ ନାହିଁ, ଅଥଚ ଅହିମକର ପଡ଼ିବା ମୂଳ । ପରିହାର—ଯେଉଁ ସ୍ଥାନରେ (ଅ-ହିମକର) ସୂର୍ଯ୍ୟଙ୍କର ପ୍ରଖର କିରଣ ପଡ଼େ ନାହିଁ, କିନ୍ତୁ (ଅହି) ସର୍ପ ଓ (ମକର)—ଜଳଜନ୍ତୁ ପଡ଼ିବା (ମୂଳ) ନିଶ୍ଚୟ ଅଟେ । ବିରୋଧ—ଯା ଜଳ ଅବଶ୍ୟ କୂଳ ବୁଡ଼ାଏ (ଅଥଚ) ବେନିକୂଳ ଉଦ୍ଧାରେ । ପରିହାର—ଯାହାର ଜଳ ନିଜର ଦୁଇ (କୂଳକୁ) ତୀରକୁ ବୁଡ଼ାଇ ଦିଏ ଓ (ସ୍ନାନକରିବା ଲୋକର) ବେନିକୁଳ—ପିତୃ ଓ ମାତୃକୁଳକୁ ଉଦ୍ଧାର କରେ । ବିରୋଧ—ଯାହାର ଅଧୋଗତି ପ୍ରତ୍ୟକ୍ଷ ହୁଏ, ସେ ଅଧୋଗତ ପ୍ରାଣୀକୁ ନିସ୍ତାରେ । ପରିହାର—ଯାହାର(ଅଧୋଗତି) ନିମ୍ନକୁ ଗମନ ଦେଖାଯାଏ ଓ ଯେ (ଅଧୋଗତ) ପାପିବ୍ୟକ୍ତିମାନଙ୍କୁ (ନିସ୍ତାରେ) ଉଦ୍ଧାର କରେ

ଅଟେ ଏହୁ ପଙ୍କବାର ନାଶେ ହଙ୍କାର ଯହିଁ ଖଣ୍ଡ୍ରଜଡ଼ (?) ମହାଶୋଭ
ଅତ୍ତଚନ୍ଦ ଏ ଶୀତଳ-ଜଳେ ବୁଡ଼ି ବଳବନ୍ତର ହୁଅଇ ତେଜପ୍ରଭା । ୩
ଅବତୀର୍ଣ୍ଣ ଯା ଗିରିଶ-ଠାରୁ ପରକାଶ ସେ ଉପ ଯୋଟେଜ ହୁଅନ୍ତି ତୋଷ
ଅନୁଗତିକୁ ପଥରେ କରି କୁପଥରେ ଗତି କଲ୍ପ କର୍ମ କରେ ନାଶ । ୪
ଅଘସଂଘଟନପ୍ରାଣୀ-ମାନଙ୍କ ନିଶାଣୀ ସ୍ୱର୍ଗଅପବର୍ଗମାନଙ୍କୁ ଯେ
ଅମ୍ବୁ ସ୍ନାନ ପାନ କରି ସୁଖେ କେନ୍ଦୁଝର-ନୃପ ବଳଭଦ୍ର ଭଞ୍ଜ ମଜ୍ଜେ । ୫

ଗୀତ

ଅର୍କବଂଶେ ଜାତ କ୍ଷିତିଏ ବିଦିତ ଭଞ୍ଜ-ସଞ୍ଜ୍ଞା କ୍ଷିତିଖ୍ୟାତ
ଅସିବଳୁଁ କରି ଯେତୁ କେନ୍ଦୁଝର ରାଜ୍ୟେ ହେଲେ ନରନାଥ । ୧

---

ବୋଧ—ଏହା ହଙ୍କାର ଅଟେ, ପୁଣି ପଙ୍କବାର ନାଶେ । ପରିହାର—ଏହା ପଙ୍କବାର ପଙ୍କୁଆ ପାଣିରେ ଯୁକ୍ତ ଅଟେ ଓ ପଙ୍କବାର—ପାପସମୂହ ନାଶେ । ବୋଧ—ଅତ୍ତ (ଚନ୍ଦ) ଆଶ୍ଚର୍ଯ୍ୟ ଶୀତଳ ଜଳରେ ସ୍ନାନରୂପ କାରଣରୁ ଉଷ୍ଣଗୁଣ-ରୂପ ତେଜପ୍ରଭା ଜାତ ହେବା ବିରୁଦ୍ଧ । ପରିହାର ଏହାକୁ—ଶୀତଳ ଜଳରେ ସ୍ନାନ କଲେ ବୀର୍ଯ୍ୟଗୁଣ ଲାଭକରି ଲୋକ ତେଜସ୍ୱୀ ହୁଏ । ବୋଧ—ଯେ ଗିରିଶଠାରୁ ଜାତ, ତାହାର ଉପରେ ଗିରିଶ ତୋଷ ହୁଅନ୍ତୁ, ଅର୍ଥାତ୍ କନ୍ୟାର ଶୃଙ୍ଗାରରେ ତୋଷ ହେବା ବିରୁଦ୍ଧ । ପରିହାର—ଯେ ଗିରିଶ୍ରେଷ୍ଠ ଗୋନାସାରୁ ଜାତ ହୋଇଛି, ତାହାର (ଉପରେ)—ଜଳରେ (ଗିରିଶ) ମହାଦେବ ତୁଷ୍ଟ ହୁଅନ୍ତି । ବିରୋଧ—ଯେ ନିଜେ କୁପଥରେ ଗତି କରୁଛି, ସେ କୁପଥରେ ଯିବା ଲୋକର, କର୍ମକୁ ନାଶ କରିବା ବିରୁଦ୍ଧ । ପରିହାର—(ଅନୁଗତିକୁ) ଗମନକୁ (ପଥରେ) ପଥର ଉପରେ କରି (କୁପଥରେ) ଅସତ୍ ବାଟରେ ଯାଉଥିବା ଲୋକର ପାପକର୍ମକୁ ନାଶ କରେ । (ଅଘସଙ୍ଘଟନ ପ୍ରାଣୀମାନଙ୍କର) ପାପ କାର୍ଯ୍ୟ କରୁଥିବା ପ୍ରାଣୀମାନଙ୍କର ସ୍ୱର୍ଗକୁ ଧର୍ମ, ଅର୍ଥ, କାମ ଓ ମୋକ୍ଷରୂପ ପୁରୁଷାର୍ଥ ଲାଭ କରାଇବାକୁ ନିଶାଣୀ ବା ନିଶ୍ରେଣୀ ପରି ଅଟେ । ତାହାର ଜଳରେ ସ୍ନାନ ଓ ଜଳକୁ ପାନକରି କେନ୍ଦୁଝର ରାଜା ବଳଭଦ୍ର ଭଞ୍ଜ ସୁଖରେ ମଗ୍ନ ହୋଇଅଛି ।

(ଅର୍କବଂଶେ) ସୂର୍ଯ୍ୟ ବଂଶରେ । (କ୍ଷିତିଏ) ପୃଥିବୀରେ ବିଦିତ—ପ୍ରସିଦ୍ଧ । (ଭଞ୍ଜସଞ୍ଜ୍ଞା) ଭଞ୍ଜ ଉପାଧିରେ କ୍ଷିତି ଖ୍ୟାତ—ପୃଥିବୀରେ ପ୍ରସିଦ୍ଧ । ଯେତୁ—ଯେଉଁ ଭଞ୍ଜ ଉପାଧିଧାରୀମାନେ (ଅସି ବଳୁଁ କରି) ଖଣ୍ଡା ଜୋରରେ ଅର୍ଥାତ୍ ପରାକ୍ରମଦ୍ୱାରା କେନ୍ଦୁଝର ରାଜ୍ୟରେ (ନରନାଥ) ରାଜା ହେଲେ ।

ଅନୁପୂର୍ବ ରୂପେ ପୃଥ୍ୱୀକ ଭୋଗ କଲେ ଯଥାବଧି ରାଜଗୁଣେ
ଅର୍ଜିତ ଜଗଦୀଶ୍ୱର ଭଞ୍ଜ ମହାରାଜା ସକଳ-ଲକ୍ଷଣେ । ୨

ଘୋଷା

ଅଙ୍ଗ-ସିନ୍ଧୁରୁ ତାଙ୍କର ଇନ୍ଦୁ-ସହଜାତ ସମ୍ଭୂତ ହେଲି ମୁଁ ପୂର୍ବଫଳ
ଅଙ୍କ-ପରସର ଅରି ମୋଠାରେ ଆଦୋଷ ରହିଲେ ଦଇବ-ଯୋଗବଳେ । ୧
ଅବିଦ୍ୟାଦି ଏ ଦିବସ କାନ୍ତିକରେ କୃଶ ଅନନ୍ତ ଭ୍ରମଣ ନିତ୍ୟ ହୋଏ
ଅମା ପରି ତାପତ୍ରୟ ତନୁ କରେ କ୍ଷୟ ବୃଦ୍ଧି-ବିଷୟହିଁ ଚିର ନୋହେ । ୨
ଅଥ ଅଛି ଏ ସୁଯୋଗ ସାଧୁସୁରେ ଭୋଗ କରୁଥିବେ କି ସମ୍ପଦ ସୁଧା
ଅନୁକ୍ଷଣେ ପ୍ରଜାତାର ଲଭିଥିବେ ତୋଷ ନ ପାଇ ଅରୁଣ ତେଜବାଧା । ୩

---

(ଅନୁପୂର୍ବ ରୂପେ) ପୂରୁଷାନୁକ୍ରମେ ମହାରାଜା ପୃଥ୍ୱୀକୁ (ଔଦାର୍ଯ୍ୟ, ଗାମ୍ଭୀର୍ଯ୍ୟ, ଶୌର୍ଯ୍ୟ, ଧୈର୍ଯ୍ୟାଦି) ରାଜଗୁଣରେ ଯଥାବଧି ଭୋଗକଲେ । ସେହି ବଂଶରେ ସର୍ବରାଜଲକ୍ଷଣଯୁକ୍ତ ମହାରାଜ ଜଗଦୀଶ୍ୱର ଭଞ୍ଜ ଜାତହେଲେ । ତାଙ୍କ ଅଙ୍ଗରୂପ ସିନ୍ଧୁରୁ (ଇନ୍ଦୁସହଜାତ) ଚନ୍ଦ୍ରପରି(ପୂର୍ବଫଳେ) ପୂର୍ବ ଭାଗ୍ୟବଳରେ ମୁଁ ସମ୍ଭୂତ ହେଲି—ଜାତ ହେଲି । ଚନ୍ଦ୍ରଙ୍କୁ (ଅଙ୍କପରି) କଳଙ୍କପରି ମୋଠାରେ (ଅରି) ଶତ୍ରୁମାନେ (ଯୋଗବଳେ) କର୍ମାନୁସାରେ(ଆଦୋଷ ରହିଲେ)ଦୋଷି ରହିଲେ । ଚନ୍ଦ୍ରଙ୍କ କାନ୍ତିକୁ ଦିବସ (କୃଶ) ମ୍ଳାନ କଲା ପରି ମୋର (କାନ୍ତି) ଦେହ ତେଜକୁ ଅବିଦ୍ୟା (ଅଜ୍ଞାନ) ମ୍ଳାନ କରୁଛି । ଚନ୍ଦ୍ରଙ୍କର (ଅନନ୍ତରେ) ଆକାଶରେ (ନିତ୍ୟ) ସର୍ବଦା ଭ୍ରମଣ ହୁଏ, ମୋର ମଧ୍ୟ (ଅନନ୍ତ ଭ୍ରମଣ) ସର୍ବଦା ବୁଲିବା ଅଥବା ଅସଂଖ୍ୟ ଭ୍ରାନ୍ତି ଜାତ ହୋଇଅଛି,(ଅମା) ଅମାବାସ୍ୟା ଚନ୍ଦ୍ରଙ୍କ ତନୁକୁ କ୍ଷୟ କଲା ପରି (ତାପତ୍ରୟ) ଆଧ୍ୟାତ୍ମିକ, ଆଧିଭୌତିକ ଓ ଅଧିଦୈବିକ ରୂପ ତ୍ରିତାପ ମୋର (ତନୁ) ଶରୀରକୁ କ୍ଷୟ କରୁଛି । ଚନ୍ଦ୍ରଙ୍କର (ବୃଦ୍ଧି) ବଢ଼ିବା ଯେପରି (ଚିର) ସ୍ଥିର ନୁହେଁ, ମୋର ମଧ୍ୟ (ବୃଦ୍ଧି) ସମ୍ପତ୍ତି ବଢ଼ିବା ଚିର ନୁହେଁ ! ମୋର ଏ ସୁଯୋଗ ଅଛି କି ? ଚନ୍ଦ୍ରଠାରୁ (ସୁର) ଦେବତାମାନେ (ସୁଧା) ଅମୃତ ଭୋଗ କଲା ପରି ସାଧୁମାନେ ମୋଠାରୁ (ସମ୍ପଦ) ଧନ ଭୋଗ କରୁଥିବେ । ଚନ୍ଦ୍ରଙ୍କ ପାଖରେ ତାରାମାନେ ଥାଇ (ଅରୁଣ) ସୂର୍ଯ୍ୟ ତେଜ (ବାଧା) ପୀଡ଼ା ନ ପାଇ ଯେପରି ତୋଷ (ଉଜ୍ଜ୍ୱଳ) ହୋଇଥାନ୍ତି, ସେହିପରି ମୋ ପାଖରେ ମୋ ପ୍ରଜାମାନେ ଅନ୍ୟଠାରୁ ପୀଡ଼ା ନ ପାଇ ସବୁବେଳେ ତୋଷ ହୋଇଥାନ୍ତୁ । ଚନ୍ଦ୍ରଙ୍କ

ଅବନୀରାଜି ସଫଳ ହୋଇଥିବ ତୂର୍ଣ୍ଣ ଅପାଳକ ରାହୁ ନ ପୀଡ଼ିବ
ଅନ୍ତ ମୋହ ମେଘଚୟ ଯେ ତି ଏ ଉଦୟ ବାରିଜବା ତୋର ନ ମାଡ଼ିବ । ୪
ଅକଞ୍ଚନ-ସୂରି-ଦ୍ୱିଜ-ବୈଷ୍ଣବସମାଜ-ଗୁଣି-ଚକୋରେ ଆସିବେ କେବେ
ଅବଧ୍ଣରେ ଏତେ ହେଲେ ଉଞ୍ଜାରାତ ହେବାଲେ ଶଶାଙ୍କ ସାମ୍ୟ ରହିବ ଶୁଭେ । ୫

ଗୀତ

ଅମ୍ବିକା ବିଳାସ ଗୀତ ଏହୁ ଶେଷ ଏକ ରୁଚିର ଏ ଗ୍ରନ୍ଥ
ଅଷ୍ଟର-କ୍ରମ ପାଦେ ଅଛି ଶ୍ରମ ଦେଖ ନାମ ଧୀର କୋବିଦ । ୧
ଅସିତଗଳ-ଉମାସ୍ତୁତି ଶ୍ଲୋକରେ ସପ୍ତକାଣ୍ଡ ଆଦ୍ୟ ଗ୍ରନ୍ଥେ
ଅନଙ୍ଗରସରେ ପଞ୍ଚପଦେ ଧ୍ରୁବପଦ ବିଶିଷ୍ଟେ ସ୍ୱଚ୍ଛନ୍ଦେ । ୨

ଚୋଇ

ଅଗ୍ନିବିଷ୍ଟାମେ ଦକ୍ଷ-ଧାତା-ନାଶ ସତୀଦେବୀ ଅନଳେ ଝାସିବା ତୃତୀୟରେ
ଅଥ ଚତୁର୍ଥେ ମହେଶ-କୋପେ ଦକ୍ଷନାଶ ହର ଅନୁତାପ ପଞ୍ଚମରେ । ୧
ଅଚଳେଶ ଗୃହେ ଗିରିଜା ବର୍ଣ୍ଣନା ଗଉରୀ-ଜନ୍ମ ଷଷ୍ଠେ ସପ୍ତ ବାଳଲୀଳା
ଅଷ୍ଟମରେ ବୟଃସନ୍ଧି ଋତୁ କାମବଧି ନବମେ ଶିବ ତପସ୍ୟାହେଳା । ୨
ଅନଙ୍ଗର ଯୋଗେ ତପଭଙ୍ଗ ଫୁଲଶର-ନାଶ ଦଶମସ୍ଥାନରେ ଉକ୍ତ
ଅଙ୍ଗନା ତା ବିଳପିବା ସ୍ୱପ୍ନ ଦେଖେ ଶିବ-ବରଦ ଏକାଦଶରେ ଖ୍ୟାତ । ୩

---

ହାର ରାଜି ସଫଳା ହେଲପରି ଏ (ଅବନୀ) ରାଜ୍ୟ ମୋହାଯ୍ୟ ସଫଳ ହେଉ । ଅପାଳକ ରୂପ ରାହୁ ମୋତେ ଗ୍ରାସ ନ କରୁ । ଯେପରି ଚନ୍ଦ୍ରଙ୍କର (ଉଦୟ ବାରିଜବା ତୋରକୁ) ଉଦୟ କାଳରେ ଶୋଭା ପାଉଥିବା କୁମୁଦ ଲତାକୁ ନଷ୍ଟ କରିଦିଏ; ମାତ୍ର ବିଷୟ ପ୍ରଭୃତିର ମୋହ ରୂପ ମେଘ ମୋର (ଉଦୟ ବାରିଜବା ତୋର) ଉନ୍ନତ କାଳରେ ଥିବା ତେଜକୁ ନ ମାଡ଼ୁ । ତେବେ ଇମାନେ ଚନ୍ଦ୍ର ନିକଟକୁ ଜ୍ୟୋତ୍ସ୍ନା ଲୋଭରେ ଆସିଲପରି (ଅକଞ୍ଚନ) ନିର୍ଦ୍ଧନ (ସୂରି) ଜ୍ଞାନୀ (ଦ୍ୱିଜ) ବ୍ରାହ୍ମଣ ଓ ବୈଷ୍ଣବ ସମାଜ ଏବଂ ଗୁଣବାନ୍ ବ୍ୟକ୍ତିମାନେ (ଧନାଶାରେ) ଆସିବେ କି ? (ଏତେ ହେଲେ) ଏହା ହେଲେ (ଶୁଭେ) ଉତ୍ତମରୂପେ ମୋର (ଶଶାଙ୍କ) ଚନ୍ଦ୍ର ସଙ୍ଗରେ (ସାମ୍ୟ) ସାଦୃଶ୍ୟ ରହିବ ।

—ଃ୦ଃ୦ଃ—

ଅଥ ଦ୍ୱାଦଶେ ସ୍ୱପ୍ନ ତ୍ରୟୋଦଶେ ହରଙ୍କ ଚତୁର୍ଦ୍ଦଶେ ଉମା ତପସ୍ୟାରେ
ଅନନ୍ତରେ ପଦ ଶିବ ବଟୁ-ବେଶ ପଞ୍ଚଦଶ ଛାନ୍ଦ ବୁଝ ଧୀରେ । ୪
ଅନନ୍ତରେ ଉମା-ଗୃହେ ଷୋଡ଼ଶେ ପଠ ସପ୍ତଦଶରେ ପ୍ରତିଜ୍ଞା ଶୋଭା
ଅଷ୍ଟାଦଶେ ହେଲା ବିଭା ହିମନ୍ତ ନୃପତି ବଳଭଦ୍ର ସେବେ ଶିବ-ଶିବା । ୫

## ଗୀତ

ଅଛି ଊନବିଂଶେ ପୁରବର୍ଣ୍ଣନା ସେ ବନ୍ଧୁ-ବନ୍ଦେ ବିଂଶ ଛାନ୍ଦେ
ଅମାନ-ସୁଷମ ମଣ୍ଡପ-ମଣ୍ଡଣି ଏକବିଂଶରେ ଆନନ୍ଦେ । ୧
ଅଟେ ବିବାହ ଦ୍ୱାବିଂଶେ, ବରଯାତ୍ରୀ-ଚଉକ ତ୍ରୟୋବିଂଶରେ
ଅମ୍ବିକା ବେଶ କରଣ ମଧୁଶଯ୍ୟା ସୂଚିତ ଚତୁର୍ବିଂଶରେ । ୨
ଅନଙ୍ଗ-କେଳି-ଶେଷେ ବେଶ-ବର୍ଣ୍ଣନ ଛଳେ ପଞ୍ଚବିଂଶେ ଉକ୍ତ
ଅଦ୍ଭୁତ ଭାବେ ଉମାକୁ ପରିହାସ ଷଡ଼ବିଂଶ ଛାନ୍ଦେ ସ୍ଥିତ । ୩
ଅନେକ ଜାତି ସମ୍ଭାରେ ଯଜ୍ଞଭୁକ୍ତ ସପ୍ତବିଂଶରେ ବର୍ଣ୍ଣନା
ଅଷ୍ଟାବିଂଶରେ କୈଳାସକୁ ବାହୁଡ଼ା-ବନ୍ଦେ ହର ଯେନି କନ୍ୟା । ୪
ଅଯତ୍ନମନସା ବନ୍ଧୁଯୁତେ ଊନତ୍ରିଂଶ ବରଷା ବିହାର
ଅକସ୍ମାତେ ମାନ ଉମାର ହୁଅନ୍ତେ ତ୍ରିଂଶେ ଗୃହ କୂଟରେ ହର । ୫
ଅମଳ ଶରତ୍‍କାଳେ କେଳି ଏକତ୍ରିଂଶ ଛାନ୍ଦରେ ସ୍ୱଚ୍ଛନ୍ଦେ
ଅଥ କ୍ରମେ ଭୋଗ ଦ୍ୱାତ୍ରିଂଶେ ଶିଶିର-କେଳି ତ୍ରୟସ୍ତ୍ରିଂଶ ଛାନ୍ଦେ ୬
ଅଟବୀ-ବିହାର ବସନ୍ତ ଋତୁରେ ଚତୁସ୍ତ୍ରିଂଶରେ ବର୍ଣ୍ଣନ
ଅଚଳସୁତା-ଗର୍ଭରୁ ପଞ୍ଚତ୍ରିଂଶରେ ଜନ୍ମ ମହାସେନ । ୭
ଅତି ଉତ୍ସବେ ତାଣ୍ଡବ ନୃତ୍ୟରଙ୍ଗ ଗୀତବାଦ୍ୟ ଷଟତ୍ରିଂଶେ
ଅସୁର ତାରକାକୁ ନାଶି କୁମାର ସପ୍ତତ୍ରିଂଶେ ପ୍ରକାଶେ । ୮
ଅଷ୍ଟତ୍ରିଂଶଛାନ୍ଦରେ ଶୃଙ୍ଖଳାରେ ଠାକୁରାଣୀ ସ୍ତୁତି ଭାଷେ
ଅନେକ ମତ ଯେନି ପ୍ରେମ ଭକ୍ତିକି ସ୍ଥାପିଛି ଅଣଚାଳିଶେ । ୯
ଅଥ ଚାଳିଶେ ସ୍ୱପ୍ନାଦେଶ ସୁବସ୍ତ୍ର-ଉପଦେଶ ରାଜମାତ
ଅନ୍ତ ଛାନ୍ଦ ଏକଚାଳିଶରେ ନିଜ-ରାଜ୍ୟରେ ପ୍ରସଙ୍ଗେ ରତି । ୧୦
ଅଧମେ ଚାରଣ ବଳଭଦ୍ର ଗୁଣ-ମହିମା ସ୍ଥାନ ପ୍ରସାଦ
ଅଘନାଶିନୀ ବୈତରଣୀ ନଦୀ ପ୍ରଭାବରେ ଗୀତ ପଦ । ୧୧
ଅନୁକ୍ରମ ଏକଚାଳିଶ ଛାନ୍ଦରେ ଯେଜ ହେ ଧୀବର ବର
ଅବଧେ ଅମ୍ବିକା-ବିଳାସ ସମ୍ପୂର୍ଣ୍ଣ ହେଲା ଭଣେ ଭଞ୍ଜବୀର । ୧୨

———

# ପରିଶିଷ୍ଟ

## ବାମଣ୍ଡା କୋଇଲି

କୋଇଲି—ସୂର୍ଯ୍ୟବଂଶେ ଅବତାର
ବଳଭଦ୍ର ଭଞ୍ଜ ନୃପବର
ବନ୍ଧୁଗଣଙ୍କୁ କରି ପ୍ରକାଶ
ଗଙ୍ଗବଂଶ ନାଶ କରିବା ଆଶ ଯେ
ସାଜିଲେ ଚତୁରଙ୍ଗ ସଇନ
ବଡ଼େ ବେଗ ଘେନି ଅଶ୍ୱ ଚଢ଼ିଣ ଯେ । ୧

କୋଇଲି—ଆଗରେ ଡାରିଣୀ ଛନ୍ଦ
ଧଣ୍ଡା ଉପରେ ଉଡ଼ଇ ନେନ୍ଦ
ଦଶ ଅବତାର ବାନା
କେତେ ସୈନ୍ୟ କେ କରିବ କଳଣା ଯେ,
ଓଟ ଉପରେ ବାଜେ ନିଶାଣ
ମିଥୁନ ମେଘ କି କରେ ଗର୍ଜନ ଯେ । ୨

କୋଇଲି—ବାହାର ଗଡ଼ଣେ ଦଳ
ଯେହ୍ନେ ଘୋଟଇ ପ୍ରଳୟ କାଳ
କେତେ କେତେ ସହସ୍ର ଲେଖା ନାହିଁ
ଗୁଲେ ସୈନ୍ୟ ମେଦିନୀ କମ୍ପଇ ଯେ ।
କେ କହୁ ଅଶ୍ୱମାନଙ୍କ ଗତି
ଚଢ଼ିଣଛନ୍ତି ଘେନି ବନ୍ଧୁ ମନ୍ତ୍ରୀ ଯେ । ୩

କୋଇଲି—ଦେଖି ସେ ଥାଟ ମଧ୍ୟର
ତହିଁ ଉପରେ ପଡ଼େ ଗୁମର
※ ଭଦ୍ରକଳା ଉପରେ କମାଣ
ନନ୍ଦଘୋଷ କିବା କରେ ଗର୍ଜନ ଯେ ।
କେ କହୁ ସୂର୍ଯ୍ୟବଂଶ କୀର୍ତ୍ତି
ସାରିବେ ବାମଣ୍ଡା ଶିଶୁ ସମ୍ପତ୍ତି ଯେ । ୪

---

※ ସ୍ଥାନାନ୍ତରିତ କରିବାପାଇଁ ଯେଉଁ ଦନ୍ତଯୁକ୍ତ ବଇଠ ଉପରେ ତୋପକଳୀ ଥୁଆହୁଏ ।

କୋଇଲି—ବିଜୟେ ଗଡ ଦୁଆରେ
ହୋଣାମାଳମାନ ଶାସନରେ
ଦଧି ମାଛ ପୂର୍ଣ୍ଣକୁମ୍ଭ ଦ୍ୱାରେ
ଦେଖି ମହାରାଜା ବିଜେ ସଧୀରେ ଯେ ।
ନାରୀଙ୍କ ହୁଳହୁଳି ଶବଦେ ।
ଶୁଣି ଆନନ୍ଦ ସୂର୍ଯ୍ୟବଂଶ-ଚନ୍ଦ୍ର ଯେ । ୫

କୋଇଲି—ପ୍ରବେଶ ପାଟପଥର
ଅଶ୍ୱ ଉତ୍ତୁରି ବେନି ସୋଦର
ଯନ୍ତାଯନ୍ତ ହୋନ୍ତ ସଇନ
ସୁମନ୍ତ ପେଲେ ସୁନାବାଡ଼ି ଘେନି ଯେ
ବିଜୟେ ରାଜା ଜଗମୋହନ
ଶ୍ରୀ ବଳଦେବଙ୍କୁ କଲେ ଦର୍ଶନ ଯେ । ୬

କୋଇଲି—ବଳଦେବଙ୍କଠାରୁ ଶାଢ଼ୀ ପାଇ
ବିଜେକଲେ ଚଢ଼ୁଁ ବେନି ଭାଇ
ସୈନ୍ୟ କଳଚେ ନୁହେଁ ଗୋଚର
ଅନୁକୂଳ କଲେ ସିଦ୍ଧ-ମଠର ଯେ
ଦୁଇ ଦିନ ରହିଲେ
ସକଳ ଚରିତ୍ର ବେବର୍ତ୍ତା କଲେ । ୭

କୋଇଲି—ଆରଦିନ ନିତ୍ୟକର୍ମ ସାରି
ଜଗନ୍ନାଥଙ୍କୁ ଦର୍ଶନ କରି
ସନ୍ୟ ଗ୍ରୁଇଲେ ମେଦିନୀପୁରରେ
* ଧଂସା ବାଜଇ ଘାଟି ତଳରେ ଯେ
ବିଜୟ କଲେ ନୃପତି
ଅଶ୍ୱପଦଘାତେ କମ୍ପଇ ପୃଥ୍ୱୀ ଯେ । ୮

କୋଇଲି—ଯାଇ ପ୍ରବେଶ ବୈତରଣୀ
ସେଦିନ ସେଠାରେ ରହଣି
ବେଳ ବୁଡ଼ି ହୋଇଲା ନିଃଶେଷ
ସଇନ ଡାକ କି ସମୁଦ୍ର-ଘୋଷ
ଲୋକେ ପିଇ ସେ ଜଳ
କହେ ହୋଲେ ଏ ଜାଗା ବଡ଼ ଶୀତଳ । ୯

* ବଡ ନାଗରାଜାଙ୍କଠାରୁ ଯୁଦ୍ଧବାଦ୍ୟବିଶେଷ ।

କୋଇଲି—ଆରବଦନ ପ୍ରବେଶ ଗୋଡ଼ାର
ଲଇଡ଼ାକୁ ବଉଗିଲେ ଘର
ଅଙ୍ଗ ଦେଖଣ ଗଲେ ଡ଼ଗର
ପ୍ରବେଶ ହେଲେ ଲଇଡ଼ା ଗଡର ଯେ
ଘରକୁ ଦେଖିଣ ଡର
ରାଜା ଲୁଚିଲେ ଘାଟି ମାଲ୍ୟଗିରି । ୧୦
କୋଇଲି—ଲଇଡ଼ା ରାଜା ଦେଲେ ଭାଷା
ଜୀବନକୁ ମୋର ବଡ଼ ଆଶା
ସେ ତ ସୂର୍ଯ୍ୟବଂଶ ଦଣ୍ଡଧାରୀ
ଦଳବେହେବ କଥା ମୁଁ ନାହିଁ ପାରୋର ଯେ
ମୁଁ ତ ନ ପାଏ କେଣେ
ମୋ ଲୋକେ ଯାଆନ୍ତୁ ରାଜା ଚରଣେ ଯେ । ୧୧
କୋଇଲି—ଲଇଡ଼ାରୁ ପାଳେ ଥୋକେ ଆସି
ବେଗେ ଚରଣେ ଶରଣ ପଶି
ରାଜା ରହୁଁ କଲେ କଟକାଇ
ନାଗରା ଧ୍ୱନିରେ ପୃଥ୍ୱୀ କମ୍ପଇ ଯେ
ପାଳେ ଶୁଣି ଚମକ
କେବଳ ଭରସା ଅଛୁ ଘାଟିକ ଯେ । ୧୨
କୋଇଲି—ଯାଇ ପ୍ରବେଶ କୁଳପାଳର *
ଥାଟେ ମିଳିଲେ ନଦୀକୂଳର
ଯେଝା ବସା ଆଜ୍ଞା ମନ୍ତ୍ରୀଲେ ଥେକେ
ଛଳୁଳ ପଡ଼ଇ ସଇନ ଡ଼ାକେ ଯେ
ହେଷା କରନ୍ତି ଘୋଡ଼ା
ପାଳେ ଅରବର କମ୍ପେ ଲଇଡ଼ା ଯେ । ୧୩
କୋଇଲି—ସେବନ ରହିଲେ ମହାରାଜା
ବନ୍ଧେ ବଜାଇଲେ ବୀରବାଜା
ଗୁଡ଼ ବନ୍ଧୁକ କମାଣ ଗୁଳି
ଲଇଡ଼ା ଦେଶ ହେଲା ହାଲହୁଲୀ ଯେ
ଶଶି ହୋଇଲା ଶେଷ
ଆରବଦନ ଠିଆନାଳେ ପ୍ରବେଶ ଯେ । ୧୪

* ପାଇକହୁଡ଼ାସ୍ଥ ଗ୍ରାମର ନାମ ।

କୋଇଲି—ଠିଆ ହୋଇଲେ ରହି ଦୁଇ ଧନ
ଚହିଁ ସୁମାରି କରିଲେ ସୈନ୍ୟ
ଆରଦାନ ବରଡ଼ାରେ ରହି
ଉଭ ଧନର ଖଗ୍ର କହ୍ନ ନୁହଇ ଯେ
ଧନ ଶେଷ ହୋଇଲା
ବଣାଇ ଓଜଲ ରଥେ ଭେଟିଲା ଯେ । ୧୫

କୋଇଲି—ଆର ଧନ ଜଲେ ଅନୁକୂଳ
ମାଡ଼ିରହିଲେ ସକଳ ବଳ
ରାତି ହେଲେ ଲୋକେ ବଡ଼ ଚେତା
କମାଣ ରଡ଼ିରେ ନ ଶୁଭେ କଥା ଯେ
ବାରକୋଠ କମ୍ପଇ
ସେଧନ ରାଜ ବେଗେ ଗଲା ପାଲ୍ଟି ଯେ । ୧୬

କୋଇଲି—ଚଢ଼ି ହୋଇଲା ନାଗରା ଧ୍ୱନି
ବାନ୍ଧି କମର ସବ ସଇନି
ଅଶୁଆରେ ଘୋଡ଼ା ଚଢ଼ି କରି
ଗଡ଼କରିଗଲେ ସେ ଫେରିକାଶି ଯେ
ଢ଼କ୍କୁଣିଆ ପାଇକ
ଖଗକୁ ଦଶେ ମୁନ ଝକଝକ ଯେ । ୧୭

କୋଇଲି—ମାଡ଼ି ରହିଛନ୍ତି ବଳ
ଦେଖ ନଗାନଗି ବଢ଼େ ଝାଳ
ରାଜା ଦଳଏ ଥାଟ ମଧ୍ୟରୁ
ଜଳାଧଳା ଛଟ ଉଡ଼େ ଆଗରୁ ଯେ
ଚନ୍ଦ୍ର ସୂର୍ଯ୍ୟ ଛପିସ
ବେନି ସ୍ତମ୍ଭ ପଡ଼େ ବେନି ପାଶ ଯେ । ୧୮

କୋଇଲି—ଯାଉଁ ଯାଉଁ କଲେ ରଣ
କେ ବୋଲେ ମାର ମାର ଏହିକ୍ଷଣ
ଦେଖି ଏକ ଲକ୍ଷ ବାନା ଚିହ୍ନ
ଡେଇଁଲେ ଯଦୁମଣି ହତଜ୍ଞାନ ଯେ
ଭିଲେ କୁନ୍ତସାଗର
କେ ଯୁଦ୍ଧ କରିବ ଯାଙ୍କ ସଙ୍ଗରେ ଯେ । ୧୯

କୋଇଲି—ସେଦିନ ରହିଲା ସମର
ରାଜା ଭଜେ ବ୍ରାହ୍ମଣୀ କୂଳର
ସୈନ୍ୟଙ୍କର ଦେଖି କରକଣ
ମହାରାଜା-ଚିତ୍ତ ଅତି ଉଲ୍ଲାସ ଯେ
× × ×
× × × × । ୨୦

କୋଇଲି—ଆଠ ରହିଛନ୍ତି ଚୋଟା ମାଡ଼ି
ଢଲମାନେ ନାହିଁ ଛଡ଼ାଗୁଡ଼ି
ଅଗ୍ନି ଜଳଇ ସର୍ବ କସାର
କପିଳାସ କନ୍ଦେ କ ଜଳେ ଜାଗର
ଦୃଶ୍ୟ ହୁଏ ଏମନ୍ତ
ମହା ସଇନ କେ କରିବ ଅନ୍ତ ଯେ । ୨୧

କୋଇଲି—ଏମନ୍ତେ ପାହିଲା ରଜନୀ
ସଜ ହୋଇଲେ ସର୍ବ ସଇନ
ଆଠ ଥୋକେ ହୋଇଲେ ବାହାର
ଘାଟି ଚୋଟା ଧରି କଲେ ସମର ଯେ
ବାବୁ ଭ୍ରମରବର
ଘୋଡ଼ା ଧୁଆଁଇଲେ ଗୁଳ-ବାଣ୍ଡିର ଯେ । ୨୨

କୋଇଲି—ମାନଧାତା ହରିଚନ୍ଦନ
ଘାଟି ଉପରେ ହାଙ୍କିଲେ ଯାନ
ପଦୁଭଞ୍ଜ ଘନ ରଣେ ମିଶି
ଘାଟି ଲଞ୍ଜି ଧରି ଯୁଦ୍ଧେ ବଳସି ଯେ
ଆଉ ଯେତେ ସିପାଇ
ରଣ ରଙ୍ଗରେ ଜ୍ଞାନ ତାଙ୍କ ନାହିଁ ଯେ । ୨୩

କୋଇଲି—ଏଣେ ପୂଜା ସାରି ନୃପବର
ଭଜେ ବଇର-ଶଳ ଉପର
ଆଠ ବେଢ଼ିଛନ୍ତି ଚଉପାଶେ
ନକ୍ଷତ୍ର ମଧ୍ୟେ କି ଚନ୍ଦ୍ରମା ଦିଶେ ଯେ
ଉଡ଼େ ବୀର ପତାକା
ଆଗରେ ଯାଗଡ଼ା ପାଡ଼ଇ ଡଙ୍କା ଯେ । ୨୪

କୋଇଲି—ଥୋକେ ପାଇକ ରାଜା ଗହଣ
ବଳେ ନୃପତି ଦେଖିଲେ ରଣ
ଧୂଳି ଉଡ଼େ କମାଣ ରଡ଼ିର
ଘଡ଼ଆ ଗୁଳି ଅତି ଅଗୋଚର ଯେ
  ଆଖି ପିଛୁଡ଼ା କରି
ପଶିଲେ ସଇନ ବୋଲାଣ ହରି ଯେ । ୨୫
କୋଇଲି—ଘାଟି ମାଇଲେ ଭ୍ରମର-ବର
ଆସି ରାଜାଙ୍କୁ କହିଲେ ଚୂର
ପୁଣି ନୃପତି ଅଶ୍ୱ ଧୂଆଁଇ
ଗୁରୁଆଡ଼େ ଅଶ୍ୱେ ପଶିଲେ ଡେଇଁ
  ଶୁଣି କମାଣ ରଡ଼ି
ଘଡ଼ଆ ଭାଙ୍ଗିଲା ବନ୍ଧୁକ ଗୁଡ଼ି ଯେ । ୨୬
କୋଇଲି—ସୈନ୍ୟ ପଶି ଗୃହ ସନ୍ଧି
କେତେ ମଲେ କେତେ ହେଲେ ବନ୍ଦୀ
ଗଡ଼ ମଧ୍ୟରେ ରୁଧିର ବହଇ
ଯଦୁମଣିଙ୍କୁ ଧଇଲେ ଯାଇଁ ଯେ
  ଗଦା ଭଞ୍ଜି ରଖିଲେ
ବାମଡ଼ା ରାଜା ଖଣ୍ଡୁଆ ବୋଇଲେ ଯେ । ୨୭
-କେତେ ମୁଣ୍ଡ ପକାଇଲେ ହାଣି
କେତେ ବନ୍ଦୀ କରି ବାନ୍ଧି ଆଣି
ମୁଣ୍ଡମାନଙ୍କୁ ଧରଣ କରେ
ତାହାର ସୈନ୍ୟ ଯେ ଯେଉଁ ଦ୍ୱାରେ ଯେ
  ଦ୍ୱାରେ ବିଜୟୀ ରାଜା
ମାରି ପାଇକାଳି ବଜାଇ ବାଜା ଯେ । ୨୮
କୋଇଲି—ତହୁଁ ବଳେ ନୃପବର
ଗୁରୁଆଡ଼େ କେଡ଼ି ଅଶୁଆର
ଝାଳେ ଶ୍ରୀଅଙ୍ଗ ଅଛି ତନ୍ତ୍ର
ଲଙ୍କା ଧ୍ୱଂସି କି ବଳେ ରଘୁପତି ଯେ
  ସଙ୍ଗେ ଛନ୍ତି ସୋଦର
ଲକ୍ଷ୍ମଣ ସମାନ ଭ୍ରମରବର ଯେ । ୨୯

କୋଇଲି—ବଣାଇ-ଗଡ଼ କୁଅଁରେ
ଆସି ଭେଟିଲେ ଘାଟିତଳରେ
ନଗମାନ ଆସୁଥିଲେ ମୋଡ଼ି
ଗଡ଼ ପୋଡ଼ି ଦେଖି ଜଉ କାମ୍ବୁଡ଼ି
ଗୃହିଁ ହେଲେ ଭେଳେନି।
ଯାଇଲେ ଭଞ୍ଜ ସେ ଅଜେୟ ଲଙ୍କା ଯେ । ୩୦

କୋଇଲି—ଚହ୍ଁ ବଜୟୁ କଲେ ନୃପତି
ବଜେ ବଜାଇ ତମ୍ବୁର କତି
*ଯଦୁମଣିଙ୍କୁ ଦେଖିଲେ ଯାଇଁ
ସେଦନ କର୍କଶ କହୁ ନୁହଇ ଯେ
ଭାଗ୍ୟ ଥିଲା ତାଙ୍କର
ଶାଟ୍ଟୋଳ ପଡ଼ିଲା ବେକ ଗୋଡରେ ଯେ । ୩୧

କୋଇଲି—ସ୍ୱରବ୍ଦନ ଗଡମାରି
ସ୍ଥାନରେ ବାରୁଣୀ ସ୍ନାନକରି
ଗଡ଼େ ବଜାଇ ଜୟ ନାଟକ
ସୈନ୍ୟଙ୍କର କ କହିବା ଲୁରି ମେ
ଧଣ୍ଡା ଆଗେ ଚଳାଇ
ନିଜ ରାଜ୍ୟକୁ ବଜେ କେନି ଗଲେ । ଯେ । ୩୨

---

*ବାବଣ୍ଡା ରାଜାଙ୍କ ଖ ଉତ୍ତା ।

---

## ଶୁଦ୍ଧିପତ୍ର

ପୃ ୨୧୬ ଟୀକା ଧାଡ଼ି ଅନୈ୍ୟରଧି ଅନୈ୍ୟରନଧି (

୧ । ପୃ ୧୦୦ସ୍ଥାରେ ଟୀକା ଷଷ୍ଠ ଓ ସପ୍ତମ ଧାଡ଼ିରେ ଯାହାଙ୍କର...ଧାରଣ ଏହି ଅଂଶ ପରିବର୍ତ୍ତେ (ଗଜ ରାଜ) ଶ୍ରେଷ୍ଠ ରାଜା ଯାହାର (ପଦରଜ) ପାଦେ ଧରେ । 'ତ' ପଦଟି ନିଶ୍ଚୟାର୍ଥକ ଅବ୍ୟୟ, ଅର୍ଥାତ୍ ଯେ ଚକ୍ରବର୍ତ୍ତୀ ।

୨ । ପୃ ୮୩ସ୍ଥାରେ (ଗୀତ) ଚତୁର୍ଥ ଧାଡ଼ିରେ 'ଦନ୍ତ ଘାତରେ ସେ ଅନ୍ତ ହୁଅନ୍ତେ' ପରିବର୍ତ୍ତେ "ଅନ୍ତର ହୁଅନ୍ତେ ଦନ୍ତ ଘାତରେ ସେ" ବୋଲି ଶୁଦ୍ଧ କରିବାକୁ ହେବ ।"